# ରୁଦ୍ର ସୁଧାନିଧି

## ସଂପାଦନା ଓ ଆଲୋଚନା

**ଡକ୍ଟର କୃଷ୍ଣଚରଣ ସାହୁ**
ରିଡ଼ର, ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ
ବାଣୀବିହାର, ଭୁବନେଶ୍ୱର



ଫ୍ରେଣ୍ଡସ୍ ପବ୍ଲିଶର୍ସ
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦ ବିହାରୀ, କଟକ-୨

Digitized by srujanika@gmail.com

ରୁଦ୍ର ସୁଧାନିଧି :
ସମ୍ପାଦନା ଓ ଆଲୋଚନା
ଡକ୍ଟର କୃଷ୍ଣଚରଣ ସାହୁ

ପ୍ରକାଶକ :
ସହଦେବ ପ୍ରଧାନ
ଫ୍ରେଣ୍ଡସ୍ ପବ୍ଲିଶର୍ସ
ବିନୋଦବିହାରୀ
କଟକ-୭୫୩୦୦୨

ପ୍ରଥମ ସଂସ୍କରଣ
୧୯୮୦

ମୁଦ୍ରାକର :
ମଜଦୁର ପ୍ରିଣ୍ଟର୍ସ
ଚାନ୍ଦନୀଚୌକ
କଟକ-୨

କୋଣାର୍କ ପ୍ରିଣ୍ଟର୍ସ
କଟକ-୮

ଗ୍ରାମସେବକ ସମବାୟ ପ୍ରେସ
କଟକ-୨

ମୂଲ୍ୟ—ପନ୍ଦର ଟଙ୍କା

RUDRA SUDHANIDHI :
*SAMPADANA O ALOCHANA*
**Dr. KRUSHNA CHARAN SAHOO**

*Publisher* :
**SAHADEV PRADHAN**
*FRIENDS' PUBLISHERS*
*Binodbehari*
*Cuttack-753002*
*Orissa (India)*

*FIRST EDITION*
*1980*

*Printed at* :
**MAZDOOR PRINTERS**
*Chandni Chouck,*
*Cuttack-753002*

**KONARK PRINTERS**
*Cuttack-8*

**GRAMASEVAK CO-OP. PRESS**
*Cuttack-2*

**Rupees Rs. 15-00**

Digitized by srujanika@gmail.com

ରୁଦ୍ର ସୁଧାନିଧିର

ମର୍ମଜ୍ଞ ଆଲୋଚକ

ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନଙ୍କୁ

ସଶ୍ରଦ୍ଧ ସମର୍ପଣ ।

—ସମ୍ପାଦକ

Digitized by srujanika@gmail.com

# ନିଜ କଥା

ସାରଳା ମହାଭାରତର ପରିପକ୍ୱ ଭାଷା, ଶୈଳୀ, ବାକ୍ୟଗଠନପଦ୍ଧତି ଓ ଧ୍ୱନ୍ୟୋପରି କାବ୍ୟଶିଳ୍ପର ଅନୁକୂଳ ନ ମିଳିବା ପରି ଓଡ଼ିଆ ଭାଷାର ପ୍ରାଚୀନତମ କଥାକାବ୍ୟ ରୁଦ୍ର ସୁଧାନିଧିର ବିଚିତ୍ର-ଶୈଳୀ ସମ୍ଭାର ଆଲୋଚକମାନଙ୍କ ନିକଟରେ ଏକ ବିସ୍ମୟ । ପୂର୍ବରୁ କୌଣସି ସାହିତ୍ୟ ନ ଥାଇ ଏପରି ଅପୂର୍ବ ଓ ଅବିସ୍ମରଣୀୟ ଗ୍ରନ୍ଥସବୁ କିପରି ରଚିତ ହୋଇପାରିଲା ଏହାର ଉତ୍ତର କାହା ପାଖରେ ନାହିଁ । ଦେଢ଼ ହଜାର ବର୍ଷର ସ୍ୱାଧୀନ ଓଡ଼ିଶା ନିଶ୍ଚିତ ଭାବେ ମୂର୍ଖଙ୍କର ରାଜ୍ୟ ନ ଥିଲା । ବହୁ କବି ଓ ପଣ୍ଡିତ ସେମାନଙ୍କର ରଚନାବଳୀଦ୍ୱାରା ଏ ଦେଶର ଅଧିବାସୀମାନଙ୍କୁ ଆମୋଦିତ କରିଥିବେ । ସେସବୁ ଗ୍ରନ୍ଥ ନିଶ୍ଚିହ୍ନ ହୋଇଯିବା ମୂଳରେ ବହୁ ଗୁପ୍ତ ରହସ୍ୟ ବିଦ୍ୟମାନ । ତେବେ ବି ଖୋଜିଲେ କିଛି ମିଳିପାରନ୍ତା, ସେ ବିଷୟ ଭୁଲରେ ବି କେହି ଭାବୁ ନାହାନ୍ତି ।

ରୁଦ୍ର ସୁଧାନିଧି ଗ୍ରନ୍ଥର ଦୁଇଟି ପ୍ରତିଲିପି ସଂଗ୍ରହ କରିଥିବା ଓ ଏହି ଦୁଇ ପ୍ରତିଲିପିର ତୁଳନା କରି ରୁଦ୍ର ସୁଧାନିଧିର ସଂପାଦନା କରିଥିବା ଡକ୍ଟର କରୁଣାକର କର ତାଙ୍କ ସଂପାଦିତ ଗ୍ରନ୍ଥର ମୁଖବନ୍ଧରେ ଲିପିବଦ୍ଧ କରିଛନ୍ତି । ସେଥିରୁ ଗୋଟିଏ ପ୍ରତିଲିପି ପ୍ରାପ୍ତିସ୍ଥାନକୁ ଫେରିଯିବା ପରେ ଘରପୋଡ଼ିରେ ନଷ୍ଟ ହୋଇଯାଇଥିବା କଥା ମଧ୍ୟ ସେ କହନ୍ତି । ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କଦ୍ୱାରା ପ୍ରାଚୀନ ଗଦ୍ୟପଦ୍ୟାଦର୍ଶରେ ସଙ୍କଳିତ ହୋଇଥିବା ରୁଦ୍ର ସୁଧାନିଧିର ଅଂଶବିଶେଷ, ଏହି ପୋଥିର ପାଠ । ଏହା ହିଁ ହେଉଛି ଡକ୍ଟର କରଙ୍କ 'କ' ପୋଥି । ଅନ୍ୟ ପ୍ରତିଲିପି ଅର୍ଥାତ୍ 'ଖ' ପୋଥି ଉତ୍କଳ ବିଶ୍ୱବିଦ୍ୟାଳୟର ପୋଥି ସଂଗ୍ରହାଳୟରେ ଅଦ୍ୟାବଧି ସଂରକ୍ଷିତ । ଡକ୍ଟର କର ସଂପାଦନା କଲାବେଳେ ଏହା ଦୁଏ ତୃଆଂଶର ଅକ୍ଷତ ଅବସ୍ଥାରେ ଥିଲା । ବର୍ତ୍ତମାନ ଏହା ଆହୁରି କୀଟଦ୍ରଂଷ୍ଟ ହୋଇଗଲାଣି । ଡକ୍ଟର କରଙ୍କ ରୁଦ୍ର ସୁଧାନିଧିରେ ଯେତିକି ଅଂଶ ସଂପାଦିତ ହୋଇପାରିଛି, ସେତିକି ବି ଏଥିରେ ନାହିଁ । ତେଣୁ ରୁଦ୍ର ସୁଧାନିଧିର ସୁସଂପାଦନା କରିବା ସମ୍ଭବ ନୁହେଁ ।

ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନ 'ଡଗର' ପତ୍ରିକାରେ କେତେକ ପ୍ରବନ୍ଧ ପ୍ରକାଶ କରି ରୁଦ୍ର ସୁଧାନିଧିର ସଂପାଦନାଗତ ତ୍ରୁଟି ପ୍ରତି ପାଠକ ତଥା ଆଲୋଚକମାନଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି । ସଂପାଦନା କଲାବେଳେ ଯେସବୁ ପ୍ରତି ସଂପାଦକ ସଚେତନ ହେବା ଆବଶ୍ୟକ । ଲିପିକାରଙ୍କ ଦୋଷ କିଛି ସେସବୁର ସଂଶୋଧନ କରାଯାଇପାରେ ଏବଂ ତଦ୍ୱାରା ଗ୍ରନ୍ଥର କେତେକ ଅସଂଗତିକୁ ମଧ୍ୟ ଦୂର କରାଯାଇପାରେ । କେବଳ ଗୋଟିଏ ପୋଥି ଉପରେ ନିର୍ଭର କରି ସଂପାଦନା କରୁଥିବାରୁ ମୁଁ ଏସବୁରେ ହାତ ଦେଇ ନାହିଁ । 'ଖ' ପୋଥିରେ ଥିବା ପୂର୍ଣ୍ଣଚ୍ଛେଦର ବହୁଳତା, ଡକ୍ଟର କରଙ୍କ ସଂପାଦିତ ଗ୍ରନ୍ଥରେ ଦେଖିବାକୁ ମିଳେ । ସେସବୁକୁ ମୁଁ ଦୂର କରିବା ପାଇଁ ଚେଷ୍ଟା କରିଛି ।

Digitized by srujanika@gmail.com

ମୁଦ୍ରଣଗତ ତଥା ପାଠଗତ ତ୍ରୁଟି ଯୋଗୁଁ ତାହା ମଧ୍ଯ ସବୁ ସ୍ଥାନରେ ସ୍ଥିର କରିଯାଇ ପାରି ନାହିଁ । ସେଥିପାଇଁ ମୁଁ ଦୁଃଖିତ । ୧୦୦ରୁ ୧୦୯ ପୃଷ୍ଠାରେ ଥିବା ପାଠାନ୍ତରରେ କ୍ରମବିଚ୍ୟୁତି ହେତୁ ଅସୁବିଧା ସୃଷ୍ଟି ହୋଇଛି । ୧୦୦-(୪)ର ପାଠାନ୍ତର ନାହିଁ । ଏହି ପୃଷ୍ଠାର (୪) ଓ ୧୦୧ ପୃଷ୍ଠାର (୧) ସେହି ପୃଷ୍ଠାର (୨) ଏହି କ୍ରମରେ ପାଠାନ୍ତର ଗ୍ରହଣ କରିବାକୁ ଅନୁରୋଧ ।

ରୁଦ୍ର ସୁଧାନିଧିର ଆଧାର ଗ୍ରନ୍ଥ ଭାବେ ବ୍ୟବହୃତ ହୋଇଥିବା ବହୁ ସଂସ୍କୃତ ପ୍ରାକୃତ ଓ ଅପଭ୍ରଂଶ ଗ୍ରନ୍ଥ ମିଳୁ ନ ଥିବାରୁ ଗ୍ରନ୍ଥ ମଧ୍ୟରେ ବ୍ୟବହୃତ ବହୁ ଅପ୍ରଚଳିତ ଶବ୍ଦର ରୂପ ସ୍ଥିର କରିବା ମଧ୍ଯ ସହଜ ନୁହେଁ । ଏପରି କେତେକ ଶବ୍ଦକୁ ଅପରିବର୍ତ୍ତିତ ଭାବେ ରଖିବା ପାଇଁ ସଂପାଦକ ବାଧ୍ୟ ।

ଏହି ସଂପାଦନାରେ ଥିବା କେତେକ ଦୋଷ ତ୍ରୁଟି ସତ୍ତ୍ୱେ ପୂର୍ବ ସଂପାଦନାର ବହୁ ଦୋଷ ଏଥିରେ ନାହିଁ । ଦୁଇ ସଂପାଦିତ ଗ୍ରନ୍ଥର ତୁଳନାତ୍ମକ ଆଲୋଚନା କଲେ ଏହାର ଉତ୍କୃଷ୍ଟତା ଜାଣିହେବ । ଏସବୁ ବିଷୟରେ ବିଶେଷ କିଛି ନ କହି ସୁଧୀ ପାଠକମାନଙ୍କର ସ୍ନେହ, ଆଦର ଆଶା କରୁଛି ।

ଏହି ଗ୍ରନ୍ଥ ସଂପାଦନା କଲାବେଳେ ମୋତେ ଯେଉଁମାନେ ଅକୁଣ୍ଠଚିତ୍ତରେ ସାହାଯ୍ୟ କରିଛନ୍ତି, ସେମାନେ ହେଲେ ଡକ୍ଟର ବଂଶୀଧର ମହାନ୍ତି, ଦୁଃଖିଶ୍ୟାମ ପଟ୍ଟନାୟକ, ଫକୀରଚରଣ ଦାସ, ଶ୍ରୀନିବାସ ରଥ ଓ କୁମାରୀ ତୃପ୍ତି ପ୍ରଭା ମହାନ୍ତି । ଏମାନଙ୍କ ବ୍ୟତୀତ ବହୁ ଗ୍ରନ୍ଥସଂଗ୍ରହୀଙ୍କର ବାରମ୍ବାର ତାଗିଦା ଭୁଲିବାର ନୁହେଁ । ସେ ସମସ୍ତଙ୍କୁ ମୁଁ ମୋର ହୃଦୟର କୃତଜ୍ଞତା ଜଣାଉଛି ।

ସବୁ ସୁବିଧା ଓ ସାଧନା ଥାଇ ମଧ୍ଯ କାର୍ଯ୍ୟ କରିହୁଏ ନାହିଁ । କାର୍ଯ୍ୟ କରିବାର ପ୍ରେରଣା ମିଳେ କେତେକ ଅଦୃଶ୍ୟ ଶକ୍ତିରୁ । ସେ ଶକ୍ତିକୁ ଜାଣିବା ମୋ ପକ୍ଷରେ ସମ୍ଭବ ନୁହେଁ । ସେହି ଶକ୍ତିର ପ୍ରକଟ ରୂପ ହେଲେ ମୋର ସହଧର୍ମିଣୀ ଶ୍ରୀମତୀ ସରଳା ଦେବୀ ଆଉ ଏହି ଗ୍ରନ୍ଥର ପ୍ରକାଶକ ଶ୍ରୀମାନ୍ ସହଦେବ ପ୍ରଧାନ ।

ଗ୍ରନ୍ଥର ଶୁଦ୍ଧ ପାଠ ନିର୍ଣ୍ଣୟ କରି ଛପାଇବାକୁ ଦେଲାବେଳେ ଅସାବଧାନତା-ବଶତଃ ଏଥିରେ କେତେକ ଅଶୁଦ୍ଧ ପାଠ ପ୍ରବେଶ କରିଯାଇଛି । ଛପା ସରିବା ପରେ ସେସବୁକୁ ଆଉ ଶୁଦ୍ଧ କରି ହେଲା ନାହିଁ । ସେଥିପାଇଁ ବାଧ୍ୟ ହୋଇ ସେହି ପୁରୁଣା କଥା ଲେଖୁଛି ।

ଶୁଦ୍ଧ ଅଶୁଦ୍ଧ ପୁରାଇ ଗାଇବ
ଲେଖନକାର ଦୋଷ ନ ଧରିବ ।

ସ୍ନେହ କରନ୍ତୁ, ଆଦର କରନ୍ତୁ, ଦୋଷ ଦେଖାଇ ଉତ୍ସାହିତ କରନ୍ତୁ । ଏ ଗ୍ରନ୍ଥ ପାଠକମାନଙ୍କ ଉପକାରରେ ଆସୁ । ଭଗବାନଙ୍କ ନିକଟରେ ଏତିକି ନିବେଦନ ।

କୃଷ୍ଣଚରଣ ସାହୁ

Digitized by srujanika@gmail.com

# ମୁଖବନ୍ଧ

ରୁଦ୍ର ସୁଧାନିଧି ପ୍ରାଚୀନ ଓଡ଼ିଆ ସାହିତ୍ୟର ଏକ ଅମର ରଚନା । ଶାରଳା ଦାସ ପ୍ରାଚୀନ ପଦ୍ୟସାହିତ୍ୟର ଆଦିକବି ଭାବେ ସମ୍ମାନିତ ହେବା ପରି ନାରାୟଣ ଦାସ ପ୍ରାଚୀନ ଗଦ୍ୟ ସାହିତ୍ୟ (କଥା କାବ୍ୟ)ର ଆଦିସ୍ରଷ୍ଟା । ଶୂଦ୍ରମୁନି ଶାରଳା ଦାସଙ୍କ ପରେ ବହୁ କବି ପଦ୍ୟ ସାହିତ୍ୟର ବିକାଶ କଲେ । ଅଥଚ ନାରାୟଣ ଦାସଙ୍କ ଅନୁସରଣ କରିଥିବା ଦ୍ୱିତୀୟ ଲେଖକ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଆଉ ନାହାନ୍ତି । ଗଦ୍ୟ ସାହିତ୍ୟର ଲୋକପ୍ରିୟତା ଏହାର ଏକତମ କାରଣ ହୋଇପାରେ, କିନ୍ତୁ ପ୍ରକୃତ କଥା ହେଲା ପଦ୍ୟ ଅପେକ୍ଷା ଗଦ୍ୟ ଲେଖିବା କଷ୍ଟକର । ପଦ୍ୟରେ ପଦ ମିଳାଇ ଛନ୍ଦ ଦେଇ କାବ୍ୟ, କବିତା, ପୁରାଣ ଏପରିକି ଦର୍ଶନଶାସ୍ତ୍ର ଲେଖିବା ଯେତେ ସହଜ, ଗଦ୍ୟଲେଖା ସେତେ ସହଜ ନୁହେଁ । ଛନ୍ଦର ଗତି ସହ କଳ୍ପନା, ଅନୁଭୂତି, ଉକ୍ତି ବୈଚିତ୍ର୍ୟ ପ୍ରଭୃତି ସଂପୃକ୍ତ ହୋଇ ଏହାକୁ ଏପରି ଏକ ବ୍ୟକ୍ତିତ୍ୱର ରୂପ ପ୍ରଦାନ କରେ ଏବଂ ଏଥିରେ ଏପରି ଏକ ଚମତ୍କାର ରସ ସୃଷ୍ଟି ହୁଏ ଯେ ପାଠକ ସେଥିରେ ଅଭିଭୂତ ହୋଇଯାଏ ଏବଂ ଏହାର ଦୋଷ ଦେଖିବା ପାଇଁ ବେଳ ପାଏ ନାହିଁ । କବିତାରେ ପ୍ରଯୁକ୍ତ ଗୋଟିଏ ଗୋଟିଏ ଶବ୍ଦ ବା ଉକ୍ତି ସମସ୍ତ ପଙ୍କ୍ତିକୁ ରସାପ୍ଳୁତ କରି ଦେଇପାରେ, କିନ୍ତୁ ଗଦ୍ୟ ରଚନାରେ ପ୍ରତ୍ୟେକ ଶବ୍ଦ ପ୍ରତ୍ୟେକ ପ୍ରୟୋଗ ଓ ପ୍ରତ୍ୟେକ ଉକ୍ତି ଚମତ୍କାର ହେବା ବିଧେୟ । ଏହିସବୁ ଅସୁବିଧାକୁ ବିଚାର କରି ପ୍ରାଚୀନ ଆଲଂକାରିକମାନେ ଗଦ୍ୟକୁ କବିମାନଙ୍କର ନିକଷ ରୂପେ ଗ୍ରହଣ କରିଛନ୍ତି । "ଗଦ୍ୟଂ କବୀନାଂ ନିକଷଂ ବଦନ୍ତି" ।

•

ନାରାୟଣ ଦାସ ଆଲଂକାରିକମାନଙ୍କର ଚେତାବନୀକୁ ଭ୍ରୂକ୍ଷେପ ନ କରି ପ୍ରାଚୀନ ଯୁଗରେ ଅର୍ଥାତ୍ ଯେତେବେଳେ କବିତା ରଚନାକୁ କବିମାନେ ଜୀବନର ଚରମଲକ୍ଷ୍ୟ ରୂପେ ଗ୍ରହଣ କରୁଥିଲେ, ସେତିକିବେଳେ ଓଡ଼ିଆ ଭାଷାରେ ପ୍ରଥମ କଥାଗ୍ରନ୍ଥ ଲେଖିବା ପାଇଁ ବଦ୍ଧପରିକର ହେଲେ ।

## କଥାଗ୍ରନ୍ଥ ଭାବରେ ରୁଦ୍ର ସୁଧାନିଧି

ରୁଦ୍ର ସୁଧାନିଧି ଯେ ଏକ କଥାଗ୍ରନ୍ଥ, ଏହା ଗ୍ରନ୍ଥ ମଧ୍ୟରେ ବାରମ୍ବାର ସୂଚିତ । ଗ୍ରନ୍ଥର ଆରମ୍ଭରେ ଲେଖକ ଏହାର ପ୍ରାରମ୍ଭିକ ସୂଚନା ଦେଇ ଲେଖିଛନ୍ତି—"ସେ କଥା ହି ଅବା କେଉଁଣ ।" ଅନ୍ୟ ସ୍ଥଳରେ ସେ କଥାକୁ ହିଁ ସ୍ୱୀକୃତି ଦେଇଛନ୍ତି ।

(୧) "ହାଦେ ଏମନ୍ତ ହୋଇ ସେ କଥା ଅଛୁ" (ପୃ ୧୦୬)

Digitized by srujanika@gmail.com

(୨) "ବ୍ରହ୍ମା, ଇନ୍ଦ୍ର, ରୁଦ୍ର ଯାହାକୁ ନ ପାରବେ ମୁଛି :
ଆଉ ଇତର ଲୋକେ ବୁଝର କ କଥା ଅଛୁ ।" (ପୃ ୧୦୭)

(୩) ବ୍ଲମର କହିଲ କଥାମାନଙ୍କରେ କରି ଅମୃତ ପାନ କଲ ପ୍ରାୟେ ହୋଇଲ । (ପୃ: ୭୭)

(୪) ସେ କଥା କର୍ଣ୍ଣକୁ ଭୂଷଣ ଅଟଇ ; ମୋତେ ଆନ ନ ଘଟଇ । ଶ୍ରବଣେ ଅମୃତ ପାନ କଲ ପ୍ରାୟେକ ଶୁଣିମି । (ପୃ ୧୦୨)

(୫) "ସେ କଥା ବିସ୍ତାର କରି ମୁଁ କହିଲ ଯାହା ଉପାସ୍ନ କରିପାରଲେ ଆଣ ତାହା ।" (ପୃ ୧୦୭)

ରୁଦ୍ର ସୁଧାନିଧିର ଚତୁର୍ଥ ଅଂଶ ସମ୍ପୂର୍ଣ୍ଣ କଲାବେଳେ ଲେଖକ ଲେଖିଛନ୍ତି, "ଏ ଅଂଶର ନାମ ଷୈଲୋକ୍ୟ ବିଜୟ, ଢୁଣ୍ଡିକରଙ୍କ ମତେ କଥାରେ ଚତୁର୍ଥ ଅଂଶ ହୋଇଲା ସଂପୂର୍ଣ୍ଣ ।"

କଥା ଦୃଷ୍ଟିରୁ 'ଅଗ୍ନିପୁରାଣ'ରେ ପାଞ୍ଚ ପ୍ରକାର ଗଦ୍ୟପ୍ରବନ୍ଧର ସୂଚନା ମିଳେ । (୧) କଥା, (୨) ଖଣ୍ଡ କଥା, (୩) ଆଖ୍ୟାୟିକା, (୪) ପରି କଥା, (୫) କଥାନିକା ।

କଥା—(୧) ଶ୍ଲୋକ ମାଧ୍ୟମରେ କଥାକାରର ନିଜ ବଂଶ ବର୍ଣ୍ଣନା ।

(୨) ମୁଖ୍ୟ ଉଦ୍ଦେଶ୍ୟର ପୂର୍ଣ୍ଣତା ପାଇ ଅନ୍ୟ କଥାଙ୍କର ସଂଯୋଜନା ।

(୩) ପରିଚ୍ଛେଦବିହୀନତା ।

(୪) ମୁଖ୍ୟ ସୂତ୍ରକୁ ଗତିଶୀଳ ତଥା କଥାସମାପ୍ତିର ସୂଚନା ଦେବା ପାଇଁ ଲମ୍ବକର ପ୍ରୟୋଗ ।

ଖଣ୍ଡ କଥା—

(୧) କଥା ମଧ୍ୟରେ ଚତୁଷ୍ପଦୀ ଶ୍ଲୋକର ପ୍ରୟୋଗ ।

(୨) ନାୟକ-ରାଜମନ୍ତ୍ରୀ, ବ୍ୟାପାରୀ ବା ବ୍ରାହ୍ମଣଙ୍କୁ ବକ୍ତାରୂପେ ଗ୍ରହଣ ।

(୩) କରୁଣରସ ବା ସ୍ମର ପ୍ରକାରର ବିପ୍ରଲମ୍ଭଶୃଙ୍ଗାରର ବର୍ଣ୍ଣନା ।

ପରି କଥା—

(୧) ଖଣ୍ଡକଥା ସଦୃଶ ।

(୨) କଥା ଓ ଆଖ୍ୟାୟିକାର ଏକ ସମନ୍ୱିତ ରୂପ ।

(୩) ଅପୂର୍ଣ୍ଣ କଥାନକ ।

Digitized by srujanika@gmail.com

ଆଖ୍ୟାୟିକା—

(୧) ଲେଖକଙ୍କ ବଂଶର ବିସ୍ତୃତ ବର୍ଣ୍ଣନା ।

(୨) କନ୍ୟାହରଣ, ସଂଗ୍ରାମ, ବିୟୋଗ, ବିପଦର ବର୍ଣ୍ଣନା ।

(୩) ଘାତ ପ୍ରତିଘାତ, ପ୍ରକୃତି ପ୍ରଭୃତିର ବିସ୍ତୃତ ବିଶ୍ଳେଷଣ ।

(୪) ପରିଚ୍ଛେଦର ନାମ ଉଚ୍ଛ୍ୱାସ ।

(୫) ଅଳ୍ପସମାସଯୁକ୍ତ ସରଳ ଗଦ୍ୟ ଓ କେତେକ ସ୍ଥାନରେ ପଦ୍ୟର ପ୍ରୟୋଗ ।

କଥନିକା —

(୧) ଆଦ୍ୟ ଭାଗରେ ଭୟାନକ ରସ ।

(୨) ମଧ୍ୟଭାଗରେ କରୁଣ ରସ ।

(୩) ଶେଷଭାଗରେ ଅଦ୍ଭୁତ ରସ ।

(୪) ଏହାର ପ୍ରକୃତ ଉଦାହରଣ ନୁହେଁ ସଙ୍କୀର୍ଣ୍ଣ ।

ଅଗ୍ନିପୁରାଣରେ ପାଞ୍ଚ ପ୍ରକାର କଥାକାବ୍ୟ ମଧ୍ୟରୁ ଖଣ୍ଡ କଥା, ପରିକଥା ଓ କଥନିକା ଅସଂପୂର୍ଣ୍ଣ; ତେଣୁ ଏଥିରୁ କଥା ଓ ଆଖ୍ୟାୟିକା ହିଁ ମୁଖ୍ୟ । ଏଥିରେ ମଧ୍ୟ କୌଣସି ମୌଳିକ ପାର୍ଥକ୍ୟ ପରିଦୃଷ୍ଟ ହୁଏ ନାହିଁ । ତେବେ ବି ପ୍ରାଚୀନ ଆଳଂକାରିକମାନେ କଥା ଓ ଆଖ୍ୟାୟିକା ମଧ୍ୟରେ ପାର୍ଥକ୍ୟ ଦର୍ଶାଇବା ପାଇଁ ଚେଷ୍ଟା କରିଥାନ୍ତି ।

କାବ୍ୟାଦର୍ଶ ଅନୁଯାୟୀ—

ଆଖ୍ୟାୟିକା ନାୟକଦ୍ୱାରା କଥିତ

କଥା— ନାୟକ ବା ଅନ୍ୟ କାହାରିଦ୍ୱାରା କଥିତ ।

ଆଖ୍ୟାୟିକାରେ ନିଜ ଗୁଣକଥନ ଦୋଷପୂର୍ଣ୍ଣ ନୁହେଁ ।

ଶବ୍ଦାର୍ଥ ଚିନ୍ତାମଣିମତେ—

କଥା— କଳ୍ପନାଯୁକ୍ତ ପ୍ରବନ୍ଧ ।

ଆଖ୍ୟାୟିକା—ସତ୍ୟ ଓ କଳ୍ପନା ସମନ୍ୱିତ ପ୍ରବନ୍ଧ ।

ଅମର କୋଷ—

ଆଖ୍ୟାୟିକା—'ଆଖ୍ୟାୟିକୋପଲବ୍ଧାର୍ଥା'

କଥା—'ପ୍ରବନ୍ଧ କଳ୍ପନା କଥା'

Digitized by srujanika@gmail.com

କାବ୍ୟାନୁଶାସନ—

ଆଖାୟିକା— (୧) ଧୀରୋଦାତ୍ତ ନାୟକଦ୍ୱାରା ନିଜ ଚରିତ୍ରର ବର୍ଣ୍ଣନା ।

(୨) ବକ୍ତ୍ର ଓ ଅପବକ୍ତ୍ର ଛନ୍ଦ ରଚିତ ।

(୩) ଉଚ୍ଛ୍ୱାସ ବିଭକ୍ତ ।

(୪) ସଂସ୍କୃତ ଗଦ୍ୟରଚନା ।

(୫) କନ୍ୟାହରଣ, ସଂଗ୍ରାମ, ଅଭ୍ୟୁଦୟ ।

କଥା— (୧) ଧୀରପ୍ରଶାନ୍ତ ନାୟକ ।

(୨) ଗଦ୍ୟ ବା ପଦ୍ୟରେ ବର୍ଣ୍ଣିତ ।

(୩) ସଂସ୍କୃତ, ପ୍ରାକୃତ ଓ ଅପଭ୍ରଂଶ ଆଦି ଭାଷାରେ ରଚିତ ।

ବିଭିନ୍ନ ଅଳଙ୍କାର ଶାସ୍ତ୍ରରେ କଥା ଓ ଆଖ୍ୟାୟିକାର ଯେଉଁ ପ୍ରଭେଦ ନିରୂପଣ କରାଯାଇଛି ସେସବୁକୁ ବିଚାର କଲେ ଜଣାଯାଏ ଯେ କଥା—କଳ୍ପନାମୂଳକ ପ୍ରବନ୍ଧ ଓ ଆଖ୍ୟାୟିକା ସତ୍ୟ ଓ କଳ୍ପନାସମନ୍ୱିତ ପ୍ରବନ୍ଧ ।

ଏହା ବ୍ୟତୀତ ଆଖ୍ୟାୟିକାରେ ଉଚ୍ଛ୍ୱାସ ବିଭାଗ 'କଥା'ରେ ଗୃହୀତ ନୁହେଁ । ଏହି ପାର୍ଥକ୍ୟକୁ ଦୃଷ୍ଟିରେ ରଖି ଆଳଙ୍କାରିକମାନେ 'କାଦମ୍ବରୀ'କୁ କଥା ଓ 'ହର୍ଷଚରିତ'କୁ ଆଖ୍ୟାୟିକା ଶ୍ରେଣୀଭୁକ୍ତ କରିଥିଲେ । ପରବର୍ତ୍ତୀ ଯୁଗରେ 'କଥା' ଓ 'ଆଖ୍ୟାୟିକା' ମଧ୍ୟରେ ଥିବା ସୀମାରେଖା ପ୍ରାୟ ଲୁପ୍ତ ହୋଇଗଲା । କଥାର କିଛି ବୈଶିଷ୍ଟ୍ୟ ଆଖ୍ୟାୟିକାରେ ଓ ଆଖ୍ୟାୟିକାର କିଛି ବିଶେଷତା କଥାରେ ଦେଖିବାକୁ ମିଳିଲା ।

ସେଥିପାଇଁ ଦଣ୍ଡୀ 'କାବ୍ୟାଦର୍ଶ' (୧।୨୩—୨୮) ରେ କହିଛନ୍ତି—କଥା ଓ ଆଖ୍ୟାୟିକା ବସ୍ତୁତଃ ଏକ ଶ୍ରେଣୀୟ ରଚନା । ନାରାୟଣ ଦାସ 'ରୁଦ୍ର ସୁଧାନିଧି' ଲେଖିବାର ବହୁ ପୂର୍ବରୁ ଏହି ପରମ୍ପରାର ସୂତ୍ରପାତ ହୋଇ ସାରିଥିଲା । ସେଥିପାଇଁ ବୋଧହୁଏ ନାରାୟଣ ଦାସ 'ରୁଦ୍ର ସୁଧାନିଧି'କୁ 'କଥା' ଆଖ୍ୟା ଦେଇଛନ୍ତି । ଏହି କଥା ଲେଖିବା ବେଳେ ସେ ଏଥିରେ ରୁଦ୍ରଟଙ୍କ କାବ୍ୟାଳଂକାର (୧୬—୨୦—୨୩) ରେ ନିର୍ଣ୍ଣୀତ ହୋଇଥିବା କଥା ବା ମହାକଥାର ଲକ୍ଷଣକୁ ଅନୁସରଣ କରିଥିବା ନିମ୍ନୋକ୍ତ ବିଶ୍ଳେଷଣରୁ ଅନୁମାନ କରାଯାଇପାରେ । ରୁଦ୍ରଟଙ୍କର ମତରେ କଥା ହେଉଛି –

"ଶ୍ଳୋକୈର୍ମହାକଥାୟାମିଷ୍ଟାନ ଦେବାନ୍ ଗୁରୂନ୍ ନମସ୍କୃତ୍ୟ
ସଂକ୍ଷେପେଣ ନିଜଂ କୁଳମଭିଦଧ୍ୟାତ୍ସ୍ୱଂ ଚ କର୍ତ୍ତୃତୟା ।

Digitized by srujanika@gmail.com

ସାନୁପ୍ରାସେନ ତତୋ ଲବ୍ଧବରେଣ ଗଦ୍ୟେନ
ରଚମେ୍ନଳ କଥାଶରୀରଂ ପୁରେବ ପୁରବର୍ଣ୍ଣକପ୍ରଭୃତୀନ୍ ।
ଆଦୌ କଥାନ୍ତରଂ ବା ତସ୍ୟାଂନ୍ୟସ୍ୟେତ୍ ପ୍ରପଞ୍ଚିତଂ ସମ୍ୟକ୍
ଲଘୁ ତାବତ୍ ସନ୍ଧାନଂ ପ୍ରକ୍ରାନ୍ତକଥାବତାରସ୍ୟ ।
କନ୍ୟାଲାଭଫଲାଂ ବା ସମ୍ୟଗ୍ ବିନ୍ୟସ୍ୟ ସକଳ ଶୃଙ୍ଗାରମ୍
ଇତି ସଂସ୍କୃତେନ କୁର୍ଯ୍ୟାତ୍ କଥାମଗଦ୍ୟେନ ଚାନ୍ୟେନ"

—ରୁଦ୍ରଟଙ୍କ କାବ୍ୟାଳଙ୍କାର (୧୬ – ୨୦ – ୨୩)

ଅର୍ଥାତ୍ କଥା ବା ମହାକଥାର ମୁଖ୍ୟ ଲକ୍ଷଣ ହେଲା—

(୧) କଥାର ଆରମ୍ଭରେ ଦେବତା ବା ଗୁରୁଙ୍କ ବନ୍ଦନା ।

(୨) ଲେଖକଙ୍କର ବା ତାଙ୍କ ବଂଶର ପରିଚୟ ।

(୩) କଥାର ଉଦ୍ଦେଶ୍ୟ ।

(୪) ଆରମ୍ଭରେ ମୁଖ୍ୟ କାହାଣୀର ପ୍ରସ୍ତାବନା ସ୍ୱରୂପ ଏକ କଥାନ୍ତରର ଯୋଜନା ।

(୫ ସରସ ବର୍ଣ୍ଣନା ମାଧ୍ୟମରେ କନ୍ୟାପ୍ରାପ୍ତି ।

ରୁଦ୍ର ସୁଧାନିଧିର ଲେଖକ ପ୍ରଥମେ ହରିହର ବା ପାଠାନ୍ତରରେ ଶିବଙ୍କୁ ସ୍ମରଣ କରିଛନ୍ତି । ଏହା ବନ୍ଦନା ନୁହେଁ । କଥା ମଧ୍ୟରେ ଶିବଙ୍କ ପାଇଁ ଏହି ସ୍ତୁତି ସଂଯୋଜିତ । ତେବେ ପ୍ରଶ୍ନ ହେଉଛି, ଲେଖକଙ୍କ ଇଷ୍ଟଦେବତା କେବଳ ଶିବ ଥିଲେ ନା ହରି ଓ ହର ଥିଲେ ? କଥାକୁ ନିରୀକ୍ଷଣ କଲେ ଜଣାଯାଏ ଯେ ଲେଖକଙ୍କଠାରେ ଶିବ ଅଂଶ ଓ ବୈଷ୍ଣବ ଅଂଶ ଭିନ୍ନ ଭିନ୍ନ ହୋଇ ରହିଛି । ସେଥିପାଇଁ ତାଙ୍କ ଲେଖାରେ ଶିବଙ୍କ ବନ୍ଦନା ସହ ବିଷ୍ଣୁଙ୍କ ପ୍ରଶଂସା ମଧ୍ୟ ମିଳେ । ଏହି ସୂତ୍ରକୁ ମନରେ ରଖି ବିଚାର କଲେ (ଖ) ପୋଥିର "ଶ୍ରୀ ହରିହରାଭ୍ୟାଂ ନମଃ" ପାଠ ହିଁ ଶୁଦ୍ଧ ଜଣାପଡ଼େ ।

ଇଷ୍ଟଦେବଙ୍କୁ ସ୍ମରଣ କରିବା ପରେ ଲେଖକ ନିଜ ପ୍ରଶଂସାବାଞ୍ଛିତ କେତେକ ପଂକ୍ତି ସଂଯୋଜିତ କରିଥିବା ପରି ମନେହୁଏ । ରୁଦ୍ରଟଙ୍କ ଲକ୍ଷଣକୁ ଏହା ଅନୁସରଣ କରୁଥିଲେ ହେଁ ଗ୍ରନ୍ଥ ମଧ୍ୟରେ ଲେଖକଙ୍କର ଆଉ ଗୋଟିଏ ସ୍ୱତନ୍ତ୍ର ପରିଚୟ ମିଳେ । ସେଠାରେ ଲେଖକ ଜଣେ ବନସ୍ଥୀ ବୈଷ୍ଣବ । ପ୍ରଥମାଂଶରେ ଥିବା ଅଭିମାନ ପରବର୍ତ୍ତୀ ଉଲ୍ଲେଖରେ ନାହିଁ ।

ନିଜକୁ 'ଭୁବନେଶ୍ୱରୀ ଦେବୀର ବରପୁତ୍ର', 'ସ୍ୱରୂପାବତାର ଶାରଦା' କହୁଥିବା ଅଭିମାନୀ ଲେଖକ ପରବର୍ତ୍ତୀ ପର୍ଯ୍ୟାୟରେ ଭୁବନେଶ୍ୱରଙ୍କୁ ବିଷ୍ଣୁଙ୍କଠାରୁ

Digitized by srujanika@gmail.com

ଅଲଙ୍କ ଶବ୍ଦାନଶିଷ୍ଟ ଦେଖା ସବେ ବର୍ଣ୍ଣନା କରିଛନ୍ତି । ଏସବୁ ପାର୍ଥକ୍ୟରୁ ଦୁଇଟି କଥା ଅନୁମାନ କରାଯାଇପାରେ । ପ୍ରଥମ ହେଉଛି ଗ୍ରନ୍ଥରେ ଥିବା ଅବଧୂତ, ସୁତନ୍ତ୍ର ବାଣଶୀ ଓ କାମାନନ୍ଦ ଯୋଗୀ ପ୍ରଭୃତି କଥାନକ ପ୍ରଥମେ ପୃଥ୍ୱୀଙ୍କୁ ପ୍ରକମ୍ପିତ କରିବା କ୍ଷମତା ରଖି ଆବିର୍ଭୂତ ହୋଇଥିଲେହେଁ ପରେ ବୈଷ୍ଣବୀୟ ଶକ୍ତି ନିକଟରେ ପରାଭୂତ ହୋଇଛନ୍ତି । ସେହିପରି ଗ୍ରନ୍ଥର ଲେଖକ । ସେ ପ୍ରଥମେ ନିଜ ପାଇଁ ବଡ଼ ବଡ଼ କଥା କହିଥିଲେହେଁ କଥାର ପରବର୍ତ୍ତୀ ଅଂଶରେ ନିଜକୁ ଶ୍ରୀଜଗନ୍ନାଥ ସେବକମାନଙ୍କର ସେବକରୂପେ ସମ୍ବୋଧିତ କରିଛନ୍ତି । ଦ୍ୱିତୀୟ ସୂଚନା ହେଉଛି ରୁଦ୍ରସିଂହଙ୍କ ଲକ୍ଷକୁ ଆଖି ଆଗରେ ରଖି ପରବର୍ତ୍ତୀ ଯୁଗରେ ଏହାର ସଂଯୋଜନା କରାଯାଇଛି । ଦୁଇଟିଯାକ ପୋଥିରେ ଏହି ଅଂଶ ଥିବାରୁ ଏହାକୁ ପ୍ରକ୍ଷେପ ମଧ୍ୟ କହିବା ଠିକ୍ ନୁହେଁ । ଲେଖକଙ୍କ ଜୀବନର ଗନ୍ଧ ଏଥିରୁ ନିର୍ଦ୍ଧାରିତ ହୋଇଥାଏ । କାବ୍ୟାଦର୍ଶ ଅନୁଯାୟୀ ଆଖ୍ୟାୟିକାର ଲେଖକ ନିଜର ଗୁଣ ବର୍ଣ୍ଣନା କରିପାରେ ଓ ଏହା ଦୋଷପୂର୍ଣ୍ଣ ନୁହେଁ ।

ରୁଦ୍ରସିଂହଙ୍କ ଲକ୍ଷରେ ତୃତୀୟ ଭାଗ ହେଲା କଥାର ଉଦ୍ଦେଶ୍ୟ । ସଂକ୍ଷିପ୍ତଭାବେ ହେଲେ ମଧ୍ୟ ବୃଦ୍ଧ ସୁଧୀଜନଙ୍କରେ ଏହାର ସ୍ଥିତି ସ୍ୱୀକାର କରାଯାଇଛି । ଲେଖକ କଥାର ଉଦ୍ଦେଶ୍ୟ ବିଷୟରେ କହିଛନ୍ତି—

"ଜାଣିମେ ଯୋଗେ । ନ ଜାଣି ପୁଚ୍ଛିବେ ନା ବହୁତ ଲୋକେ । ଏଣୁକରି କହିବା ନା ଆଉ ସମ୍ଭବ ଯାକେ । ସେ କଥା ହିଁ ଅବା କେଉଁଣ ? କପିଳାସ କନ୍ଦରେ ପାର୍ବତୀଙ୍କି ହର ପୃଚ୍ଛା କଲେ ଯେଉଁଣ ।"

ଶିଶୁବେଦ କଥାଗ୍ରନ୍ଥ ନୁହେଁ, ତେବେ ବି ଏହାର ଲେଖକ ଅନୁରୂପ ପଦ୍ଧତି ଗ୍ରହଣ କରି ଲେଖିଛନ୍ତି—"ବୋଇଲେ ନ ଜାଣଇ, ନ ବୋଇଲେ କଳା କରଇ । କି ବୁଧ କରିବା ନ ଜାଣି ।"

ଉଦ୍ଦେଶ୍ୟନିହିତ ଏହି କ୍ଷୁଦ୍ର ଅଂଶରୁ ଆଲଂକାରିକ ଭାମହଙ୍କ ନିର୍ଦ୍ଦେଶିତ କଥା ଓ ଆଖ୍ୟାୟିକା କହିବାର ଦୁଇଟିଯାକ ପରଂପରା ମିଳେ । ଭାମହଙ୍କ ମତରେ କଥା, ଶ୍ରୋତା ଓ ବକ୍ତା ମାଧ୍ୟମରେ କଥିତ ହେବା ଉଚିତ । ସେଥିପାଇଁ ଲେଖକ ପୂର୍ବ କଥାର ସୂଚନା ଦେଇ ଶିବ ପାର୍ବତୀଙ୍କର ଅବତାରଣା କରିଛନ୍ତି । ଏହି ପରଂପରା ଭାରତରେ ଅତି ପ୍ରାଚୀନ ହେଲେହେଁ ଏବଂ ମହାଭାରତ, ଭାଗବତ ପ୍ରଭୃତି ପ୍ରସିଦ୍ଧ ପୁରାଣ ଓ ଦୋଳିଗୋବିନ୍ଦ, କଳାବତୀ ପ୍ରଭୃତି କଥା ଗ୍ରନ୍ଥରେ ଏହା ପାଳିତ ହୋଇଥିଲେହେଁ ନାରାୟଣ ଦାସ ଏହା ପାଳନ କରି ନାହାନ୍ତି । ଅନ୍ୟ ପକ୍ଷରେ ଭାମହଙ୍କ ନିର୍ଦ୍ଦେଶିତ ଆଖ୍ୟାୟିକାର ଲକ୍ଷଣକୁ ଅନୁସରଣ କରି ନିଜେ ଏହାର ବକ୍ତା ହୋଇଛନ୍ତି । ଈଶ୍ୱର ପାର୍ବତୀଙ୍କ ମଧ୍ୟରେ ଆବଦ୍ଧ ଥିବା କଥା ସର୍ବସାଧାରଣଙ୍କ ପାଇଁ ସହଜ ଭାବରେ ପ୍ରସ୍ତୁତ

Digitized by srujanika@gmail.com

ହୋଇଛି । ଗ୍ରନ୍ଥ ମଧ୍ୟରେ ଥିବା ଗର୍ଭସ୍ଥ ପୁରୁଷ ଓ ଅବଧୂତ, ସୂତକ ବ୍ରାହ୍ମଣୀ ଓ ସଦ୍ୟଜାତ ଶିଶୁ କାମାନନ୍ଦ ଯୋଗୀ ଓ ରୁଦ୍ରସୁଧାନିଧିର ଉକ୍ତି-ପ୍ରତ୍ୟୁକ୍ତି କେବଳ ବର୍ଣ୍ଣନାର ନୀରସତାକୁ ଭଙ୍ଗିବାକୁ ସମର୍ଥ ହୋଇଥିଲେହେଁ ମୁଖ୍ୟ କଥାର ମୂଳ-ସ୍ରୋତକୁ ପରିବର୍ତ୍ତିତ କରି ପାରିନାହିଁ ।

ଭାମହଙ୍କ ନିର୍ଦ୍ଦେଶିତ ଆଖ୍ୟାୟିକାର ଉଚ୍ଛ୍ୱାସ ଭାଗ ସଦୃଶ ରୁଦ୍ର ସୁଧାନିଧିରେ ଅଂଶ ବିଭାଜନ ରହିଛି । ଗ୍ରନ୍ଥର ଚତୁର୍ଥ ଅଂଶ ଶେଷରେ ଓ ପଞ୍ଚମ ଅଂଶ ଆରମ୍ଭରେ ଏହାର ସୂଚନା ମିଳିଥାଏ । ଏହି ବିଭାଜନକୁ ସ୍ପଷ୍ଟ କରିବା ପାଇଁ ଲେଖକ ଲେଖିଛନ୍ତି :—

"ଏ ଅଂଶର ନାମ ତୈଲୋକ୍ୟ ବିଜୟେ । ତ୍ରିକରଣ (୧)ଙ୍କ ମତେ କଥାରେ ଚତୁର୍ଥ ଅଂଶ ହୋଇଲା ସମ୍ପୂର୍ଣ୍ଣ । ଏବେ ପଞ୍ଚମ ଅଂଶ ପ୍ରଥମ ବର୍ଷାରସଜଳର ସୁଧାନିଧି ବୋଲି ପଞ୍ଚମ ଅଂଶର ନାମ" । (ପୃ. ୧୦୦)

ଏହି ଅଂଶରେ କଥା ବିଭାଜନ ସମ୍ବନ୍ଧୀୟ ଦୁଇଟି ସୂଚନା ଅର୍ଥାତ୍ ଅଂଶ ଓ ବର୍ଷ ଥିଲେହେଁ ଅନ୍ୟ ସ୍ଥଳରେ ଏହାର ସୂଚନା ନାହିଁ । ଅନ୍ୟାନ୍ୟ ଅଂଶ ବା ବର୍ଷ ବିଭାଗ ଗ୍ରନ୍ଥର ଅନ୍ୟ କେଉଁଠାରେ ଥିଲା କହିବା ସହଜ ନୁହେଁ । ତେବେ ପ୍ରସଙ୍ଗ ଦୃଷ୍ଟିରୁ ରୁଦ୍ର ସୁଧାନିଧିକୁ ମୁଖ୍ୟତଃ ଦୁଇ ଭାଗରେ ବିଭାଗ କରାଯାଇପାରେ ଓ ପ୍ରତ୍ୟେକ ବିଭାଗରେ କେତେକ ଅଂଶ ଥିବା ଅନୁମାନ କରାଯାଇ ପାରେ । ନିମ୍ନରେ ବିଭାଜନର ଏକ ସମ୍ଭାବ୍ୟ ରୂପ ପ୍ରସ୍ତୁତ କରାଯାଇଛି ।

୧ — ରୁଦ୍ର ସୁଧାନିଧିର ପୂର୍ବଜନ୍ମ କଥା ବା ଅଭିନବ ଚୈତନ୍ୟ ପ୍ରସଙ୍ଗ ।

(ପୃ — ୧ — ୬୨)

୨ — ରୁଦ୍ର ସୁଧାନିଧି ପ୍ରସଙ୍ଗ (ଜନ୍ମ—ଶିକ୍ଷା — ବିବାହ) ପୃ ୬୨ରୁ ସମାପ୍ତ ।

ପ୍ରଥମ ବିଭାଗ ହେଉଛି ରୁଦ୍ରଟଙ୍କ ନିର୍ଦ୍ଦେଶିତ ଚତୁର୍ଥ ଲକ୍ଷଣ ଓ ଦ୍ୱିତୀୟ ବିଭାଗ ହେଉଛି ପଞ୍ଚମ ଲକ୍ଷଣ ।

## ଅଂଶ ବିଭାଜନ

ପ୍ରଥମ ବିଭାଗରେ ଦୁଇଟି ଅଂଶ ।

### ପ୍ରଥମ ଅଂଶ

(କ) ଆମ୍ର କଳ୍ପତରୁ ଲୀଳା କ୍ରୀଡ଼ା ପ୍ରସଙ୍ଗ । (ମୋହିନୀ କନ୍ୟା ଜନ୍ମ)

(ଖ) ସ୍ୱର୍ଗବଣିଙ୍କ ପରୀକ୍ଷା ଓ ଅଭିନବ ଚୈତନ୍ୟର ସ୍ଖଳନ ।

---

୧— ବଟବାଳ ଚକ୍ରପାଣି ପଟ୍ଟନାୟକ ତ୍ରିକରଣରେ ଅର୍ଥ କରିଥିଲେ (୧) ଅଳଙ୍କରଣ (୨) ବ୍ୟାକରଣ (୩) ପ୍ରକରଣ ।

Digitized by srujanika@gmail.com

(ଗ) ଅଭିନବ ଚୈତନ୍ୟକୃତ ମର୍ତ୍ତ୍ୟଜଗତର ଦୁଃଖ ବର୍ଣ୍ଣନା ।

(ଘ) ପଞ୍ଚାଶ ବର୍ଣ୍ଣରେ ଶିବସ୍ତୁତି ।

## ଦ୍ୱିତୀୟ ଅଂଶ

(ଙ) ବସୁଧାମଣ୍ଡନଙ୍କ ରାଣୀ ଶଶୀପ୍ରଭାଙ୍କର ଗର୍ଭଧାରଣ

(ଚ) ଅବଧୂତ ଆଗମନ ।

(ଛ) ଅବଧୂତ ଓ ଗର୍ଭସ୍ଥ ଶିଶୁର ଶାସ୍ତ୍ର ଚର୍ଚ୍ଚା ।

ସେହିପରି ତୃତୀୟ ବିଭାଗକୁ—

## ତୃତୀୟ ଅଂଶ

(କ) ରୁଦ୍ର ସୁଧାନିଧିର ଜନ୍ମ ।

(ଖ) ସୂତକ ବାରୁଣୀ ପ୍ରସଙ୍ଗ ।

(ଗ) କୁମାରର ବିଦ୍ୟାଶିକ୍ଷା ।

(ଘ) କନ୍ୟା ଅନୁସନ୍ଧାନ ।

## ଚତୁର୍ଥ ଅଂଶ (ନୈମିତ୍ତିକ ବିଜୟ)

(କ) କାମାନନ୍ଦ ଯୋଗୀ ପ୍ରସଙ୍ଗ ।

## ପଞ୍ଚମ ଅଂଶ (ରସଦଳର ସୁଧାନିଧି)

(କ) ମୁକ୍ତାଦଣ୍ଡୀଦମନିକରଣୀ କନ୍ୟା ପ୍ରସଙ୍ଗ ।

(ଖ) ଲକ୍ଷ୍ମୀଙ୍କର ଜୋଗିଲାବତୀକୁ କନ୍ୟା ପ୍ରଦାନ ।

(ଗ) କାମାନନ୍ଦ ଯୋଗୀର କନ୍ୟାହରଣ ପାଇଁ ବିଫଳ ପ୍ରୟାସ ।

(ଘ) କାମାନନ୍ଦ ଯୋଗୀର ବସୁଧାମଣ୍ଡନ କଟକ ପ୍ରବେଶ ଓ ରୁଦ୍ର ସୁଧାନିଧି ସହ ପ୍ରୀତି ।

(ଙ) ମଧୁମାଳତୀର କନ୍ୟାରୂପ ବର୍ଣ୍ଣନା । ଏହିଠାରେ ରୁଦ୍ର ସୁଧାନିଧି ଗ୍ରନ୍ଥ ଅସମ୍ପୂର୍ଣ୍ଣ ଥିଲେ ହେଁ ଏହାର କଥା ବିଷୟରେ ନିମ୍ନୋକ୍ତ ସୂଚନା ମିଳିଥାଏ ।

## ଷଷ୍ଠ ଅଂଶ

(କ) କନ୍ୟା ବିବାହ ପାଇଁ ସ୍ୱୟମ୍ବର ଆୟୋଜନ ।

(ଖ) କୌଣସି ରାଜପୁତ୍ର ମନୋନୀତ ନ ହେବା, ସ୍ୱୟମ୍ବର ଭଗ୍ନ ।

(ଗ) ଶ୍ୱେତ ସରୋବର କୂଳରେ ରୁଦ୍ର ସୁଧାନିଧିର କନ୍ୟା ସାକ୍ଷାତ

(ଘ) ରୁଦ୍ର ସୁଧାନିଧିକୃତ କନ୍ୟା ରୂପ ବର୍ଣ୍ଣନା ।

(ଙ) ରୁଦ୍ର ସୁଧାନିଧି ଦର୍ଶନରେ କନ୍ୟା ବିମୋହିତ ହେବା ।

Digitized by srujanika@gmail.com

## ସପ୍ତମ ଅଂଶ

(ଚ) ବିବାହ ।

ଭାମହଙ୍କ ଆଖ୍ୟାୟିକା ଲକ୍ଷଣକୁ ଅନୁସରଣ କରି ଏଥିରେ ନିମ୍ନୋକ୍ତ ବିଭାଜନ ଯୋଗ କରାଯାଇପାରେ ।

## ଅଷ୍ଟମ ଅଂଶ

(ଛ) କାମାନନ୍ଦ ଯୋଗୀର କନ୍ୟାହରଣ ପାଇଁ ଚେଷ୍ଟା ।

(ଜ) ମୁକ୍ତି ।

(ଝ) ରୁଦ୍ର ସୁଧାନିଧିର ବିଜୟ ।

ରୁଦ୍ର ସୁଧାନିଧିର ନାମକରଣକୁ ବିଚାରକୁ ନେଇ ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନ ମଧ୍ୟ ଏହି ଗ୍ରନ୍ଥରେ ଆଠୋଟି ଅଂଶ ବା ପରିଚ୍ଛେଦ ଥିବା ଅନୁମାନ କରିଛନ୍ତି । ତାଙ୍କ ମତରେ 'ମହାଦେବଙ୍କ ମସ୍ତକସ୍ଥିତ ଚନ୍ଦ୍ର ଯଦି ଖଣ୍ଡଇନ୍ଦୁ ବା ଅର୍ଦ୍ଧଚନ୍ଦ୍ର ହୁଅନ୍ତି, ତେବେ ଷୋଳ କଳାବିଶିଷ୍ଟ ରୁଦ୍ରଙ୍କ ସୁଧାନିଧିର ଅଧାହେଲେ 'ରୁଦ୍ର ସୁଧାନିଧି'ର ଆଠୋଟି ଅଂଶ ବା ପରିଚ୍ଛେଦ ହେବ ।

(ଡଗର, ୪୨ଶ ବର୍ଷ, ୧ମ—୬ଷ୍ଠ ମିଳିତ ସଂଖ୍ୟା

ଜୁଲାଇ ଡିସେମ୍ବର, ୧୯୭୮, ପୃ. ୬

ଏହି ପ୍ରସଙ୍ଗରେ ସେ ପ୍ରତ୍ୟେକ ଅଂଶରେ ଦୁଇଟି ଲେଖାଏଁ ବର୍ଣ୍ଣ ଥିବା ଅନୁମାନ କରିଛନ୍ତି ।

ରୁଦ୍ରଟଙ୍କ କଥା ଲକ୍ଷଣକୁ ଅନୁସରଣ କରି ରୁଦ୍ର ସୁଧାନିଧି ରଚିତ ହୋଇଥିବା ପରି ଜଣା ପଡୁଥିଲେହେଁ ଏଥିରେ ଭାମହଙ୍କ ଆଖ୍ୟାୟିକା ଲକ୍ଷଣ ମଧ୍ୟରୁ ଅଂଶ ବିଭାଜନ, ବକ୍ତ୍ର ଓ ଅପବକ୍ତ୍ର ଛନ୍ଦ ପରି ମଝିରେ ମଝିରେ ଛନ୍ଦାଶ୍ରିତ ପଦଯୋଜନା, ବକ୍ତା ଓ ଶ୍ରୋତା ସ୍ଥାନରେ ଲେଖକଦ୍ୱାରା କଥାକଥନ ଶୈଳୀ ପ୍ରଭୃତିକୁ ଗ୍ରହଣ କରାଯାଇପାରେ । ରୁଦ୍ରଟଙ୍କ କଥା ଓ ଭାମହଙ୍କ ଆଖ୍ୟାୟିକାର କେତେକ ଲକ୍ଷଣ ମିଶ୍ରିତ ହୋଇ ପ୍ରକାଶ ପାଉଥିବାରୁ ଲେଖକ ଦଣ୍ଡୀଙ୍କ କାବ୍ୟାଦର୍ଶର (୧।୨୩—୨୮) ସୂତ୍ର ପଦ୍ଧତି ମଧ୍ୟ ପରିଚିତ ଥିବା ଅନୁମାନ କରାଯାଇପାରେ । ଏଥିରେ କୁହାଯାଇଛି—

"ଅପାଦଃ ପାଦସନ୍ତାନୋ ଗଦ୍ୟମାଖ୍ୟାୟିକା କଥା
ଇତି ତସ୍ୟ ପ୍ରଭେଦୌ ଦ୍ୱୌ ତୟୋରାଖ୍ୟାୟିକା କିଲ ।
ନାୟକେନୈବ ବାଚ୍ୟାନ୍ୟା ନାୟକେନେତରେଣ ବା
ସ୍ୱଗୁଣାବିଷ୍କ୍ରିୟା ଦୋଷୋ ନାତ୍ର ଭୂତାର୍ଥଶଂସିନଃ ॥
ଅପି ତ୍ୱନିୟମୋ ଦୃଷ୍ଟସ୍ତତ୍ରାପ୍ୟନ୍ୟୈରୁଦୀରଣାତ୍
ଅନ୍ୟୋ ବକ୍ତା ସ୍ୱୟଂ ବେତି କୀଦୃଗ୍ବା ଭେଦଲକ୍ଷଣମ୍

Digitized by srujanika@gmail.com

ବକ୍ତ୍ରଂ ସ୍ୱପରବକ୍ତ୍ରଂ ଚ ସୋଚ୍ଛ୍ୱାସଂ ଚାପି ଭେଦକମ୍
ଚିହ୍ନମାଖ୍ୟାୟିକାୟାଶ୍ଚେତ୍ ପ୍ରସଙ୍ଗେନ କଥାସ୍ୱପି
ଆର୍ଯ୍ୟାଦିବତ୍ ପ୍ରବେଶଃ କିଂ ନ ବକ୍ତ୍ରାପର ବକ୍ତ୍ରୟୋଃ
ଭେଦଶ୍ଚଦୃଷ୍ଟୋ ଲମ୍ଭାଦିରୁଚ୍ଛ୍ୱାସୋ ବାସ୍ତୁ କିଂ ତତଃ
ତତ୍‌କଥାଖ୍ୟାୟିକେତ୍ୟେକ ଜାତିଃ ସଜ୍ଞାଦ୍ୱୟାଙ୍କିତା
ଅତ୍ରୈବାବର୍ଭବିଷ୍ୟନ୍ତି ଶେଷାଶ୍ଚାଖ୍ୟାନଜାତୟଃ ।”

କଥା ଓ ଆଖ୍ୟାୟିକା ବସ୍ତୁତଃ ଏକ ଶ୍ରେଣୀସ୍ଥ ରଚନାର ଦୁଇଟି ନାମ । କାରଣ କାହାଣୀର ବକ୍ତା ନାୟକ ବା ଅନ୍ୟ କେହି ହେଲେ କାହାଣୀର ଅଧ୍ୟାୟର ବିଭାଜନ ରହିଲେ ବା ନ ରହିଲେ ଅଧ୍ୟାୟର ନାମ ଉଚ୍ଛ୍ୱାସ ବା ଲମ୍ଭ ରଖାଗଲେ ଗଦ୍ୟ ମଧ୍ୟରେ ବକ୍ତ୍ର ବା ଅପବକ୍ତ୍ର ଛନ୍ଦପ୍ରୟୋଗ କଲେ ବା ନ କଲେ କଥାର ମୂଳରସରେ କିଛି ପରିବର୍ତ୍ତନ ହୁଏ ନାହିଁ । ଦଣ୍ଡୀଙ୍କ ଉକ୍ତିର ପ୍ରକୃତ ମର୍ମ ପରବର୍ତ୍ତୀ ଯୁଗରେ ବିଭିନ୍ନ ଭାଷାରେ ରଚିତ କଥାଗ୍ରନ୍ଥକୁ ଅନୁଶୀଳନ କଲେ ସ୍ପଷ୍ଟଭାବେ ଜାଣିହୁଏ । ସଂସ୍କୃତର କଥାନଦ୍ୟମ ପ୍ରାକୃତ ଓ ଅପଭ୍ରଂଶ ଭାଷାରେ ପାଳିତ ହୋଇ ନ ଥିଲା । ସଂସ୍କୃତରେ ମଧ୍ୟ କଥା ଓ ଆଖ୍ୟାୟିକାର ପାର୍ଥକ୍ୟ ଅପସାରିତ ହୋଇଗଲା । ଫଳରେ ଲକ୍ଷଣଗ୍ରନ୍ଥ-ସବୁ କଥା ଓ ଆଖ୍ୟାୟିକାକୁ ଏକ ପ୍ରକାର ରଚନାରୂପେ ଗ୍ରହଣ କଲେ । ନାରାୟଣ ଦାସ ରୁଦ୍ର ସୁଧାନିଧିକୁ କଥା ଶ୍ରେଣୀର ଅନ୍ତର୍ଭୁକ୍ତ କରିଥିଲେ ହେଁ, ଲକ୍ଷଣ ଦୃଷ୍ଟିରୁ ଏହା କଥା ଓ ଆଖ୍ୟାୟିକାର ଏକ ସମନ୍ୱୟ ।

## ରୁଦ୍ର ସୁଧାନିଧିର ରଚନାଶୈଳୀ—

କଥା ଓ ବିଷୟବସ୍ତୁ ହେଉଛି ଗଳ୍ପର ବାହ୍ୟରୂପ । ବକ୍ତବ୍ୟ ବସ୍ତୁ ସହ ଏହାର ସମ୍ପର୍କ ଅତି କ୍ଷୀଣ । ସେଥିପାଇଁ ଗଦ୍ୟକାବ୍ୟସବୁରେ ବିଭିନ୍ନ ପ୍ରକାର ଶୈଳୀ ପ୍ରୟୋଗ କରି ସୁଲଳିତ ଗଦ୍ୟରଚନା କରିବା ଥିଲା ଲେଖକର ପ୍ରଧାନ ଉଦ୍ଦେଶ୍ୟ । ସଂସ୍କୃତର ଶ୍ରେଷ୍ଠ କଥାକାର ବାଣଭଟ୍ଟ କାଦମ୍ବରୀରେ କଥାକାବ୍ୟର ଗୁଣ ସମ୍ବନ୍ଧରେ ଯେଉଁ ସୂଚନା ଦେଇଛନ୍ତି ତାହା ହିଁ ଥିଲା ପରବର୍ତ୍ତୀ କଥାକାରମାନଙ୍କର ଆଦର୍ଶ ।

ତାଙ୍କ ମତରେ କଥା ହେଉଛି

“ସ୍ଫୁରତ୍‌କଳାଳାପ—ବିଳାସକୋମଳା କରୋତି ରାଗଂ ହୃଦି କୌତୁକାଧିକମ୍ ।
ରସେନ ଶଯ୍ୟାଂ ସ୍ୱୟମଭ୍ୟୁପାଗତା କଥା ଜନସ୍ୟାଭିନବା ବଧୂରିବ ।

ହରନ୍ତି କଂ ନୋଜ୍ଜ୍ୱଳଦୀପକୋପମୈର୍ନବୈଃ ପଦାର୍ଥୈରୁପପାଦିତା କଥା ।

ନିରନ୍ତରଶ୍ଳେଷଘନାଃ ସୁଜାତୟୋ ମହାସ୍ରଜଶ୍ଚମ୍ପକକୁଡ୍‌ମଳୈରିବ ।” —କାଦମ୍ବରୀ

Digitized by srujanika@gmail.com

ଅର୍ଥାତ୍ ସୁସ୍ପଷ୍ଟ ମଧୁରଭାଷିଣୀ, ଭାବବିହ୍ୱଳା ଅନୁରାଗବଶତଃ ଶଯ୍ୟା ଉପରେ ସ୍ୱୟଂ ଉପସ୍ଥିତା ନବବଧୂ ସଦୃଶ ସୁଗମ, କଳାବିଦ୍ୟା ସମ୍ବନ୍ଧୀ ବାକ୍ୟବିନ୍ୟାସ ହେତୁ ସୁଶ୍ରାବ୍ୟ ଓ ରସକୁ ଅନୁସରଣ କରୁଥିବା ସହଜବୋଧ ଶବ୍ଦାବଳୀରେ ରଚିତ କଥା କାହା ଚିତ୍ତରେ କୌତୁକମୁକ୍ତ ପ୍ରେମ ଉତ୍ପନ୍ନ ନ କରେ ? ସହଜବୋଧ୍ୟ ଦୀପକ ଓ ଉପମା ଅଳଙ୍କାରଯୁକ୍ତ ଅନବରତ ଶ୍ଳେଷାଳଙ୍କାର ପ୍ରୟୋଗଦ୍ୱାରା କିଞ୍ଚିତ୍ ଦୁର୍ବୋଧ୍ୟ କଥାକାବ୍ୟ ଉଜ୍ଜ୍ୱଳ ପ୍ରଦୀପ ପରି ଉପାଦେୟ । ପୁଣି ମଝିରେ ମଝିରେ ମଲ୍ଲୀଫୁଲ ଖଚିତ ଚମ୍ପକ କଳିର ମୋହନମାଳା ପରି ଏହା କାହାକୁ ଆନନ୍ଦ ଦାନ ନ କରେ ? ନାରାୟଣ ଦାସ ମଧ୍ୟ କଥାକୁ ଅମୃତପାନ ଓ କର୍ଣ୍ଣକୁ ଭୂଷଣ ସହ ତୁଳନା କରିଛନ୍ତି । କଥାଶ୍ରବଣ କଲାବେଳେ ଅନ୍ୟସବୁ ବିଷ ସଦୃଶ ପ୍ରତୀୟମାନ ହୁଏ ।

ବାଣଭଟ୍ଟ ରସକୁ କଥା ବା ଆଖ୍ୟାୟିକାର ଆତ୍ମାରୂପେ ଗ୍ରହଣ କରିଥିଲେ ହେଁ ଏହି ରସର ପ୍ରକାଶ ପାଇଁ ରସ ଅନୁକୂଳ କାହାଣୀ, ଅଳଙ୍କାର ଯୋଜନା ଓ ଶବ୍ଦ ପ୍ରୟୋଗ ମଧ୍ୟ କରିବାକୁ ପଡ଼େ । ଏସବୁକୁ କାହାରିକୁ ଉପେକ୍ଷା କରିହୁଏ ନାହିଁ । ଅଥଚ ଏଥିରେ ପଦ୍ୟ ପରି ଛନ୍ଦବନ୍ଧନ ନାହିଁ । ଛନ୍ଦହୀନତା ହିଁ ଗଦ୍ୟର ପ୍ରଧାନ ଲକ୍ଷଣ । ସାହିତ୍ୟ ଦର୍ପଣକାର ବିଶ୍ୱନାଥ ଗଦ୍ୟର ସ୍ୱରୂପ ବର୍ଣ୍ଣନା କରି ଲେଖିଛନ୍ତି— "ବୃତ୍ତବନ୍ଧୋଜ୍‌ଝିତଂ ଗଦ୍ୟଂ" । ଅଗ୍ନି ପୁରାଣରେ ମଧ୍ୟ କୁହାଯାଇଛି—"ଆପାଦ ପଦ ସନ୍ତାନୋ ଗଦ୍ୟଂତଦଭିଧୀୟତେ" । ଏହି ଦୃଷ୍ଟିରୁ ଅଗ୍ନିପୁରାଣ, କାବ୍ୟାଦର୍ଶ, କାବ୍ୟାଳଙ୍କାର, ସୂତ୍ରବୃତ୍ତି, ସାହିତ୍ୟ ଦର୍ପଣ ପ୍ରଭୃତି ପ୍ରାଚୀନ ଅଳଙ୍କାର ଗ୍ରନ୍ଥରେ ଗଦ୍ୟକାବ୍ୟକୁ ଚାରି ଭାଗରେ ବିଭକ୍ତ କରାହୋଇଥାଏ ।

(୧) ମୁକ୍ତକ (ସମାସରହିତ)
(୨) ଉତ୍କଳିକା (ଦୀର୍ଘସମାସଯୁକ୍ତ)
(୩ ଚୂର୍ଣ୍ଣକ (ଅଳ୍ପସମାସଯୁକ୍ତ)
(୪) ବୃତ୍ତିଗନ୍ଧ (ପଦ୍ୟସଦୃଶ)

ଏ ପ୍ରକାର ବିଭାଗୀକରଣ ମୁଖ୍ୟତଃ ରଚନାଶୈଳୀ ଉପରେ ଆଧାରିତ । ଏଥିରୁ "ବୃତ୍ତିଗନ୍ଧ" ଶୈଳୀ ଅନ୍ୟ ତିନି ପ୍ରକାର ବିଭାଗରେ ମଧ୍ୟ ପ୍ରଯୁକ୍ତ ହୋଇ-ପାରେ । ସେ ଦୃଷ୍ଟିରୁ କେବଳ ସମାସର ପ୍ରୟୋଗ ଉପରେ ଗଦ୍ୟର ରଚନାଶୈଳୀ ବିଶେଷଭାବେ ନିର୍ଭର କରିଥିବା ଅନୁମାନ କରାଯାଇପାରେ । ସଂସ୍କୃତ ସାହିତ୍ୟର ପ୍ରାଚୀନ ଗଦ୍ୟ ଲେଖକମାନେ ନିଜ ରଚନାରେ ଏଥିରୁ କେବଳ ଗୋଟିଏ ଶୈଳୀକୁ ବ୍ୟବହାର କରି ନିଜ ଗ୍ରନ୍ଥ ରଚନା କରୁଥିବାବେଳେ ଦେଶୀଭାଷାର ଲେଖକମାନଙ୍କ ପକ୍ଷରେ ଏଥିରୁ କୌଣସି ଗୋଟିକୁ ଅନୁସରଣ କରିବା ସମ୍ଭବ ନ ଥିଲା । ସମାସ-ବହୁଳତା ସଂସ୍କୃତ ଭାଷାର ପ୍ରକୃତି ହୋଇଥିବା ସ୍ଥଳେ ସମାସବିହୀନତା ଦେଶୀଭାଷାର

Digitized by srujanika@gmail.com

ପ୍ରକୃତ । ସେମାନେ ସଂସ୍କୃତର ଅନୁସରଣ କରି କୌଣସି କୌଣସି ସ୍ଥାନରେ ସମାସଯୁକ୍ତ ଶବ୍ଦାବଳୀ ବ୍ୟବହାର କରୁଥିଲେହେଁ ସମସ୍ତ ଗ୍ରନ୍ଥରେ ଏହି ଶୈଳୀ ରଖିବା ସମ୍ଭବ ନ ଥିଲା । ସେ ଦୃଷ୍ଟିରୁ ଦେଶୀ ଭାଷା ରଚିତ ଗଦ୍ୟଗ୍ରନ୍ଥରେ ଅଳ୍ପସମାସଯୁକ୍ତ ବା ସମାସହୀନ ଭାଷାର ପ୍ରୟୋଗ ହିଁ ବିଶେଷ ଭାବେ ଦେଖିବାକୁ ମିଳେ । ରୁଦ୍ର-ସୁଧାନିଧିର ଯେଉଁ ଯେଉଁ ସ୍ଥଳରେ ତତ୍ସମ ପରିବର୍ତ୍ତେ ତଦ୍ଭବ ଶବ୍ଦରାଜିର ବହୁଳତା ପରିଲକ୍ଷିତ ହୁଏ, ସେସବୁ ସ୍ଥଳରେ ଲେଖକ ସମାସିକ ଶବ୍ଦକୁ ପ୍ରାୟ ପରିତ୍ୟାଗ କରିଛନ୍ତି ।

ନାରାୟଣ ଦାସଙ୍କ ରୁଦ୍ର ସୁଧାନିଧିରୁ ସଂସ୍କୃତ ଆଲଂକାରିକମାନଙ୍କଦ୍ୱାରା ନିର୍ଦ୍ଦିଷ୍ଟ ଦୁଇ ପ୍ରକାର ଶୈଳୀର ପରିଚୟ ସମ୍ଭବେ ମିଳିଥାଏ । ମୁକ୍ତକ ଶୈଳୀର ଉଦାହରଣ ପାଇଁ ଲେଖକଙ୍କ ପ୍ରଭାତ ବର୍ଣ୍ଣନାରୁ କିଛି ଅଂଶ ଉଦ୍ଧାର କରାଯାଇ-ପାରେ ।

(୧) 'ଏଥି ଉତ୍ତାରେ ରଜନୀ ପ୍ରଭାତ ହୋଇଲା । ପ୍ରାଚୀ ଦିଗାଙ୍ଗନା ଅନୁରାଗବନ୍ତୀ ହୋଇଲା । ମୁକ୍ତାହାର କାକର ଲଗିଲା । ଦୀପାବଳୀମାନେ ପାଣ୍ଡୁର ଦିଶିଲେ । କୁହର ବିମ୍ବରମାନଙ୍କରେ ଅନ୍ଧକାର ପଶିଲା । ନିଜ ଦୁହିତାକୁ କୁକୁଟିନୀ ଉଠ ଉଠ ବୋଲି ବୋଇଲା । ତାମ୍ବୂଳ ରସ ପିତା ଲଗିଲା ।,

ଏହି ଅଂଶରେ ପ୍ରଯୁକ୍ତ 'ରଜନୀ','ପ୍ରଭାତ', ପ୍ରାଚୀ, ଅନୁରାଗବନ୍ତୀ, ଦୀପାବଳୀ ପାଣ୍ଡୁର, କୁହର, ବିମ୍ବର, ଅନ୍ଧକାର, ଦୁହିତା, କୁକୁଟିନୀ, ତାମ୍ବୂଳ ରସ ପ୍ରଭୃତି ଶବ୍ଦ ତତ୍ସମ ହେଲେ ହେଁ ସମାସହୀନତା ହିଁ ଏହାକୁ ଓଡ଼ିଆ ଭାଷାର ଅନୁକୂଳ କରିପାରିଛି । ମଝିରେ ମଝିରେ ସମାସଯୁକ୍ତ ଶବ୍ଦାବଳୀ ଥିଲେହେଁ ଏହାର ପ୍ରଭାବ ଅନୁଭୂତ ହୁଏ ନାହିଁ । ଆଉ ଗୋଟିଏ ଉଦାହରଣରୁ ଏହା ଆହୁରି ସ୍ପଷ୍ଟ ହୁଏ ।

(୨) "ଆହୋ ରାଜା ଯେଉଁ ଅବଧୂତ ଆସିବ ତାହାଙ୍କୁ ରାଣୀଙ୍କି ଦେଖାଇଲେ ଶାନ୍ତି ପାଇ ସିନା । ଗର୍ଭର ପୁତ୍ରଙ୍କୁ ସେ ବୋଧିଇ ସିନା । ଆମ୍ଭେ ତୋହର ପୁତ୍ର ହୋଇ ଜନ୍ମ ହେଉଅଛୁ ନା । ଏମନ୍ତେ ସେ ଈଶ୍ୱରଙ୍କ ଅର୍ଚ୍ଚନାଠାରେ ମାନସିକ ପୂଜା କରିବାରେ ଏ ଧ୍ୱନି ଶୁଣି ରାଜା ସମାଧି ଛାଡ଼ିଲା । ଅବଧୂତଙ୍କୁ ନିରେଖି ଥାଇ । ଏମନ୍ତରେ ସେ ଏକ ଦିନେକ ନଗରେ ପୁରୁଷେକ ଆସି ପ୍ରବେଶ ହୋଇଲା ।,

ଉତ୍କଳିକା — ଦୀର୍ଘ ସମାସଯୁକ୍ତ—

ଦୀର୍ଘ ସମାସଯୁକ୍ତ ଶବ୍ଦାବଳୀଦ୍ୱାରା ବାକ୍ୟଗଠନ କରିବା ଓଡ଼ିଆ ଭାଷାର ପ୍ରକୃତି ନୁହେଁ । ତେବେ ସ୍ତୋତ୍ର ପ୍ରଭୃତିରେ ଭାଷାର ଅବିଚ୍ଛିନ୍ନ ପ୍ରବାହ ରକ୍ଷା କରିବା ପାଇଁ ଲେଖକ ଦୀର୍ଘ ସମାସଯୁକ୍ତ ଶବ୍ଦାବଳୀର ପ୍ରୟୋଗ କରିଛନ୍ତି । ଶିବଙ୍କ ବନ୍ଦନାରେ ଏହି ଶୈଳୀ ପ୍ରାୟ ପ୍ରଯୁକ୍ତ ହୋଇଛି ।

Digitized by srujanika@gmail.com

ଉଦାହରଣ—

ହିମାଳୟ ନନ୍ଦିନୀ—ହୃଦୟ ଚନ୍ଦନ
ହିମାଳୟ ହଦନ
ହର—ହୃଦୟ—ପଦ୍ମ—ବିଳସିତ ।

ରୂପ ବର୍ଣ୍ଣନାରେ ପ୍ରାୟ ଏହି ପ୍ରକାର ଶୈଳୀ ପ୍ରଯୁକ୍ତ । ରାଣୀ ଶଶୀପ୍ରଭାର ରୂପବର୍ଣ୍ଣନା କରି ଲେଖକ ଲେଖିଛନ୍ତି, 'ଶରଚ୍ଚନ୍ଦ୍ରବଦନୀ ନୀଳୋତ୍ପଳନୟନା, ମତ୍ତଗଜେନ୍ଦ୍ରଗାମିନୀ, ଭୃଙ୍ଗପୀନସ୍ତନୀ, ମଧ୍ୟକ୍ଷୀଣୀ ଇତ୍ୟାଦି ।

ଚୂର୍ଣ୍ଣକ—ଅଳ୍ପ ସମାସଯୁକ୍ତ—

ସ୍ତୋତ୍ର ଓ ରୂପବର୍ଣ୍ଣନାରେ ସମାସିକ ଶବ୍ଦାବଳୀର ପ୍ରବାହ ଥିଲେ ହେଁ ବାକ୍ୟରେ ମଝିରେ ମଝିରେ ସମାସ ମୁକ୍ତ ଶବ୍ଦାବଳୀ ଦେଖିବାକୁ ମିଳେ।

" ତୋହର ବଦନଶଶୀ ଏବେ ପ୍ରକାଶ କର ।
ମୋହର ଅଜ୍ଞାନତମର ନାଶ କର ।
ତୋହର ବଦନକମଳୁ ଉପଦେଶପୀୟୂଷ ଦେଇ କର ।"

ବୃତ୍ତଗନ୍ଧି—(ପଦ ସଦୃଶ)—

ରୁଦ୍ର ସୁଧାନିଧିର ବୈଶିଷ୍ଟ୍ୟ ହେଉଛି ଏପ୍ରକାର ବୃତ୍ତଗନ୍ଧି ଶୈଳୀ ; ଶବ୍ଦରେ ସମାସ ଥାଉ କି ନ ଥାଉ, ପଂକ୍ତି ମଝିରେ ଅର୍ଦ୍ଧଯତି ରଖି ଓ ଶେଷରେ ଯତି ପାତ କରାଇ ଲେଖକ ରୁଦ୍ର ସୁଧାନିଧିର ଭାଷାକୁ ପ୍ରାୟ ପଦ ସଦୃଶ କରିଛନ୍ତି ।

୧—ବାକ୍ୟ ମଝିରେ ଯତିପାତ—ଏଥି ଉତ୍ତାରେ
ଏବଂଭୂତ ସମୟରେ
ବିଧାତା କଳ୍ପନାରେ
ମାହେଶ୍ୱର ଅଂଶେ
ଯୋଗିର ବଂଶେ ।

ଲୀଳାମତେ
ପୁରାଣ ଜନମତେ
ଆପଣାର କୃତ୍ୟେ
କୌତୁକ ମତେ ।
ଅମର ନାଷ୍ଟରେ
ଖେଚର ବ୍ରଷରେ

Digitized by srujanika@gmail.com

କାମରୂପା ସଙ୍ଗେ
କ୍ରୀଡ଼ାରସ ରଙ୍ଗେ
ସୂଚକ ହରଣୀ ବୋଲି ଯୋଗ୍ନି ଏକ ଥାଇ ।

୨ – ବାକ୍ୟ ଶେଷରେ ଯତିପାତ—

"ଜଘନ କଳାଧା ପ୍ରାପ୍ତେକ ଶୋଭା
ମଧ୍ୟଦେଶେ ମୃଦଙ୍ଗ ପ୍ରାପ୍ତେକ ଆଭା
ଅଧର ଜମ୍ବୁକୋଳର ପ୍ରାପ୍ତେକ କଳା
ଭ୍ରୂଲତା କୃଷ୍ଣ ସର୍ପିଣୀ ପ୍ରାପ୍ତେକ ଲୀଳା ।

ପ୍ରସ୍ତୁତରେ ଉର୍ଦ୍ଧ୍ୱୋକ୍ତ ଲକ୍ଷଣସବୁକୁ ଅନୁସରଣ କରି ଲେଖକ ଗ୍ରନ୍ଥର କୌଣସି କୌଣସି ଅଂଶ ରଚନା କରିଥିଲେହେଁ, ଏହା ରୁଦ୍ର ସୁଧାନିଧିର ରଚନାଶୈଳୀର ପ୍ରକୃତ ବୈଶିଷ୍ଟ୍ୟ ନୁହେଁ । ଓଡ଼ିଆ ଭାଷାର ପ୍ରକୃତିକୁ ନିରୀକ୍ଷଣ କରି ଲେଖକଙ୍କୁ ବହୁ ନୂଆ ପଦ୍ଧତି ଆବିଷ୍କାର କରିବାକୁ ହୋଇଥିଲା । ରୁଦ୍ର ସୁଧାନିଧିର ରଚନାଶୈଳୀରେ ଥିବା ବୈଚିତ୍ର୍ୟ ଓ ବିଭିନ୍ନତା ଏହାର ଉଦାହରଣ ।

ନିମ୍ନରେ ଲେଖକଙ୍କର ରଚନାଶୈଳୀକୁ ବିଭିନ୍ନ ଦୃଷ୍ଟିକୋଣରୁ ଅନୁଶୀଳନ ଓ ଆଲୋଚନା କରାଯାଇ ଲେଖକଙ୍କର ପ୍ରତିଭାର ମୂଲ୍ୟାଙ୍କନ କରିବା ପାଇଁ ଚେଷ୍ଟା କରାଯାଇଛି ।

ଯତିପାତର ସୌନ୍ଦର୍ଯ୍ୟ—

ନାରାୟଣ ଦାସଙ୍କ ରଚନାଶୈଳୀକୁ ଅନୁଶୀଳନ କଲେ ପ୍ରଥମେ ପଦ ସଂଗଠନରେ ଥିବା ଛନ୍ଦମାଧୁର୍ଯ୍ୟ ହିଁ ପାଠକର ଦୃଷ୍ଟି ଆକୃଷ୍ଟ କରିଥାଏ । ପଦ୍ୟ ପରି ଏଥିରେ ମଧ୍ୟ ଯତିପାତ ନିୟମ ରକ୍ଷା କରାଯାଇଛି । ସେଥିପାଇଁ ଓଡ଼ିଆ ସାହିତ୍ୟରେ କେହି କେହି ଆଲୋଚକ ଏହାକୁ ପଦ୍ୟ କହିଛନ୍ତି । ଅନ୍ୟ କେତେକଙ୍କ ମତରେ ଏହାର ଭାଷା ହେଉଛି ଗଦ୍ୟ ଓ ପଦ୍ୟର ଅପୂର୍ବ ସମ୍ମିଶ୍ରଣ । ପ୍ରକୃତରେ ଦେଖିଲେ ଏ ଦୁଇଟିଯାକ ଉକ୍ତି ଠିକ୍ ନୁହେଁ । କାରଣ ପଦ୍ୟରେ ଯତିପାତ ଦୁଇପାଦ ଶେଷରେ ହୁଏ ଓ ଏହି ନିୟମ ସମସ୍ତ ଛାନ୍ଦ ବା କାବ୍ୟରେ ଅନୁସୃତ ହୋଇଥାଏ । ଉଦାହରଣ ସ୍ୱରୂପ ନରସିଂହ ସେଣଙ୍କ କାବ୍ୟକୁ ଗଦ୍ୟ ସଦୃଶ ଲେଖାଯାଇଥିବା କେତେକ ପଦର ଉଦ୍ଧାର କରାଯାଇପାରେ ।

(୧) କେତ୍ୟେ ଜୀଭ କାମୋଡ଼ୁଛି
ଲୋଚନ ଆଳସେ ଫେଡ଼ୁଛି ।

Digitized by srujanika@gmail.com

କେ ଧାଇଁ ବାଲୁ ଲୋଟୁଛି ।
ତନୁରେ ତନୁ ଯୋଡୁଛି ।
ଫୁଲ ପରିମଳ ଘେନୁଛି ।
କେଶରେ ନେଇ ଖୋସୁଛି ।
କେ ଛନ୍ଦେ ଗୀତ ଗାଉଛି ।
ନାଚ କରତାଳ ବାଉଛି ।

ଏହି ଉଦାହରଣରେ କ୍ରିୟାପଦ ଗଦ୍ୟ ପରି ଶେଷରେ ଅଛି ଏବଂ ଏହା ଗଦ୍ୟ ପରି ଶୁଣାଯାଉଥିଲେହେଁ ଏହା ଗଦ୍ୟ ନୁହେଁ । ଦୁଇ ପାଦରେ ଏକ ପଦ ହେବାର ନିୟମ ଦୃଢ଼ତାରେ ରହିଛି ।

ରୁଦ୍ର ସୁଧାନିଧିରୁ ଏହିପରି ଏକ ଉଦାହରଣକୁ ତୁଳନା ପାଇଁ ନିଆଯାଇ-ପାରେ ।

ସେ ଖେଦ ଜଳଧିରେ ବୁଡ଼ିଅଛି ।
ତାହାର ଜ୍ଞାନ ଉଦୟ ବୁଦ୍ଧି ବୁଡ଼ିଅଛି ।
ମନ୍ମଥ କୋପେ ପଡ଼ିଅଛି ।
ଚୈତନ୍ୟ ବୃକ୍ଷ ଛିଡ଼ିଅଛି ।
ହୃଦୟରେ ଅପାଙ୍ଗ ବାଣ ଗଡ଼ିଅଛି ।
ମୋହନ ପାଣି ଭିଡ଼ିଅଛି ।
ତା ଇନ୍ଦ୍ରିୟମାନ ସଢ଼ିଅଛି ।
ଭେଦ ଖେଦ ଦ୍ୱନ୍ଦେ ବଢ଼ିଅଛି ।
ତା ପଦ୍ମ ଆସନ ଲେଉଟିଅଛି ।
ତା ସୁନ୍ଦର ମୁଖରୁ ସ୍ୱେଦ ଟୋପି ଟୋପି ହୋଇ ଗଳୁଅଛି ।
ମନ୍ଦପବନେ କୁସୁମ ଯେସନ୍ତେ ତେସନ୍ତେ ପ୍ରାୟକ ହୋଇ
ଅଧର ଥୁରୁଥୁରୁ ହୋଇ କମ୍ପୁଅଛି ।
କ୍ଷଣେ ଅଙ୍ଗଭଙ୍ଗ ହୋଇଅଛି ।

ଏହି ଉଦ୍ଧୃତାଂଶରେ ଦୁଇ ପାଦରେ ଏକ ପଦ ହେବା ନିୟମ ରକ୍ଷିତ ହୋଇଥିବା ପରି ଜଣାଯାଏ । ପ୍ରତ୍ୟେକ ପାଦ ଶେଷରେ ଗଡ଼ିଅଛି, ଭିଡ଼ିଅଛି, ଛିଡ଼ିଅଛି, ବଢ଼ିଅଛି ପ୍ରଭୃତି କ୍ରିୟାପଦ ମଧ୍ୟ ଅଛି । ତେବେବି ଏଥିରେ କେତେକ ପାର୍ଥକ୍ୟ ପରିଦୃଷ୍ଟ ହୁଏ । ପଂକ୍ତିର ବର୍ଣ୍ଣସଂଯୋଜନାରେ ସମାନ ସଂଖ୍ୟକ ବର୍ଣ୍ଣ ନାହିଁ ଓ ଯତିପାତର ନିୟମ ସମସ୍ତ ଅଂଶରେ ପରିବ୍ୟାପ୍ତ ମଧ୍ୟ ନୁହେଁ । ଏହି ଅଂଶ ପୂର୍ବରୁ 'ଗୋଟା' ଓ 'ଫୁଟା'ର ଯତିପାତ ଥିଲା ଓ ପରେ 'ଚମକିଲା ଚମକିଲା' ଓ

Digitized by srujanika@gmail.com

ଢାଙ୍କିଲା ଢାଙ୍କିଲା'ର ଯତିପାତ ଅଛି । ଗୋପକାବ୍ୟରୁ ଉଦ୍ଧୃତ ଛନ୍ଦରେ ଏକ ପ୍ରକାର ଯତିପାତ ଥିଲେହେଁ ଓଡ଼ିଆ ସାହିତ୍ୟର ଅନ୍ୟ କାବ୍ୟ ଏପରିକି ଗୋପକାବ୍ୟର ଅନ୍ୟ ବୋଲର ପଦସବୁରେ ଯତିପାତ ପାଇଁ ବିଭିନ୍ନ ବର୍ଣ୍ଣ ଆଏ । ତେଣୁ ଯତିପାତରୁ ପଦ୍ୟ ଓ ଗଦ୍ୟ ପାର୍ଥକ୍ୟ ନିରୂପଣ କରିବା ଠିକ୍ ନୁହେଁ । ଲେଖକଙ୍କ ରଚନାଶୈଳୀର ବୈଶିଷ୍ଟ୍ୟ ଦେଖିବାକୁ ଗଲେ ଯତିପାତରୁ ନ ଦେଖି ବାକ୍ୟଗଠନଶୈଳୀରୁ ଦେଖିବା ଉଚିତ । ଏହି ଦୃଷ୍ଟିରେ ଦେଖିଲେ ପଦ୍ୟରେ ପ୍ରଯୁକ୍ତ ପଡ଼ିଛି, ଭିଡ଼ିଛି, ବୁଡ଼ିଛି ସ୍ଥାନରେ ପଡ଼ିଅଛି, ଭିଡ଼ିଅଛି ଓ ବୁଡ଼ିଅଛି ପ୍ରଭୃତି ଗଦ୍ୟାତ୍ମକ କ୍ରିୟାର ପ୍ରୟୋଗ ପୁଣି "ସେ ଜଳଧିରେ ବୁଡ଼ିଛି" ଯେତେ ପଦ୍ୟାତ୍ମକ "ସେ ଖେଦ ଜଳଧିରେ ବୁଡ଼ିଅଛି" ସେତେ ପଦ୍ୟାତ୍ମକ ନୁହେଁ । ସେହିପରି ହୃଦୟରେ ସ୍ଥାନରେ ହୃଦୟେ, 'ତା ଇନ୍ଦ୍ରିୟମାନ ସଢ଼ିଅଛି' ସ୍ଥାନରେ 'ଇନ୍ଦ୍ରିୟମାନ ସଢ଼ିଛି' ପ୍ରୟୋଗ କଲେ ପଦ୍ୟାତ୍ମକତା ବୃଦ୍ଧି ପାଏ । ଏହା ବ୍ୟତୀତ 'ଭୂଷଣ ଯେତେକ ତେତେକ ପ୍ରାପ୍ତକ ହୋଇ', 'ଅଧର ଥରୁଥରୁ ହୋଇ' ପ୍ରଭୃତି ପ୍ରୟୋଗ ବାକ୍ୟଗଠନଶୈଳୀକୁ ଏପରି ପରିବର୍ତ୍ତିତ କରିଛି ଯେ ଯତିପାତ ଥିବା ସତ୍ତ୍ୱେ ଏହା ପଦ୍ୟ ନୁହେଁ, ଗଦ୍ୟ । ଶେଷରେ ଯତିପାତ ଥିବା 'ନାହିଁ' ଓ 'ମୁଁ' ପ୍ରଯୁକ୍ତ ବାକ୍ୟାବଳୀକୁ ପାଠକଲେ ଏହି ଯୁକ୍ତି ଆହୁରି ସ୍ପଷ୍ଟ ହୁଏ ।

ନାହିଁକୁ ଶେଷରେ ରଖି

ଭୁବନେଶ୍ୱରୀ ବୋଇଲେ ସ୍ୱର୍ଗ ହିଁ ନାହିଁ ।
କ୍ରିୟା ହିଁ ନାହିଁ ।
ମନବୁଦ୍ଧି ନାହିଁ ।
ମୁହିଁ ମୋହର ନାହିଁ ।
ଅହଙ୍କାର ନାହିଁ ।
ଜ୍ଞାନାଜ୍ଞାନ ନାହିଁ ।
ଜାଗ୍ରତ ସ୍ୱପ୍ନ ନାହିଁ ।

(୨) ମୁଁକୁ ଶେଷରେ ରଖି

ପୃଥ୍ୱୀ ଅବା ମୁଁ ।
ଗଗନ ଅବା ମୁଁ ।
ଇନ୍ଦ୍ରମାନେ ଅବା ମୁଁ ।
ବୁଦ୍ଧି ଅବା ମୁଁ ।
ଚୈତନ୍ୟ ଅବା ମୁଁ ।
ଏମାନ ଜାଣିଅଛି ଯେ ଅବା ମୁଁ । (ପୃଷ୍ଠା ୬୩)

Digitized by srujanika@gmail.com

ମାସ୍ତା (ପୃ ୭୪), ମୁଖ (ପୃ ୧୦୮), ଧ୍ୟାନ (ପୃ ୯୮), ଆସନ (ପୃ ୯୧), ମଣି (ପୃ ୮୭), ହୋ (ପୃ ୭୧), କଳିକିଳ (ପୃ ୭୮), ମୁଦ୍ରା (ପୃ ୯୨), ଓ ରେ (ପୃ ୧୨୯-୧୩୦) ପ୍ରଭୃତି ଶବ୍ଦକୁ ବାକ୍ୟ ଶେଷରେ ରଖି ଯମକପାତର ସୌନ୍ଦର୍ଯ୍ୟ ମଧ୍ୟ ସୃଷ୍ଟି କରାଯାଇଛି । ଶବ୍ଦଯୋଜନାରେ ଯମକପାତ ସୌନ୍ଦର୍ଯ୍ୟ ବହୁସ୍ଥଳରେ ଗ୍ରନ୍ଥକୁ ଉପଭୋଗ୍ୟ, ହୃଦ୍ୟ, ମୁଗ୍ଧକର କରାଇଥିଲେହେଁ ପଦ୍ୟଧର୍ମୀ ହେବା ଅପେକ୍ଷା ଏହା ବିଶେଷ ଭାବେ ଗଦ୍ୟ-ଶୈଳୀକୁ ଅନୁସରଣ କରିଛି ।

ବାକ୍ୟ ଶେଷରେ ଯମକପାତ ରଖିବା ପରି ବାକ୍ୟ ମଝିରେ ଯମକପାତ ରଖିବା ଲେଖକଙ୍କର ଅନ୍ୟ ଗୋଟିଏ ବୈଶିଷ୍ଟ୍ୟ । ଏହାର ଗୋଟିଏ ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା ।

"ବ୍ରହ୍ମାଣ୍ଡ ଖଣ୍ଡେ
ଭୂଖାଦ୍ୟ ଖଣ୍ଡେ
ଭୂବଖଣ୍ଡ ଖଣ୍ଡେ
କନକାଚଳ ଦଣ୍ଡେ
ବ୍ରହ୍ମଶୁକ୍ଳ ଶୂଳଦଣ୍ଡେ
ହଇଲୋକ ବର୍ଗେ
କପିଳାସ ସ୍ୱର୍ଗେ
ମନୋରମ ମନ୍ଦିରେ
ଜଟାଗ୍ରମ କନ୍ଦରେ
ସିଦ୍ଧବୁଦ୍ଧଗଣମାନଙ୍କର ସଙ୍ଗେ
ଜ୍ଞାନ ଉନ୍ମତ୍ତ ରଙ୍ଗେ
ମାନସ ସରୋବର କୂଳେ
ଚନ୍ଦ୍ର ଉଜ୍ଜ୍ୱଳ ଶଇଳେ
ସୁର୍ଯ୍ୟ ଅସ୍ତମତେ
ହୀଡାରସ ମତେ

ଯେ କାମାଙ୍ଗନାଶନ ବିହରୁ ଅଛନ୍ତି, ଶଇଳେନ୍ଦ୍ରପୁତ୍ରୀ ସହିତେ" ।

ବାକ୍ୟ ମଝିରେ ଏ ପ୍ରକାର ଯମକପାତ ଥିଲେ ବି ଏହା ଯେ ପଦ୍ୟ ନୁହେଁ, ଏହାକୁ ବୁଝାଇବା ଦରକାର ପଡ଼େ ନାହିଁ । ମଝିରେ ଯମକପାତ ଥିବା କାଳୀବୁଦ୍ଧିକୁ ପଢେ ଦେଖିଲେ ଏହାର ପାର୍ଥକ୍ୟ ଆହୁରି ସ୍ପଷ୍ଟ ହୋଇଥାଏ । ନରସିଂହ ସେଣଙ୍କ ଗୋପ କାବ୍ୟରୁ ନିମ୍ନରେ କିଛି ଅଂଶ ଉଦ୍ଧାର କରାଗଲା ।

Digitized by srujanika@gmail.com

କରେ କଙ୍କଣ ଶୁଭେ ଝୁଣୁଝୁଣୁ ଭୁଜଯୁଗଳ ଚଳୁଛି
ହେମ ମୃଣାଳ କମଳଦଳ ବେନି ଶୋଭା ଘେନି ମିଶୁଛି
କୁଚଯୁଗଳ ପଦ୍ମମୁକୁଳ ଖେଡ଼ରସେ ଦୋହଲୁଛି
ଅମର ଖେଳା କୁମ୍ଭୀରେଳା ଲହରୀ ଲହରୀ ଖେଳୁଛି ।

ମଝିରେ ମଝିରେ ଯତିପାତ ରହିଲେ ଗଦ୍ୟ ପଦ୍ୟ ହୁଏ ନାହିଁ । ବାକ୍ୟ-ଗଠନ ଶୈଳୀରୁ ହିଁ ଗଦ୍ୟ ଓ ପଦ୍ୟର ପାର୍ଥକ୍ୟ ସୃଷ୍ଟି ହୁଏ । ନାରାୟଣ ଦାସ ଏ ପ୍ରକାର ଶୈଳୀକୁ ଗ୍ରନ୍ଥର ବହୁ ସ୍ଥାନରେ ବ୍ୟବହାର ନ କରି ଦେଶ, ସ୍ଥାନ, ବ୍ୟକ୍ତିବିଶେଷ ଓ ଅଧର ପ୍ରଭୃତି ଅଙ୍ଗପ୍ରତ୍ୟଙ୍ଗର ବର୍ଣ୍ଣନା କଲାବେଳେ ପ୍ରୟୋଗ କରିଛନ୍ତି । ପଦ୍ମାକରଙ୍କ ଦେଶ ବସୁଧାମଣ୍ଡନ, ଧର୍ମଧ୍ୱଜ ରାଜାଙ୍କ ଦେଶ ପୃଥ୍ୱୀତିଳକ, ଅବଧୂତ, ସୂତିକ ହାରିଣୀ, ଶଶୀରେଖା ରାଣୀ, ଅନଙ୍ଗ ପଦ୍ମାକର, ଧର୍ମଧ୍ୱଜଙ୍କ ରୂପ ଓ କାମାନନ୍ଦ ଯୋଗୀର ସାଧନା-ପୀଠର ବର୍ଣ୍ଣନାରେ ମଧ୍ୟ ଏ ପ୍ରକାର ଶୈଳୀ ଦେଖିହୁଏ । ତଦନ୍ତରେ/ ମୃତ ପିଣ୍ଡ ଉପରେ/ ପୂର୍ବାଭିମୁଖ ହୋଇ ନଦୀକୂଳେ/ ବଟବୃକ୍ଷର ମୂଳେ/ ମହାନିଶା କାଳେ/ ମଣିଷର ମୁଣ୍ଡମଣିମାଳା ଧରି/ କାଳୀମଣ୍ଡଳ ପୂଜାକରି/ ବାମଚକ୍ର ଆଚରି/ ମହାଭୈରବୀ ଚଣ୍ଡୀକି ଅଷ୍ଟ ମନ୍ତ୍ରବଳେ ବଶକରି । ଏ ପ୍ରକାର ଯତିପାତ ଅନ୍ୟ ସ୍ଥଳରେ ଅସମାପିକା କ୍ରିୟାଯୋଗରେ ଦେଖିବାକୁ ମିଳେ । ସେଠାରେ ବାକ୍ୟଗଠନ ରୀତି ସମ୍ପୂର୍ଣ୍ଣ ଭିନ୍ନ । ଏସବୁରୁ ଏତିକି ଅନୁମାନ କରାଯାଇପାରେ ଯେ ଲେଖକ ବାକ୍ୟ ମଝିରେ ଶେଷରେ ଓ ଆରମ୍ଭରେ ଯତିପାତ ଏବଂ ଅନୁପ୍ରାସର ପ୍ରୟୋଗ କରି ତାଙ୍କ ବାକ୍ୟ-ସବୁକୁ ସରସ କରିବାକୁ ବାରମ୍ବାର ଚେଷ୍ଟା କରିଛନ୍ତି । ଏଥିରେ ଥିବା ଛନ୍ଦ ଗଦ୍ୟର, ପଦ୍ୟର ନୁହେଁ । ଶବ୍ଦସବୁକୁ ସଜେଇକରି ରଖିବାବେଳେ ମଧ୍ୟ ଯତିପାତର ସୌନ୍ଦର୍ଯ୍ୟ ଦେଖିହୁଏ ।

ବର୍ତ୍ତୁଳ, ବିରଳ, ସରଳ, ତରଳ
ସ୍ନିଗ୍ଧ, ବିଦଗ୍ଧ,
ମନ୍ଥର, ମନୋହର,
ଅଳସ, ଅବଶ ।

ପ୍ରେମସମ୍ବଳିତ ସମ୍ବାଦର ବର୍ଣ୍ଣନା ଓ ବିଭିନ୍ନ ଦେଶର ଗଣନା କଲାବେଳେ ଏହି ଶୈଳୀ ଗୃହୀତ ।

କେତେକ ପଂକ୍ତିରେ ଆଦ୍ୟ ଓ ପ୍ରାନ୍ତ ଉଭୟ ସ୍ଥଳରେ ଯତିପାତ ରଖି ବାକ୍ୟର ସୌନ୍ଦର୍ଯ୍ୟ ବୃଦ୍ଧି କରିବା ପାଇଁ ଲେଖକ ଚେଷ୍ଟା କରିଛନ୍ତି ।

Digitized by srujanika@gmail.com

ସର୍ବଶ୍ରୋତା
ସର୍ବଜ୍ଞାତା
ସର୍ବହନ୍ତା
ସର୍ବସହିତା
ସମସ୍ତ ହିଁ ସେ । (ପୃ ୬୧)

ଅନ୍ୟ କେତେକ ସଂଜ୍ଞାରେ କେବଳ ଆଦ୍ୟକ୍ଷରରେ ଯଢପାତ ରକ୍ଷିତ ହୋଇଛି ।

କଉଣସିକୁ ଆଦ୍ୟରେ ରଖି

ହାଦେ କଉଣସି ମାସ୍ତାରେ ଇନ୍ଦ୍ରପଦ ପାଇ ।
ବ୍ରହ୍ମାପଦ ପାଇ ।
କଉଣସି ମାସ୍ତାରେ ସକଳ ଜଗତ ଦେଖୁଥାଇ ।
କଉଣସି ମାସ୍ତାରେ ସହସ୍ର ସହସ୍ର ସ୍ତ୍ରୀମାନେ ବେଢ଼ିଥାନ୍ତି ।
କଉଣସି ମାସ୍ତାରେ ଶୂନ୍ୟରେ ଯାଇଥାଇ ।
କଉଣସି ମାସ୍ତାରେ ଦିବ୍ୟ ବିମାନମାନଙ୍କରେ ଉଡ଼ୁଥାଇ ।

କଉଣସି ମାସ୍ତାରେ ଇନ୍ଦ୍ର ପ୍ରାୟେ ହୋଇ ଐଶ୍ୱର୍ଯ୍ୟମାନନ୍ତ ଭୋଗ କରୁଥାଇ । କଉଣସି ମାସ୍ତାରେ ସହସ୍ରେ ଜଣ ବାରଣ ।

କଉଣସି ମାସ୍ତାରେ ଦେବତାମାନଙ୍କୁ ଜଣାଇ କଥା କହୁଥାଇ (ପୃ୬୫) କେହୁପଣ ସେ (୧୭୫), କେ (୧୧୫), ଏମନ୍ତେ (୧୦୪), କୋଟି କୋଟି (୧୯) ଔଷଧ (୩୭), ଶ୍ୱେତ (୧୦), ଶ୍ରୀ (୩୨), ସଉତା (୩୩), ଷଟ (୩୨), ଶୃଙ୍ଗ (୩୨) ରଜନୀ (୩୧), ଯଜ୍ଞ (୩୦) ପ୍ରଭୃତି ଶବ୍ଦକୁ ଆଦ୍ୟରେ ରଖି ଯଢପାତର ସୌନ୍ଦର୍ଯ୍ୟ ସୃଷ୍ଟି କରାଯାଇଛି । ତେଣୁ ବୃତ୍ତ ସୂଧାନଧିରେ ଥିବା ଯଢପାତ ପଦ୍ୟର ଯଢପାତ ନୁହେଁ । କୌଣସି ଶବ୍ଦକୁ ବାରମ୍ବାର ପ୍ରୟୋଗ କଲେ ଧ୍ୱନି ସୌନ୍ଦର୍ଯ୍ୟ ସାଙ୍ଗକୁ ସ୍ୱବଗତ ନବତ୍ତତା ସୃଷ୍ଟି ହୁଏ । ପାଠକକୁ ବର୍ଣ୍ଣ୍ୟବସ୍ତୁ ପ୍ରତି ଆକୃଷ୍ଟ କରିବା ପାଇଁ ଏହା ଏକ ଉପାୟ ।

ବାକ୍ୟରେ ଯଢପାତ ରକ୍ଷିବା ପ୍ରାଚୀନ ଗଦ୍ୟଶୈଳୀର ଏକ ବୈଶିଷ୍ଟ୍ୟ ପଦ୍ଧତି ଥିଲା । ବଦ୍ୟାପତ 'କାଣ୍ଡିଲତା'ରେ ଯେଉଁ ଅଂଶକୁ ଗଦ୍ୟ କହୁଛନ୍ତି, ସେଥିରୁ ଗୋଟିଏ ଉଦାହରଣ ଗ୍ରହଣ କଲେ ଏହା ସ୍ପଷ୍ଟ ହୋଇଥାଏ ।

Digitized by srujanika@gmail.com

ଆବରୁ ପୁନୁ । ତାହୁ ନଗରହ୍ନି କଣ୍ଟେ ପଣଠବ ଠବେକ୍ଲେ ॥ ୧୫ ॥
ଶତ ସଂଖ୍ୟ ହାଟବାଟ କ୍ରମନ୍ତେ, ଶାଖା ନଗର ଶୃଙ୍ଗାଟକ ଆକୀର୍ଣ୍ଣନ୍ତେ ॥୧୬॥
ଗୋପୁର, ବକଦନ୍ତୀ, ବଳଭୀ, ମଠୀ, ଅଟାଳୀ, ଓବରୀ, ରହଟ, ଘାଟ ॥୧୭॥
(୨ୟ ପଲ୍ଲବ ପଦ ୧୫-୧୬-୧୭)

ଅନ୍ୟ ଗୋଟିଏ ଉଦାହରଣ ମଧ୍ୟ ୨ୟ ପଲ୍ଲବରୁ ଦେଖାଯାଇପାରେ—
ତାନ୍ହ ବୈଶ୍ୟାହ୍ନି କରେ ସୁଖସାର ମଣ୍ଡନ୍ତେ, ଅଳକା ତିଳକା ପତ୍ରାବଳୀ
ଖଣ୍ଡନ୍ତେ ॥ ୧୩୬ ॥

ଦର୍ଵ୍ୟାମ୍ବର ପିନ୍ଧନ୍ତେ, ଉଭାର ଉଭାର କେଶପାଶ ବନ୍ଧନ୍ତେ ॥ ୧୩୭ ॥
ସଖିଜନ ପ୍ରେରନ୍ତେ, ହଁସି ହେରନ୍ତେ ॥ ୧୩୮ ॥
ମଅଣାଲନୁମୀ ପାତଶ୍ରୀ ପତୋହରୀ, ତରୁଣୀବହ୍ନି ବଅକ୍ଷଣୀ ॥ ୧୩୯ ॥
(ବାସୁଦେବ ଶରଣ ଅଗ୍ରୱାଲ, ସମ୍ପାଦିତ କୀର୍ତ୍ତିଲତା)

ଯତିପାତ ରଖି ବାକ୍ୟବିନ୍ୟାସ କରିବାର ପଦ୍ଧତି କେବଳ ଯେ ସାହିତ୍ୟିକ ଗ୍ରନ୍ଥରେ ଦେଖାଯାଉଥିଲା ତାହା ନୁହେଁ, ସଂସ୍କୃତ ଶ୍ଳୋକର ବ୍ୟାଖ୍ୟା କଲାବେଳେ, ଆତ୍ମତତ୍ତ୍ୱ ବୁଝାଇବା ବେଳେ ଏପରି କି ଜାକତରତ ପରି ବ୍ୟାବହାରିକ ଗ୍ରନ୍ଥରେ ଏ ପ୍ରକାର ଶୈଳୀ ବ୍ୟବହୃତ ହୋଇଥିଲା । ଗୀତାସାର ଗ୍ରନ୍ଥର ନିମ୍ନ ଅଂଶରେ ପ୍ରଯୁକ୍ତ ହୋଇଥିବା କ୍ରିୟାପଦରେ ଯତିପାତ ଦେଖାଯାଇପାରେ ।

" ହେ ଅର୍ଜୁନ, କ୍ଷୁରତ ଯେ ଦଧିପଙ୍କ ହେଲା
'ମ'କାର ଯେ ତହୁଁ କ୍ଷୁଆ ହୋଇଲା ।
ତାହା ବେଢ଼ ମନ୍ଥନ ଯେ ମନ୍ଥିଲ୍ ।
ସାରଗୀତା ଏହା ତହୁଁ ଉଦ୍ଧରିଲ୍ ।
ସେ ନବଣୀ ହୋଇଲା
ସେ ନବଣୀ ଘୃତ କରିବାକୁ ତୋହର ମନ ତର୍ହିକ ନୁଆଁଣ୍ଡି ହୋଇଲ୍ । 'କ୍ଷୁମାବବୋଧ' ପରି ଆତ୍ମଜ୍ଞାନ ବା ବ୍ରହ୍ମଜ୍ଞାନ ବୁଝାଉଥିବା ଗ୍ରନ୍ଥରେ 'ଏ'କୁ ଶେଷରେ ରଖି ଯତିପାତ ସୃଷ୍ଟି କରାଯାଇଛି ।
"ଶୁଣ ପୁତ ପରମ ଗୁପତ କଥାଏ ।
ଚଉଦ ଭୁବନ ଏ କର୍ମଯୋଗ କଥାଏ ।"
ଅନ୍ୟ ସ୍ଥଳରେ ଅନ୍ୟଭାବରେ ଛନ୍ଦସୃଷ୍ଟି ପାଇଁ ଚେଷ୍ଟା କରାଯାଇଛି ।
ପ୍ରୟାଗ ଯାଗରେ କୋଟୀ ବାରଣସୀ
ଅନେକ ବାର କରିବାକ କାଶୀ
ଅନେକବାର କରିଦା କୁରୁକ୍ଷେତ୍ରବାସୀ"

Digitized by srujanika@gmail.com

"ଭାବତରଙ୍ଗ" ସାହିତ୍ୟିକ ରଚନା ନୁହେଁ । ଗାଁଗହଳରେ ବାସ କରୁଥିବା ସାଧାରଣ ଲୋକଙ୍କ ପାଇଁ ଏହା ରଚିତ । ଛନ୍ଦସୃଷ୍ଟି କରିବା ପାଇଁ ଲେଖକଙ୍କର କୌଣସି ଉଦ୍ଦେଶ୍ୟ ନ ଥିଲେ ମଧ୍ୟ ବାକ୍ୟ ଶେଷରେ 'ଦେବ' କ୍ରିୟାର ବାରମ୍ବାର ପ୍ରୟୋଗ କରିବା ଫଳରେ ଛନ୍ଦସୃଷ୍ଟି ପାଇଁ ଲେଖକଙ୍କର ସ୍ୱାଭାବିକ ଅଭିରୁଚି ଥିବା ଅନୁମାନ କରାଯାଇପାରେ ।

"ଚଳ ହବନ ଉଆଣ୍ଟଉଳ ହର ବୁଧରେ ଆନଥାନ କରି ଦେବ ।
କ କ ବୋଲି ଦେବ ।
ରାଜା ମୁଣ୍ଡକୁ ଯାଉଥିବେ, ଚନ୍ଦ ଠାବ କରି ପିଣ୍ଡ ଦେବ ।
ପ୍ରଥମେ ଗଜ ବୋଲି ଦେବ ।
ଦୁତୀୟେ ଅଶ୍ୱବଳ ବୋଲି ଦେବ ।
ତୃତୀୟେ ଅଜଗଳ ବୋଲି ଦେବ ।
ଗଜପିଣ୍ଡ ଯେବେ ଆଗେ ତୋଳିବ, ଜାଣିମ ମୁଣ୍ଡରେ ଜିଣିବ ।
ପବନ ପିଣ୍ଡ ଯେବେ ଆଗେ ତୋଳିବ, କାର୍ଯ୍ୟସିଦ୍ଧି ହୋଇବ ।
ଅଜଗଳ ପିଣ୍ଡ ଯେବେ ଆଗେ ତୋଳିବ, ମୁଣ୍ଡରେ ଅପ୍ରାଜୟେ ପାଇ ।"

ମାଦଳାପାଞ୍ଜିର ଭାଷା ମଧ୍ୟ ସାଧାରଣ ପାଞ୍ଜିକାରର ଭାଷା । ଏଥିରେ ମଧ୍ୟ ଛନ୍ଦସୃଷ୍ଟି କରିବାର ପ୍ରୟାସ ବହୁ ସ୍ଥଳରେ ଦେଖିବାକୁ ମିଳିଥାଏ ।

୧—ଓଡ଼ିଆ ରାଜାର ପ୍ରଭୁ । ଯେ ଶ୍ରୀ ଜଗନ୍ନାଥ ମହାପ୍ରଭୁ ।
୨—ମୁଗଲ ଗୋଳ ହୋଇଲାକୁ
ଘୋମୋଦ୍ର ମାଡ଼ି ଅଇଲାକୁ
୩—ଲୁଗା ଗୁଡ଼ାଇ ମୁଣ୍ଡରେ ପୁରାଇ
୪—ଘୋଡ଼ା ଚଢ଼ାଇ ଯାବେଲ ଉଆଁଇ
୫—ଯାବେଲ ଗଲା ଭଲି
ପୁଅଆକୁ ରଖିଲେ ବନମାଳୀ

ସାଧାରଣତଃ ଏକପ୍ରକାର ଯତିପାତ ଦେଇ ପାଞ୍ଚ ସାତ ଧାଡ଼ି ଲେଖିବା ପରେ ଅନ୍ୟ ପ୍ରକାର ଯତିପାତ ସୃଷ୍ଟି କରିବା ନାରାୟଣ ଦାସଙ୍କ ରଚନାଶୈଳୀର ମୂଳ ପ୍ରବୃତ୍ତି ହେଲେହେଁ ବିନା ଯତିପାତରେ ବହୁ ବାକ୍ୟର ସଂଯୋଜନା କରାଯାଇ ଏକ ନୂତନ ପ୍ରକାର ଶୈଳୀର ସୂତ୍ରପାତ ହୋଇଛି । ନିମ୍ନାଙ୍କିତ ପଙ୍କ୍ତି ସବୁକୁ ଏହାର ଉଦାହରଣ ରୂପେ ଗ୍ରହଣ କରାଯାଇପାରେ ।

'ଏହା ଶୁଣି ସେ ଅବଧୂତ ବୋଇଲା ହାଦେ ମୁଁ ସାତ ସହସ୍ର ବର୍ଷ ଯୋଗୀ ।

Digitized by srujanika@gmail.com

ରୁ ପେଟର ପୁଅ ।
ମୁଁ ତୋତେ ସୁରୁକଣ ତୋହର ପାଦପଦ୍ମକୁ ବନ୍ଦୁଅଛୁ ।
ମୋତେ ଅନୁଗ୍ରହ କର ।
ଜେମନ୍ତେ ଆମ୍ଭାଙ୍କୁ ଲଭିବ ତାହା କହ ।
ଏହା ଶୁଣି ସେ ଗଭସୁରୁପ ବୋଇଲା
ଯେମନ୍ତେ ଓଠଂ ଏକାବେଳକେ ଘଣ୍ଟକୁ ପଢ଼ାଇ ନ ପାରଇ ।
ସେହିମତ ଏକାବେଳକେ ବୋଧେ ଉଦେ କରାଇ ନୋହଇ ।' (୭୧)

ସଂସ୍କୃତ କଥା କାବ୍ୟରେ ବକ୍ତ୍ର ଓ ଅପବକ୍ତ୍ର ଛନ୍ଦର ପ୍ରୟୋଗ ପରି ବୃନ୍ଦ ସୁଧାନନ୍ଦଙ୍କର ଗଦ୍ୟଯୋଜନା ମଧ୍ୟରେ ଏକ ପ୍ରକାର ପଦ୍ୟର ବ୍ୟବହାର ବାରମ୍ବାର କରାଯାଇଛି । ନୀଳନଭର ଆବରଣ ଉପରେ ଝଟତ ତାରକା ପରି ଏସବୁର ଶୋଭା ପ୍ରାପ୍ତ ପ୍ରତ୍ୟେକ ସ୍ଥଳରେ ଏ ପ୍ରକାର ପ୍ରୟୋଗ ଦେଖିବାକୁ ମିଳୁଥିଲେ ହେଁ ନିମ୍ନରେ ମାତ୍ର କେତୋଟି ଉଦାହରଣ ପ୍ରଦତ୍ତ ହେଲା । ଏସବୁକୁ ପାଠ କଲାବେଳେ ପାଠକ ଅଟକିଯାଏ । ଅନ୍ୟ ଛନ୍ଦର ସ୍ପର୍ଶ ପାଏ ।

(୧) ଏବଂଭୂତ ପ୍ରକାରେ ବାହାରେ ଭିତରେ ଗୋଲ ବାଜିଲା ଯହୁଁ / ସ୍ୱକାଚକ୍ରୀ ପାଇ ବାସୁଦେବଙ୍କୁ ସୁମରଣା କଲା ତହୁଁ । (ପୃ ୧୧୩)

(୨) ଏମନ୍ତେ ସେ ଭଜନା ସୁମରିଲାକ ଯହୁଁ / ସେ କେହ୍ନୁଣସି ତେଜ ଭଣିକାମାଝ ଉଦେ ହୋଇଲାକ ତହୁଁ । (ପୃ ୧୧୩)

ଏ ପ୍ରକାର ପ୍ରୟୋଗ ପ୍ରାୟ ଯହୁଁ ଓ ତହୁଁର ଯତିପାତ କରି ସୃଷ୍ଟି ହୋଇଥିଲେ ହେଁ ଅନ୍ୟ ସ୍ଥଳରେ ମଧ୍ୟ ଏହି ରୂପ ଦେଖିବାକୁ ମିଳେ ।

ଅମୋକ୍ଷ ପ୍ରେତ ମାନେ ପ୍ରେତ ଦେହ ଛାଡ଼ି / ଚଟରେ ପୋଡ଼ନ୍ତେ ବସିଲେ ସ୍ୱର୍ଗପୁର ମାଡ଼ି । ଏମନ୍ତେ ସେସବୁ ବରଗଣିଆମାନେ ଯାଇ / ଯୋଗୀ କଥରେ ପଡ଼ିଲେ କସ୍ତୁଡ଼ି ହୋଇ ।

ଶୃଙ୍ଖଳା ଅଳଙ୍କାର ରଖି ବାକ୍ୟଗଠନ ପଦ୍ଧତିର ଉଦାହରଣ ମଧ୍ୟ ବିଭିନ୍ନ ସ୍ଥାନରେ ଦେଖିବାକୁ ମିଳେ । ଏଥିରେ ପ୍ରଥମ ବାକ୍ୟ ଯେଉଁ ଶବ୍ଦରେ ଶେଷ ହୋଇଛି, ଦ୍ୱିତୀୟ ବାକ୍ୟ ସେହି ଶବ୍ଦରୁ ଆରମ୍ଭ ହୋଇଛି ।

କଳପୁ ପୃଥ୍ୱୀ କଲ୍ପିଲା । କଲ୍ପି ଚତୁର୍ଦ୍ଦିଗ ଜେଭଯାକେ ଯେ ଯେଉଁଠାରେ ଅଛି ତାହା ମନେ ମନେ ବ୍ରହ୍ମ ସ୍ତୁତି କରି ଥାପିଲା । ଥାପି ସମସ୍ତ ଜଗତଯାକ ନୂଆ କରି କହିଥିଲା । କହିଥିଲା ଆପଣା ଶରୀର ଦେହଜନ୍ମରୁ ଗୁପତ ହୋଇଲା । ରଥଜଙ୍ଘା ଘଟଣାକୁ କବି ଦୀନବନ୍ଧୁ ଏହି ଶୈଳୀର ପରୀକ୍ଷା କରି କେତେକ ପଦ ରଚନା କରିଛନ୍ତି ।

Digitized by srujanika@gmail.com

କଳାପୂର୍ଣ୍ଣ ହେଲେ ଯେସନ୍ତେ କଳାକାର । କର ବସ୍ତ୍ରାଣ ନାଶଇ ଅନ୍ଧକାର
କାର ଅଙ୍ଗରୁ ଆଜନ୍ମ ପାତକ ହିଁ । କହି ନ ଯାଇ ରହିଲେ କାହିଁ କାହିଁ ।
କାହିଁ ପାଇଁ ତନୁନାହିଁ ସୁଖୀକେଶ । କେଶ ଧଇଲେ କାଳକ ଅବକାଶ ।
କାଶ କୁସୁମ ପଗ୍ୱସ୍ତେ ମନକର । କର ଭାବନା ବାଳମୁକୁନ୍ଦଙ୍କର ।
କର ଅରବନ୍ଦେ ଧଶ ପାଦକଣ୍ଟ । କଣ୍ଠନେଇ ମଣ୍ଡି ଛନ୍ତି ମୁଖ କଣ୍ଠ ।
କଣ୍ଠ ଶିବ ଆଦ ଭଜେ ଯହିଁ କୃଷ୍ଣ । କୃଷ୍ଣ ଚନ୍ଦ୍ର ସେ କୃଷ୍ଣଙ୍କ ମହାତୃଷ୍ଣ ।
(୪।୫୨-୫୭)

ରୁଦ୍ରସୁଧାନଧିର ଅନ୍ୟ ସ୍ଥଳରେ ମଧ୍ୟ ଏହିପରି ଉଦାହରଣ ଦେଖିବାକୁ ମିଳେ –

ତୋହର ବାଞ୍ଛାଏ ହୋଇ ହୋଇଲା କର୍ମ । କର୍ମ କରନ୍ତେ ହୋଇଲା ଧର୍ମ । ଧର୍ମ ହୁଅନ୍ତେ ହୋଇଲା ଶ୍ରମ । ଶ୍ରମ ହୁଅନ୍ତେ ହୋଇଲା ଭ୍ରମ । ଭ୍ରମ ହୁଅନ୍ତେ ହୋଇଲା ତାପ । ତାପ ହୁଅନ୍ତେ ହୋଇଲା ପାପ । ପାପ ହୁଅନ୍ତେ ହୋଇଲା ଦଣ୍ଡ ।

ସେହିପରି କଳକର (ପୃ ୪୬) ହୋଇଲା ହୋଇ (ପୃ ୫୦ ଓ ୫୭) ଜାଣଇ ଜାଣିଲେ (ପୃ ୬୨) ଛାଡ଼ନ୍ତି ଛାଡ଼ି, ବଢ଼ଇ ବଢ଼ି (ପୃ ୧୬) କଲା କଲେ ହେଁ (୧୧୬) ପ୍ରଭୃତିରେ ଏ ପ୍ରକାର ଶୈଳୀ ବ୍ୟବହୃତ ।

ଯତପାତର ନସ୍ମମ ରଖି ଲେଖକ ବିବରଣାତ୍ମକ ଶୈଳୀରେ ଅର୍ଥାତ୍ ବିସ୍ତାର କରି ରୁଦ୍ର ସୁଧାନଧିର କଥା କହିଥିଲେ ହେଁ ସମସ୍ତ ସମୟରେ ସମ୍ବାଦଶୈଳୀର ପ୍ରୟୋଗ କରିଛନ୍ତି । ଏହା ଫଳରେ ବିବରଣାତ୍ମକ ତଥା ନାଟକୀୟ ଉଭୟ ଶୈଳୀର ସମ୍ମିଶ୍ରଣ ଏଥିରେ ଦେଖିବାକୁ ମିଳିଥାଏ । ଲେଖକ ନଜେ ପ୍ରଶ୍ନ ପଚାରି ନଜେ ଏହାର ଉତ୍ତର ଦେଇଛନ୍ତି ।

ତ କେବଣ କେବଣ ବ୍ୟାକରଣ କେବଣ ପ୍ରକାରେ ପଢ଼ିଲ ? ପ୍ରଥମେ କଣ୍ଠ ସ୍ଥାନ କରି, ପଞ୍ଚ ବରଗ, ହ୍ରସ୍ୱ ଦୀର୍ଘ ଜାଣି ପାଦଦ୍ୱୟ ସନ୍ଧ ପରିମାଣି, ଆଗମ ଆଦେଶ ଉପଧା ବିସ୍ତର, ଲିଙ୍ଗ, ବିଭକ୍ତି, ନପାତ ଓ ପ୍ରକୃତ, ଶବ୍ଦଲିଙ୍ଗନସ୍ୱ, ଷଟ୍-କାରକ ପଦ, ସମାସ, ଧାତୁ ରୂପାଦ କରି ଅଷ୍ଟଦଶାଂଶେ ବ୍ୟାକରଣ ପଢ଼ିଲ । (ପୃ.୭୭)

## ଦୁଇ ଚରିତ୍ର ମଧ୍ୟରେ ସମ୍ବାଦ :

କୁମାର ବୋଇଲା, ଥିଲ କାହିଁ ?
ଯୋଗୀ ବୋଇଲା, ବାବା ପୁଷ୍କରରେ ଥିଲୁ !
ତ୍ରିବେଣୀରେ ସ୍ନାନ କରି ଅମୃତ ପାରଣା କଲୁ ।
କୁମର ବୋଇଲା, ଗୋସାଇଁ ବୟସ କେତେ ? ଯୋଗୀ ବୋଇଲା, ନକ୍ଷେତ୍ର ଗଣିଲେ ହୋଇବ ଯେତେ ।

Digitized by srujanika@gmail.com

ମନ୍ତ୍ରୀ ପୁଅ ବୋଇଲା, ଗୋସାଇଁ ପୂର୍ବ ଆଶ୍ରମ କାହିଁ ?
ଯୋଗୀ ବୋଇଲା, ବାବା ଦେଖିଲ ଯହିଁ ।
ଜଗତଯାକ ଯାହା ଚହ୍ନି ଜନ୍ମ ।
ତାହାକୁ ପୂର୍ବ ଆଶ୍ରମ ପଚାରବାରେ କେବଳ ଭ୍ରମ । (ପୃ.୧୨୦)

ଏହି ସମ୍ବାଦଶୈଳୀ ଗ୍ରନ୍ଥର ବହୁ ସ୍ଥଳରେ ଦେଖିବାକୁ ମିଳିଥାଏ । ଈଶ୍ୱର ପାର୍ବତୀ, ରାଜା – ମନ୍ତ୍ରୀ – ଦୂତ, କୁମାର – କାମାନନ୍ଦ ଯୋଗୀ, ଲକ୍ଷ୍ମୀ – ସହଚରୀ, ଲକ୍ଷ୍ମୀ କୋକିଳାବତୀ, ଈଶ୍ୱର – ଅଭିନବ ଚୈତନ୍ୟ, ଅବଧୂତ – ଗର୍ଭସ୍ଥ ଶିଶୁ, ଗୃହକ ସ୍ୱାମିଣୀ – ଉଦ୍ୟୋତ କୁମାର, ରାଜା – ମଧୁମାଳତୀ ପ୍ରଭୃତି ସମ୍ବାଦ ଏହାର ଦୃଷ୍ଟାନ୍ତ ।

## ଘଟଣା ପରିବର୍ତ୍ତନ ଶୈଳୀ :

'ରୁଦ୍ର ସୁଧାନିଧି'ର ଘଟଣାସମୂହର ସମ୍ବନ୍ଧ କାର୍ଯ୍ୟଗତ ପଦ୍ଧତିରେ ହୋଇ ନାହିଁ । ବୃହତ୍ କଥା, ବୃହତ୍ କଥା ମଞ୍ଜରୀ, କଥା ସରିତ ସାଗର, ବେତାଳ ପଞ୍ଚବିଂଶତି, ପଞ୍ଚତନ୍ତ୍ର ଏପରିକି ଚତୁର ବିନୋଦ ଆଦି ଗ୍ରନ୍ଥ ପରି କାହାଣୀ ମଧ୍ୟରୁ କାହାଣୀ ସୃଷ୍ଟି କରିବା ପଦ୍ଧତି ମଧ୍ୟ ଏଥିରେ ସ୍ୱୀକୃତ ନୁହେଁ । ଲେଖକ କଥାର ପ୍ରବାହରେ ପ୍ରସଙ୍ଗର ଆବଶ୍ୟକତା ଦେଖି ଅନ୍ୟ କଥାର ସଂଯୋଜନା କରିଛନ୍ତି । ସେଥିପାଇଁ ଲେଖକଙ୍କୁ ବାରମ୍ବାର ଘଟଣା ପରିବର୍ତ୍ତନର ସୂଚନା ଦେବାକୁ ପଡ଼ିଛି ।

(କ) 'ଏମନ୍ତ' ବ୍ୟବହାର କରି –
ଏମନ୍ତ ସେ ପରମ ଅବଧୂତ ଆସନ୍ତେ । (ପୃ.୪୮)
ଏମନ୍ତେ ସେ ଅବଧୂତ ଆସନ୍ତେ । ସେ ପଶନ୍ତେ...(ପୃ.୪୮)
ଏମନ୍ତ ଶୁଣି ସେ ଅବଧୂତ ବୋଇଲା । (ପୃ.୪୯)
ଏମନ୍ତ ବସ୍ତୁର ଦେହରୁ ବାହାର ହୋଇଲା (ପୃ ୫୦)
ତେମନ୍ତ ବସ୍ତୁର ମାତୃଗର୍ଭେ ପ୍ରତ୍ୟୁତ୍ପନ୍ନ ଶବ୍ଦ କଲା । (ପୃ ୫୧)
(ଖ) 'ତଦନ୍ତରେ' ବା 'ତଦନନ୍ତରେ' ବ୍ୟବହାର କରି –
ତଦନ୍ତରେ ପଶ୍ଚିମ ଦେଶର ଦୂତ ଆସି ପ୍ରବେଶ ହୋଇ ଦର୍ଶନ କଲା । (ପୃ.୮୫)
ତଦନନ୍ତରେ ବହୁ ଅନେକ ଦୂର ପରଯନ୍ତେ ଗଲା । ପୃ.୮୩ ୯୮,୯୯
(ଗ) 'ଏ ଉତ୍ତାରେ' ପ୍ରୟୋଗ କରି –
ଏ ଉତ୍ତାରେ ଉତ୍ତର ଦଗର ଦୂତ ଆସି ରାଜାଙ୍କୁ ଦର୍ଶନ କଲା । (ପୃ.୮୧)
(ଘ) 'ଏଥି ଉତ୍ତାରେ'ର ପ୍ରୟୋଗ –
ଏଥି ଉତ୍ତାରେ କୁମାରକୁ କ୍ଷୀର ପାନ ଦେଲେ । (ପୃ. ୭୫)
ତ ଏଥି ଉତ୍ତାରେ କେତେହେଁ ଦିନେ ଦିବସ ଅନ୍ତରରେ ସେ କୁମର ଜନ୍ମ ହୋଇଲା । (ପୃ. ୬୬)

Digitized by srujanika@gmail.com

(ଙ) 'ତ ଏବଂ ଭୂତ ପ୍ରକାରେ—'

ତ ଏବଂ ଭୂତ ପ୍ରକାରେ ସୂତକ ଧାରଣୀ ରୂପକୁ ଧରଧାରୀ ହୋଇ ରହିଲା । (ପୃ.୭୨)

## ରୂପବର୍ଣ୍ଣନା ଶୈଳୀ :

ଗଦ୍ୟ ହେଉ କି ପଦ୍ୟ ହେଉ, ପ୍ରାଚୀନ ସାହିତ୍ୟର ପ୍ରତ୍ୟେକ କାବ୍ୟରେ ରୂପ-ବର୍ଣ୍ଣନା ଏକ ଅପରିହାର୍ଯ୍ୟ ଅଙ୍ଗ। ରୁଦ୍ର ସୁଧାନିଧିରେ ପୁରୁଷ ଓ ନାରୀ ଉଭୟ ପ୍ରକାର ଚରିତ୍ରର ରୂପ ବର୍ଣ୍ଣନା ସନ୍ନିବେଶିତ । ପ୍ରତ୍ୟେକ ଚରିତ୍ରବର୍ଣ୍ଣନାରୁ ଏହାର ରୂପରେଖ ସ୍ପଷ୍ଟଭାବେ ପ୍ରତିଭାତ ହୋଇଥାଏ । ଉଦାହରଣାର୍ଥ ଅବଧୂତର ରୂପବର୍ଣ୍ଣନା ଗ୍ରହଣ କରାଯାଇ ପାରେ । ଏଥିରୁ ଅବଧୂତର ବେଶଭୂଷା, ପରାକ୍ରମ, ଅଲୌକିକତା ଓ ଅଭିମାନ ଅତି ଜୀବନ୍ତ ଭାବେ ପ୍ରକାଶିତ ।

"ସେ ପୁରୁଷ ଦେହ କେମନ୍ତ ଅଟଇ । କୃଷ୍ଣଧୂମ୍ର କେଶକାନ୍ତି । କେଶ କୁଟିଳ, ଜଟିଳ ଖେଚର କନକର ଭ୍ରାନ୍ତି । ଚକ୍ଷୁ ପିଙ୍ଗଳ ତଡ଼ାକୃତି । ଶରୀର ଦୀର୍ଘ ପୃଥୁଳ ଆକୃତି । କଟିରେ ଅଛି ବଜ୍ର କାଛେଟି । ସ୍କନ୍ଧେ ଅଛି ଚକ୍ଷୁ ତରାଟି । ଶୃଙ୍ଗାରରସ ମଦହରରେ ହୋଇ ଅଛି ମତ୍ତ ।" (ପୃ-୪୭)

କାମାନନ୍ଦ ଯୋଗୀର ମାର୍ଗ ଅବଧୂତଠାରୁ ବିପରୀତ । ଜଣେ ସଂସାରକୁ ତୁଚ୍ଛ ଜ୍ଞାନ କରୁଥିବାବେଳେ ଅନ୍ୟ ଜଣେ ସଂସାର ପ୍ରତି ଆସକ୍ତ । ଅବଧୂତର ପ୍ରକୃତି ପରି ତାର ରୂପ ଭୟଙ୍କର । ଅଥଚ କାମାନନ୍ଦ ଯୋଗୀ ହେଲେ ହେଁ ରୂପର ରମଣୀୟତା ତା' ବ୍ୟକ୍ତିତ୍ୱର ବୈଶିଷ୍ଟ୍ୟ । ସେଥିପାଇଁ ଲେଖକ ଲେଖିଛନ୍ତି—"ସେ ଅତ୍ୟନ୍ତ ଅଦ୍ଭୁତ । ସେ ଯୋଗୀ ଅଭିନବ ଯୁବା । କନ୍ଦର୍ପର ଆଶ୍ରା । କି ସ୍କନ୍ଧବାର ଶୋଭା, ତରୁଣ ସିଂହର ପ୍ରଭା । କି ମତ୍ତ ଗଜର ଲୀଳା ଗତି କି ନିନ୍ଦୁଅଛି । କି ନାୟିକାମାନଙ୍କୁ କାମବାଣ ସାନ୍ଧୁଅଛି । ସମ୍ପୂର୍ଣ୍ଣ ଚନ୍ଦ୍ରମଣ୍ଡଳ ପ୍ରାୟେନ ମୁଖ ମଣ୍ଡଳ ।" (ପୃ ୮୨)

ପଦାତିକମାନଙ୍କର ବର୍ଣ୍ଣନା କଲାବେଳେ ଲେଖକଙ୍କ କାରୁକୃତି ପରିସ୍ଫୁଟ । ମଲ୍ଲ ରଙ୍ଗନରେ ତାରସ୍ୱରୁ ଠକ ଠକ୍ କରୁଥିବା ପରି ବଳଶାଳୀ ପାଇକମାନଙ୍କର ଗାମ୍ଭୀର୍ଯ୍ୟପୂର୍ଣ୍ଣ ବର୍ଣ୍ଣନା କଲାବେଳେ ଲେଖକ ଶବ୍ଦ ଓ ଉପମାନସବୁକୁ ଏପରି ଭାବେ ବ୍ୟବହାର କରିଛନ୍ତି ଯେଉଁଥିରେ ଭୟଙ୍କରତା ସହ ସରସତା ସମନ୍ୱିତ ହୋଇ ପ୍ରକାଶ ପାଇଛି ।

"ପାଦାନ୍ତ ବଳ ଗୋଟାଏ ସବୁହେଁ ଆଗେ ଶାର୍ଦ୍ଦୂଳ ଯୂଥ ପ୍ରାୟେକ ହୋଇ ଶୋଭା ପାଉଅଛି । ...ରଣେ ଯେ କୁକୁଡ଼ା ...ଘଣ୍ଟା ମର୍ଦ୍ଦନରେ ଦେହ ଶିଖର ପ୍ରାୟ

Digitized by srujanika@gmail.com

ଦଶଇ …ଘୁଣ ଦେଇ ଟାଣିଲେ ମୂଆଁଳ ଭାଜଇ । ବାନ୍ଧିଲେ ଯେ ଶତ ଗେ ଟାକୁ ବାଜଇ ।" (ପୃ. ୧୧୮)

ପୁତନାର ରୂପବର୍ଣ୍ଣନାର ବୈଚିତ୍ର୍ୟ ନାରୀ ରୂପରେ ଦେଖିବାକୁ ମିଳେ ନାହିଁ । ସୁନ୍ଦର ସମସ୍ତ ନାରୀ ଶରଦ ଚନ୍ଦ୍ରବଦନୀ, ନୀଳୋତ୍ପଳନୟନା, ମତ୍ତ ଗଜେନ୍ଦ୍ର-ଗାମିନୀ, ତୁଙ୍ଗ ପୀନସ୍ତନୀ, ମଧ୍ୟକ୍ଷୀଣୀ, ଲାବଣ୍ୟ ବର୍ଣ୍ଣିନୀ, କୋକିଳ ବଚନା । ସମସ୍ତେ ସୁନ୍ଦରୀ । ପୁତନାଦାନବୀର ବର୍ଣ୍ଣନା କଲାବେଳେ ଲେଖକ ଏଥିରେ ବ୍ୟତିକ୍ରମ ସୃଷ୍ଟି କରିଅଛନ୍ତି । ଭାଗବତର ପୁତନା ପରି ତା'ର ଦୁଇଟି ରୂପ, ସୁନ୍ଦର ଓ ବିକରାଳ । ଭାଗବତରେ ପ୍ରଥମେ ସୁନ୍ଦର ଓ ପରେ ବିକରାଳ ରୂପର ବର୍ଣ୍ଣନା ସ୍ୱତନ୍ତ୍ରଭାବେ କରାଯାଇଥିବା ବେଳେ ଲେଖକ ପୁତନାଦାନବୀର ରୂପବର୍ଣ୍ଣନାରେ ପ୍ରଥମେ ବିକରାଳତାର ଚିତ୍ର ଦେଇ ପରେ ସୁନ୍ଦରର ବର୍ଣ୍ଣନା କରିଛନ୍ତି ।

| ଅଙ୍ଗ | ବିକରାଳ ରୂପ | ସୁନ୍ଦର ରୂପ |
|---|---|---|
| କେଶ | କନକ ସମାନ ପିଙ୍ଗଳ | କାଳଳୀ ତରଙ୍ଗ |
| କୁଟିଳ | ଖେଚର ଖାଙ୍କର | |
| ଶରୀର | ଅତ୍ୟନ୍ତ ଜଡ଼ ତମିର ଅନ୍ଧକାର | ଚମ୍ପକ, କେତକୀର ମଧ୍ୟଦଳ |
| ମୁଖମଣ୍ଡଳ | ବିକୃତ ଆକାର | ଶରଦଚନ୍ଦ୍ର |
| ଭ୍ରୂଲତା | କୃଷ୍ଣ ସର୍ପିଣୀ | ଅତନୁ ଧନୁ ରୂପ |
| ନୟନ | ବିକୃତ | ନୀଳୋତ୍ପଳ |
| ଅଧର | ଜମ୍ବୁଫଳ | ବନ୍ଧୁଳି ପୁଷ୍ପ |
| ଦନ୍ତପନ୍ତି | ବାଳ ଚନ୍ଦ୍ରମା | କୁନ୍ଦ କଢ଼ି |
| ରସନା | ବିଜୁଳି | ଆରକ୍ତ କୁମୁଦ ପାଖୁଡ଼ା |
| ବଚନ | ଅର୍ଦ୍ଧ ଭଗ୍ନ ଭେରୀ | ଅର୍ଦ୍ଧିର କୋକିଳ |
| ସ୍ତନ | ଆଣ୍ଠୁପର୍ଯ୍ୟନ୍ତ ଲମ୍ବା | ଶିଶୁ ଗଜ କୁମ୍ଭ |
| ଚରଣ | ବକ୍ର ଚରଣ | ଉଲଟ ରମ୍ଭା |

ତୁଳନା ପାଇଁ ଭାଗବତରୁ ପୁତନାର ସୁନ୍ଦର ଓ ବିକରାଳ ରୂପକୁ ଗ୍ରହଣ କରାଯାଇପାରେ ।

Digitized by srujanika@gmail.com

ପୂତନାର ସୁନ୍ଦର ରୂପ—

"ତାଂ କେଶବନ୍ଧବ୍ୟତିଷକ୍ତମଲ୍ଲିକାଂ ବୃହନ୍ନିତମ୍ବ ସ୍ତନ କୃଚ୍ଛ୍ର ମଧ୍ୟମାମ୍ ସୁବାସସଂ କମ୍ପିତ କର୍ଣ୍ଣଭୂଷଣାଂ ତ୍ୱିଷୋଲ୍ଲସତ୍ କୁନ୍ତଳମଣ୍ଡିତାନନାମ୍ ।। ବଲ୍ଗୁସ୍ମିତାପାଙ୍ଗ ବିସର୍ଗ ବୀକ୍ଷିତୈର୍ମନୋ ହରନ୍ତୀଂ ବନିତାଂ ବ୍ରଜୌକସାମ୍ ।

(ଭାଗବତ ପୁରାଣ—ସ୍କନ୍ଧ ୧୦।୬।୫—୬)

ବିକଟାଳ ରୂପ—

"ଈଷାମାତ୍ରୋଗ୍ରଦଂଷ୍ଟ୍ରାସ୍ୟଂ ଗିରିକନ୍ଦରନାସିକମ୍ । ଗଣ୍ଡଶୈଳସ୍ତନଂ ରୌଦ୍ରଂ ପ୍ରକୀର୍ଣ୍ଣାରୁଣମୂର୍ଦ୍ଧଜମ୍ । ୧୫ । ଅନ୍ଧକୂପଗଭୀରାକ୍ଷଂ ପୁଳିନା ରୋହଭୀଷଣମ୍ । ବଦ୍ଧସେତୁଭୁଜୋର୍ବଙ୍ଘ୍ରି ଶୂନ୍ୟତୋୟହ୍ରଦୋଦରମ୍ । ୧୬ ।

(ଭାଗବତ ପୁରାଣ—ସ୍କନ୍ଧ ୧୦।୬। ୧୫—୧୬)

ନଖଶିଖ ବର୍ଣ୍ଣନାଶୈଳୀ—

ମଧ୍ୟକାଳୀନ କବିଙ୍କ ପରି ଭୁବନେଶ୍ୱର ସୁଧାନିଧିର ଲେଖକ ନାୟିକାର ନଖଶିଖ ବର୍ଣ୍ଣନା କରିବାର ମୋହ ପରିତ୍ୟାଗ କରିପାରି ନାହାନ୍ତି । ଶଶୀପ୍ରଭା, ଚୋକଲା ବଣି ପ୍ରଭୃତି ନାୟିକାଙ୍କୁ ଲେଖକ ଅତି ସଂକ୍ଷେପରେ ବର୍ଣ୍ଣନା କରିଥିବା ବେଳେ ଏବଂ ପରମ୍ପରାରେ ପ୍ରଚଳିତ ଉପମାନସବୁକୁ ଗୋଟିଏ ଗୋଟିଏ ବାଛି ଗୋଟିଏ ଗୋଟିଏ ଅଙ୍ଗର ବର୍ଣ୍ଣନା ଦେଇଥିବାବେଳେ ମୁଖ୍ୟ ନାୟିକା ପାଇଁ ଉପମାନର ପ୍ରବାହ ପ୍ରବାହିତ ହୋଇଛି । ଏକ ଅଙ୍ଗ ପାଇଁ ଅନେକ ଉପମାନର ପ୍ରୟୋଗ କରି ଲେଖକ ଏହି ରୂପ-ବର୍ଣ୍ଣନାକୁ ଉପମାର ଅଭିଧାନରେ ପରିଣତ କରିଛନ୍ତି । ନିମ୍ନରେ ଭ୍ରୂଲତାର ବର୍ଣ୍ଣନା ଦେଖାଯାଇପାରେ ।

| ଅଙ୍ଗ | ଗୁଣ | ଉପମାନ |
|---|---|---|
| ଭ୍ରୂଲତା | କୁଟିଳ, ବହଳ, ନୀଳ ସ୍ନିଗ୍ଧ, ପରିମଳ, ସୂକ୍ଷ୍ମରେଖ, ମନୋହର | କନ୍ଦର୍ପ ପୁଷ୍ପ ଭ୍ରମର, କୃଷ୍ଣ ସର୍ପିଣୀ, ମର୍କତ ଲତା, ଇନ୍ଦ୍ରନୀଳ ମଣିମାଳା, କଳଙ୍କର କଳା, ନୀଳରେଖା, ରସ ଜଳଧିରେ ମନ୍ମଥ ମନ୍ତ୍ରଗ୍ରୀ ଲତା, ଚତୁଃଷଷ୍ଠୀ କଳାର ଜାଲ, ଅମୃତ ଚନ୍ଦ୍ର ମାଳ, ମୃଗମଦ ଅକ୍ଷର ମାଳ । |

Digitized by srujanika@gmail.com

## ବେଶବର୍ଣ୍ଣନା ଶୈଳୀ—

ରୂପ ପରି ବେଶ ବ୍ୟକ୍ତିତ୍ୱକୁ ପରିସ୍ଫୁଟ କରିବାରେ ସହାୟକ। ରୁଦ୍ର ସୁଧାନିଧିରେ ପ୍ରାୟ ପ୍ରତ୍ୟେକ ଚରିତ୍ରର ରୂପ ତଥା ବେଶର ବର୍ଣ୍ଣନା କରାଯାଇଛି। ବେଶବର୍ଣ୍ଣନାରୁ ଚରିତ୍ରକୁ ସହଜରେ ଚିହ୍ନି ହୁଏ। ଅବଧୂତର ବେଶରୁ ତା'ର ରୂପ ଓ ସାଧନାର ଭୟଙ୍କରତା ପ୍ରକାଶିତ।

"ଏମନ୍ତ ସେ ଅବଧୂତର କେଶ ମୁକୁଳ। ଭସ୍ମେ ଧୂସର। ଅନ୍ତ ନିର୍ମଳ। ଦାନ୍ତ ଉଜ୍ଜ୍ୱଳ। ହାତରେ ଅଛି ଦଣ୍ଡେ। କଟିରେ ଅଛି ଦରପୋଡ଼ା ଖଣ୍ଡେ। ମୃତ ସର୍ପେକ ପଇତା କରି ଲାଇଅଛି। ସିଦ୍ଧମୂଳିକା ଖାଉଅଛି। କଣ୍ଠେ ଲମ୍ବାଇଅଛି କୃମ୍ଭ ମୁଖ ଖଣ୍ଡେ। ମଥାରେ ଦେଇଅଛି ଅଗ୍ନି ସମେତ ଖପ୍ପରେ।" (ପୃ: ୪୮)

ସେହିପରି ଗାୟଣ ମଧୁ ଓ ଗାୟଣୀ ମାଳତୀର ବେଶ ବର୍ଣ୍ଣନା ସେମାନଙ୍କ ଚରିତ୍ରର ଅନୁରୂପ।

## ଅଳଙ୍କାର ଯୋଜନା—

ରୁଦ୍ର ସୁଧାନିଧିକାରଙ୍କ ମୂଳ ପ୍ରବୃତ୍ତି ହେଲା ଉକ୍ତିବିଳାସ ଓ କୌତୂହଳ-ସୃଷ୍ଟି। ସେଥିପାଇଁ ସେ ଗ୍ରନ୍ଥର ବହୁ ସ୍ଥଳରେ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ପ୍ରୟୋଗ କରିଛନ୍ତି। ଶବ୍ଦାଳଙ୍କାର ମଧ୍ୟରେ ଅନୁପ୍ରାସ ହିଁ ବିଶେଷ ଭାବେ ବ୍ୟବହୃତ। ଯମକ ଓ ଶ୍ଲେଷର ବ୍ୟବହାରକୁ ଲେଖକ ପରିତ୍ୟାଗ କରି ନିଜକୁ ରୀତିକାଳୀନ ପ୍ରଭାବରୁ ମୁକ୍ତ କରିଛନ୍ତି। ଗଦ୍ୟରଚନା ପାଇଁ ଏହାର ଆବଶ୍ୟକତା ନ ଥିବା ଲେଖକ ମର୍ମେ ମର୍ମେ ଭାବେ ହୃଦୟଙ୍ଗମ କରିଥିବା ଜଣାଯାଏ। ଅର୍ଥାଳଙ୍କାର ମଧ୍ୟରୁ ଲେଖକ ବିଶେଷ କରି ସାଦୃଶ୍ୟମୂଳକ ଅଳଙ୍କାରସବୁର ବ୍ୟବହାର କରିଛନ୍ତି।

ଅର୍ଥାଳଙ୍କାର ପ୍ରତି ଲେଖକଙ୍କର ବିଶେଷ ମୋହ ଥିଲା। ରୀତିକାଳୀନ କବି-ମାନଙ୍କ ପରି ସେ ଏହାକୁ ସାଧ୍ୟରୂପେ ଗ୍ରହଣ ନ କରି ସାଧନ ଭାବେ ବ୍ୟବହାର କରି-ଛନ୍ତି। ନିଜର ଉଦ୍ଦେଶ୍ୟ ଅର୍ଥାତ୍ କଥା କହିବା ଲେଖକଙ୍କର ମୂଳ ଲକ୍ଷ୍ୟ ଓ ଅଳଙ୍କାର ସେହି ଉଦ୍ଦେଶ୍ୟକୁ ସାର୍ଥକ କରିବା ପାଇଁ ବ୍ୟବହୃତ।

ଅର୍ଥାଳଙ୍କାରସବୁର ପ୍ରୟୋଗ କଲାବେଳେ ଲେଖକ ଆଳଙ୍କାରିକମାନଙ୍କ-ଦ୍ୱାରା ନିର୍ଦ୍ଦେଶିତ ଅଳଙ୍କାରର ଦୁଇଟି କାର୍ଯ୍ୟ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି— (୧) ଭାବର ଉତ୍କର୍ଷତା ବିଧାନ ତଥା (୨) ଚରିତ୍ରର ରୂପ, ଗୁଣ ଓ କ୍ରିୟାର ତୀବ୍ରତା

Digitized by srujanika@gmail.com

ଆନୟନ । ଅଳଙ୍କାର ବିଧାନର ଏହି ଦୁଇଟି ଗୁଣ ରୁଦ୍ର ସୁଧାନିଧିରେ ପ୍ରାୟ ଦେଖିବାକୁ ମିଳିଥାଏ ।

ଭାବର ଉତ୍କର୍ଷତା ବିଧାନ ପାଇଁ ପ୍ରଯୁକ୍ତ ଶୈଳୀ—

ନର ଶରୀରର ନଶ୍ୱରତା ଦର୍ଶାଇବା ପାଇଁ ଲେଖକ ପ୍ରତ୍ୟେକ ଅଙ୍ଗ ପାଇଁ ପ୍ରଯୁକ୍ତ କରିଥିବା ଉପମାନ ସବୁରେ ଏହା ଅତି ସ୍ପଷ୍ଟ ଭାବେ ପ୍ରକାଶ ପାଇଛି । ନିମ୍ନାଙ୍କିତ ଉଦାହରଣଗୁଡ଼ିକରୁ ଏହାର ବିଚାର କରାଯାଇପାରେ । ଚଢ଼େଇ ଅଣ୍ଡା ପରି ନାସିକା, ଜୀର୍ଣ୍ଣ କୂପ ଗୃହ ପାରୁଶରେ ଥିବା ବୃକ୍ଷ ପରି ମୁଖ ଗୃହ ପାଟର କେଶ, ଆର୍ଗଳ ତୃଣ ଦାନ୍ତ, ମର୍କଟି ଖଟାଇଲା ପରି ଜିହ୍ୱା ।

ପରିହାସ କଲା ପରି ଉପମାନସବୁର ସଂଯୋଜନାଦ୍ୱାରା ଉଦ୍ଦିଷ୍ଟ ଭାବ ଉତ୍କୃଷ୍ଟତର ହୋଇ ପ୍ରକାଶ ପାଇଛି ।

ବିଭିନ୍ନ ଧର୍ମମାର୍ଗକୁ ଆଲୋଚନା କଲାବେଳେ ଲେଖକ ଏହି ଶୈଳୀର ଆଶ୍ରୟ ନେଇଛନ୍ତି । କାପାଳିକମାନଙ୍କ ସାଧନାକୁ ଲକ୍ଷ୍ୟ କରି ସେଥିପାଇଁ ସେ କହୁଛନ୍ତି — "କାପାଳିକ ମତ ବୋଲଇ । ଦେହ ସିଦ୍ଧ ହୋଇ । ଆସନ ଯୋଗ ଅଭ୍ୟାସେ ଉଡ଼ିବା ଆକାଶେ ପବନ ହୋଇ । ଏଥିକ ଧର୍ମ କଥା ନାହିଁ । ଚଢ଼େଇ ପ୍ରାୟ ହୋଇ ଆକାଶ ମଣ୍ଡଳେ ବୁଲୁଥିଲେ ହେଁ କ କାର୍ଯ୍ୟ ହୋଇଲାଟି । ଶାଗୁଣା ଉଡ଼ୁ ନ ଥାଇ କ ।" (ପୃ. ୫୯)

ଚରିତ୍ରର ରୂପ, ଗୁଣ ଓ କ୍ରିୟାର ତୀବ୍ରତା ଆନୟନ—

ଅବଧୂତ, କାମାନନ୍ଦ ଯୋଗୀ, ସୂତକହାରିଣୀ, ମଧୁ ଓ ମାଳତୀ, କୋକିଳାବତୀ, ଅବିଦ୍ୟା ମୃତସଞ୍ଜୀବନୀକରଣୀ ପ୍ରଭୃତି ଚରିତ୍ରର ପରିଚୟ ଦେବା ବେଳେ ଲେଖକ ସାଧାରଣତଃ ସେମାନଙ୍କ ରୂପ, ଗୁଣ ଓ କ୍ରିୟାକୁ ଆଖି ଆଗରେ ରଖିଛନ୍ତି । ଅବଧୂତର ଅହଙ୍କାର, କାମାନନ୍ଦ ଯୋଗୀର କାମିନୀ-ଲାଳସା, ସେମାନଙ୍କ ରୂପ ଓ ଗୁଣ ପାଇଁ ପ୍ରଯୁକ୍ତ ଉପମାନସବୁରେ ପ୍ରକାଶିତ ।

ରୁଦ୍ର ସୁଧାନିଧିର ଲେଖକ ଉପମା ଚୟନରେ ସାଧାରଣ ବସ୍ତୁକୁ ଉପମାନ ରୂପେ ବ୍ୟବହାର କରିଥିଲେହେଁ ସେସବୁର ସଂଖ୍ୟା ବେଶୀ ନୁହେଁ । ଉଦାହରଣ ରୂପେ ଜୀର୍ଣ୍ଣ କୂପର ଗୁରିପଟେ ବନ୍ଧାଯାଇଥିବା ବୃକ୍ଷ, ଚଢ଼େଇ ଅଣ୍ଡା, ମର୍କଟୀ ନାଚ, ଦାଉଣୀରେ ବନ୍ଧା ଯାଇଥିବା ଗଧ, ନବ ଦ୍ୱାର ଘରର ମେରଦା ମଝିରେ ଥିବା ଦୀପ,

Digitized by srujanika@gmail.com

ମଦ ଭ ପାନ ପତ୍ର, କଦଳୀ ପତ୍ର, ବକ ଚରଣ, ଚଲ ଉଡ଼ିବା, କୂପ ଖୋଳି ବସିବା ଇତ୍ୟାଦିକୁ ଗ୍ରହଣ କରାଯାଇପାରେ ।

ତେବେ ବି ଏସବୁରୁ ଲେଖକଙ୍କ ଅଭିରୁଚି ତଥା ଉପମାନ ପ୍ରୟୋଗର ଦକ୍ଷତା ପ୍ରତିପାଦିତ ହୁଏ । ପରମ୍ପରାରୁ ଗୃହୀତ ଉପମାନ ସବୁକୁ ନିମ୍ନରୂପେ ବର୍ଗୀତ କରାଯାଇପାରେ ।

ପୁଷ୍ପ — ଚମ୍ପକ, କେତକୀ, କମଳ, ଶିରୀଷ, ବନ୍ଧୁଳି, କୁନ୍ଦ, ଲଣ୍ଡାବଲ୍ଲୀ ।

ଫଳ — ଜମ୍ବୁକୋଳି, ରମ୍ଭା, କଇଁଥ ।

ପର୍ବତ — ହିମାଳୟ, କାଞ୍ଚନ, ମେରୁ ।

ଧାତୁ — ମଣି ।

ନଦୀ — କାଳିନ୍ଦୀ ।

ଗ୍ରହ — ଚନ୍ଦ୍ର, ତାରା, ଅଗ୍ନି, ବୃହସ୍ପତି, ଶୁକ୍ର ।

ଦେବଦେବୀ — ହିମ୍ବେଶ୍ୱର, ଶଙ୍କର, ମୃତ୍ୟୁ, ଦେବତା, ବିଶ୍ୱକର୍ମା, ବ୍ୟାସ, ବରୁଣ, ସରସ୍ୱତୀ ।

ପଶୁ — ହସ୍ତୀ, ମର୍କଟ, ମର୍କଟି, କୁରଙ୍ଗ, ଶାର୍ଦ୍ଦୁଳ, ଚମରୀ, ଷଣ୍ଢ, ସିଂହ, କମଠ, ଗଧ ।

ପକ୍ଷୀ — ଶାରୀ,ଶୁକ, କଳହଂସୀ, କୁକୁଡ଼ା, ଚକ୍ରବାକ, ବକ, ରାଜହଂସୀ, କୋକିଳ, ମୟୂର, ବାଳହିଙ୍ଗୋଳୀ ।

ସରୀସୃପ - ସର୍ପ, କୃଷ୍ଣସର୍ପ ।

କୀଟପତଙ୍ଗ - ଜୁଳୁଜୁଳିଆ ପୋକ, ଭ୍ରମର ।

ଦିବ୍ୟବସ୍ତୁ — କଳ୍ପଲତା ଫଳ, ଅତନୁକର ପୁଷ୍ପ

ଅନ୍ୟାନ୍ୟ — ନଟ, ବହୁରୂପୀ, ମର୍ଦ୍ଦଳ, ବଂଶୀ, ବତାସ ଥାଳ, ମୃଦଙ୍ଗ, ଅର୍ଦ୍ଧଭଗ୍ନ ଭେରୀ, କୁଳାଙ୍ଗନା ଦୁନ୍ଦୁଭି, ଅଞ୍ଜନ, କମ୍ବୁ, ଶବ, ଚିଲା, ଅଙ୍ଗାର ।

ଏଥି ମଧ୍ୟରୁ ଚନ୍ଦ୍ର ଓ କମଳ ଅନ୍ୟାନ୍ୟ କବିମାନଙ୍କ ପରି ଲେଖକଙ୍କର ଅତି ପ୍ରିୟ ଉପମାନ । ନାୟିକାର ରୂପ ବର୍ଣ୍ଣନା କଲାବେଳେ ଏହି ସବୁ ଉପମାନ

Digitized by srujanika@gmail.com

ଏହାବେଳେକେ ଅକାଣ୍ଡ ହୋଇପଡ଼ିଛନ୍ତି । ଉଦାହରଣ ପାଇଁ ଶୁକ୍ଳ ବର୍ଣ୍ଣର ଉପମାନ ସବୁକୁ ଗ୍ରହଣ କରାଯାଇପାରେ । ଶୁକ୍ଳ ବର୍ଣ୍ଣର କଥା କହିବାବେଳେ ଲେଖକ କ୍ଷୀର ସମୁଦ୍ର, ଶରଦ ଚନ୍ଦ୍ର, କୁମୁଦ, କୁନ୍ଦ, ପୁଣ୍ଡରିକ, କର୍ପୂର, ଚଉବାଶ୍ଵ, ମନ୍ଦାକିନୀ କଲ୍ଲୋଳ, ଚନ୍ଦନ, ସୁଧାଫେନ ପ୍ରଭୃତିକୁ ଗ୍ରହଣ କରିଛନ୍ତି । ଏ ସବୁରେ ଲେଖକଙ୍କ ପାଣ୍ଡିତ୍ୟ ପ୍ରକାଶିତ ହେଉଥିଲେ ହେଁ ଉପମାନ ପ୍ରୟୋଗରେ ବୈଚିତ୍ର୍ୟ ପରିଦୃଷ୍ଟ ହୁଏ ନାହିଁ ।

ଉପମାବାଚକ ଶବ୍ଦର ବହୁଳ ପ୍ରୟୋଗଦ୍ୱାରା ରୁଦ୍ରସୁଧାନିଧିର ରଚନା ଶୈଳୀରେ ଅନ୍ୟ ଏକ ବୈଶିଷ୍ଟ୍ୟ ସୃଷ୍ଟି ହୁଏ । ଉପମାଳଙ୍କାର ପ୍ରୟୋଗ ପାଇଁ ଲେଖକ ଉପମାବାଚକ ଶବ୍ଦସବୁ ମଧ୍ୟରୁ ପ୍ରାୟ, ପ୍ରାଏକ, ଯେହ୍ନେ, ତେହ୍ନେ, ଯେମନ୍ତ, ପରି, ସଦୃଶ, ପ୍ରାଏ, ହୋଇ, ପରାଏ, ସରି, ସମାନ, ବୋଲିବାର, କି, ଅବା ବ୍ୟବହାର କରିଛନ୍ତି । ଏଥିମଧ୍ୟରୁ 'ପ୍ରାୟେକ'ର ବ୍ୟବହାର ସର୍ବାଧିକ ।

## ଶବ୍ଦପ୍ରୟୋଗଶୈଳୀ :

ବାକ୍ୟଗଠନ ପରି ପରି ଶବ୍ଦପ୍ରୟୋଗରୁ ଲେଖକଙ୍କ ରଚନାଶୈଳୀର ବୈଶିଷ୍ଟ୍ୟ ଜାଣିହୁଏ । ରୁଦ୍ରସୁଧାନିଧିର ଲେଖକ ନାରାୟଣ ଦାସ ବହୁ ଶାସ୍ତ୍ରରେ ପାରଙ୍ଗମ ଥିଲେ । ଯୋଗସାଧନା ପାଇଁ ତାଙ୍କର ବିଶେଷ ଆଗ୍ରହ ଥିଲା । ତେଣୁପାଇଁ ତାଙ୍କ ଗ୍ରନ୍ଥରେ ଯୋଗଶାସ୍ତ୍ର ସମ୍ବଳିତ ବହୁ ତତ୍ସମ ଶବ୍ଦାବଳୀର ପ୍ରୟୋଗ ଦେଖିବାକୁ ମିଳେ । ସେ ଶିବଭକ୍ତ ଥିବାରୁ ଶିବ-ସ୍ତୋତ୍ରରେ ବହୁ ତତ୍ସମ ଶବ୍ଦ ବ୍ୟବହାର କରିଛନ୍ତି । ଏଥିରେ ଥିବା ବର୍ଣ୍ଣାନୁପ୍ରାସ ଛନ୍ଦର ଏହି ଅଂଶକୁ ଶ୍ରୁତିସୁଖକର କରୁଥିଲେ ହେଁ ଶବ୍ଦସବୁର କ୍ଳିଷ୍ଟତାଦ୍ୱାରା ଏହା ଭାରାକ୍ରାନ୍ତ । କେବଳ ରୁଦ୍ରସୁଧାନିଧିର ଲେଖକ ନୁହନ୍ତି, ଭାରତର ପ୍ରତ୍ୟେକ ଭାଷାରେ ସ୍ତୋତ୍ର ପାଇଁ ସାଧାରଣତଃ ତତ୍ସମ ଶବ୍ଦ-ବହୁଳ ଶୈଳୀ ବ୍ୟବହୃତ ହୋଇଥାଏ ଏବଂ ତାହା ସ୍ତୋତ୍ରଶୈଳୀ ନାମରେ ପରିଚିତ । 'ମାର୍କଣ୍ଡେୟ ପୁରାଣ'ର ଚଣ୍ଡୀ ବନ୍ଦନାରୁ ଏହାର ଏକ ଉଦାହରଣ ଦେଖାଯାଇପାରେ ।

"ଖଡ଼୍ଗିନୀ ଶୂଳିନୀ ଘୋରା ଗଦିନୀ ଚକ୍ରିଣୀ ତଥା
ଶଙ୍ଖିନୀ ଚାପିନୀ ବାଣ ଭୁଶୁଣ୍ଡୀ ପରିଘାୟୁଧା ॥ ୭୨॥
(ଅଧ୍ୟାୟ.୮୧)

ବ୍ରଜବୋଲି ଓ ପଞ୍ଜାବୀ ଭାଷାରେ ରଚିତ 'ଦଶମ ଗ୍ରନ୍ଥ'ର ମହାକାଳ ବର୍ଣ୍ଣନାରେ ଏ ପ୍ରକାର ଶୈଳୀର ପରିଚୟ ମିଳିଥାଏ ।

'ଅଦାଂଗଂ ଅଦଗଂ ଅଲେଖଂ ଅଭେଖଂ
ଅନନ୍ତଂ ଅନାଲଂ ଅରୂପଂ ଅଦୈଖଂ ।

Digitized by srujanika@gmail.com

ମହାଂ ତେଜ ତେଜଂ ମହା ଜ୍ୱାଲ ଜ୍ୱାଲଂ
ମହାମନ୍ତ୍ର ମନ୍ତ୍ରଂ ମହାକାଲ କାଲଂ ।।''୧୭।।

(ଦଶମ ଗ୍ରନ୍ଥ, ପୃ. ४०)

ଶାରଳାଦାସ ଓ ବାଗ୍‌ନାଥ ଦାସ ସେମାନଙ୍କ ଗ୍ରନ୍ଥରେ ପ୍ରଥପକ୍ଷ ଯୋଦ୍ଧାଙ୍କ ପଦ ଲେଖିଲାବେଳେ ସ୍ତୋତ୍ରଶୈଳୀକୁ ଅନୁସରଣ କରିଥିବା ଜଣାଯାଏ । ବାଗ୍‌ନାଥ ଦାସଙ୍କ ବଳଙ୍କା ଖଣ୍ଡରୁ ନିମ୍ନରେ ଏକ ଉଦାହରଣ ପ୍ରଦତ୍ତ ହେଲା ।

''ଶ୍ରୀ ଅନାଦି ନିରଞ୍ଜନ ଶ୍ରୀ ଚରଣେ ଶରଣ ।
ଶ୍ରୀ ସୂର୍ଯ୍ୟବଂଶ ଧାରଣ ।
ରଘୁକୁଳମଣ୍ଡନ ।
ଦିଲୀପ ଭଗୀରଥ ମାନ୍ଧାତା ହରିଚନ୍ଦନ ।
ଅଜରାଜନନ୍ଦନ ।
ମହାରାଜା ଦଶରଥ ମହିମଣ୍ଡନ ।''

କେବଳ ସ୍ତୋତ୍ର ନୁହେଁ, ନାରୀ ଓ ପୁରୁଷର ରୂପ, ଦେଶ ଓ ସ୍ଥାନର ଅବସ୍ଥିତି, ଚରିତ୍ର ଚିତ୍ରଣ, ଜ୍ୟୋତିଷ, ବ୍ୟାକରଣ ଓ ଅନ୍ୟାନ୍ୟ ଶାସ୍ତ୍ର ଆଲୋଚନା କଲାବେଳେ ତତ୍ସମ ଶବ୍ଦର ବହୁଳତା ପରିଦୃଷ୍ଟ ହୁଏ । ଗ୍ରନ୍ଥରେ ଏହିସବୁ ପ୍ରସଙ୍ଗ ବିଶେଷଭାବେ ସ୍ଥାପିତ ହୋଇଥିବାରୁ ଯୁଦ୍ଧପ୍ରଧାନ ଚତ୍ସମ ଶବ୍ଦାବଳୀଦ୍ୱାରା ପରିପୁଷ୍ଟ ହୋଇଅଛି ।

ଅନେକ ସ୍ଥଳରେ କେବଳ ତତ୍ସମ ଶବ୍ଦରାଜିକୁ ଯତିପାତ ନିୟମ ରଖି ସଜେଇ ଦିଆଯାଇଛି । ଏହି ଶବ୍ଦମାଳା ବେଳେ ବେଳେ ଗୋଟିଏ ଶବ୍ଦଦ୍ୱାରା, ଅନ୍ୟ ସ୍ଥଳରେ ଦୁଇ ବା ତତୋଽଧିକ ଶବ୍ଦଦ୍ୱାରା ଗ୍ରଥିତ ହୋଇଅଛି । ଯତିପାତ ଦ୍ୱାରା ଏହା ସୁଶ୍ରାବ୍ୟ ହୋଇଥିଲେ ହେଁ ଏହା କେବଳ ଲେଖକଙ୍କ ପାଣ୍ଡିତ୍ୟ ତଥା ଶବ୍ଦଜ୍ଞାନର ପରିଚୟ ଦିଏ । ଏହାକୁ ରଚନାଶୈଳୀର ଏକ ବୈଶିଷ୍ଟ୍ୟରୂପେ ଗ୍ରହଣ କରାଯାଇପାରେ ସତ, କିନ୍ତୁ ଏ ପ୍ରକାର ପ୍ରୟୋଗଦ୍ୱାରା ରଚନା ଅଯଥା କ୍ଳିଷ୍ଟ ହୋଇଯାଇଛି । କଥାର ସରଳତା ଓ ପ୍ରବାହ ଏହିସବୁ ଶବ୍ଦଦ୍ୱାରା ବ୍ୟାହତ ହୋଇ କଥାର ଗତିକୁ ଅଯଥା ମନ୍ଥର କରିଛି । ତତ୍ସମ ଶବ୍ଦାବଳୀ ପ୍ରତି ଲେଖକଙ୍କ ଅତ୍ୟଧିକ ଆଗ୍ରହ ଥିବାରୁ ଲେଖକ ସମସ୍ତ ସମୟରେ ସଂସ୍କୃତ ଶ୍ଳୋକର ବ୍ୟବହାର କରିଛନ୍ତି । ଉଦାହରଣ ସ୍ୱରୂପ ଭୁବନେଶ୍ୱରୀ ସ୍ତୋତ୍ରକୁ ଗ୍ରହଣ କରାଯାଇପାରେ ।

''ଉଦ୍ୟ ଦିନକର ଦ୍ୟୁତି ମିନ୍ଦୁକିରୀଟାଂ
ତୁଙ୍ଗ କୁମ୍ଭଂ ନୟନତ୍ରୟମୁକ୍ତାମ୍

Digitized by srujanika@gmail.com

ସ୍ମେର ମୁଖୀଂ ବରଙ୍କୁଶପାଶାଭୀତିକରାଂ
ପ୍ରଭଜେ ଭୁବନେଶ୍ୱରୀମ୍ ।”

ଏହି ପାଠ ଲିପିକାରମାନଙ୍କଦ୍ୱାରା ବିକୃତ ହୋଇଯାଇଥିଲେହେଁ ଲେଖକ ସଂସ୍କୃତ ଶ୍ଳୋକକୁ ସମ୍ପୂର୍ଣ୍ଣଭାବେ ଗ୍ରହଣ କରିଥିବା ଜଣାଯାଏ । ସେହିପରି ଶଙ୍କରାଚାର୍ଯ୍ୟଙ୍କ ମୋହମୁଦଗରରୁ ଗୋଟିଏ ପଂକ୍ତିର ପ୍ରଭାବ ଦେଖାଯାଇପାରେ ।

“ପୁନରପି ଜନନଂ ପୁନରପି ମରଣଂ
ପୁନରପି ଜନନୀଜଠରେ ଶୟନଂ”

ସେହିପରି ‘କେଚିଦ୍ ବଦନ୍ତି’, ‘ଯାବତ୍’ ‘ତାବତ୍’ର ବ୍ୟବହାରରେ ଲେଖକଙ୍କ ସଂସ୍କୃତ ମୋହ ପରିସ୍ଫୁଟ ।

ତତ୍ସମ ଶବ୍ଦ ପ୍ରୟୋଗ ପ୍ରତି ଲେଖକଙ୍କ ଅତ୍ୟଧିକ ମୋହ ଥିଲେହେଁ, ଗ୍ରନ୍ଥରେ ତଦ୍ଭବ ଶବ୍ଦର ସଂଖ୍ୟା କମ୍ ନୁହେଁ । ନରକ ଜୀର ହେବା ପ୍ରସଙ୍ଗ ବର୍ଣ୍ଣନା କଲାବେଳେ ଲେଖକ ବହୁ ନରାଧମମାନଙ୍କର ଉଲ୍ଲେଖ କରିଛନ୍ତି । ସେସବୁରେ ଲେଖକ ଗାଁଗହଳରେ ପ୍ରଚଳିତ ଶବ୍ଦଙ୍କ ସହ ପରିଚିତ ଥିବା ଜଣାଯାଏ । ଏକାଧିକମେ ନରାଧମମାନଙ୍କର ଗଣନା ଓ ନିରୂପଣବାରେ ସେମାନଙ୍କ ଦୁର୍ଦ୍ଦଶା ହାସ୍ୟରସର ଉଦ୍ରେକ କରିଥାଏ । ନିମ୍ନାଙ୍କିତ ପଂକ୍ତିସବୁ ଏହି ପ୍ରକାର ଶୈଳୀର ଉତ୍କୃଷ୍ଟ ଉଦାହରଣ ।

“କେ ବିଜୟା ବଳେ ଅତି ଗହଳି ଘୁଡ଼ି ଖାଇ
ଖୋଡ଼ ଧୋଉଅଛନ୍ତି ।
କେ ଜନଗହଳେ ଧନବହଳେ ହାତ ଆଣ୍ଠୁଳାଏ
ବାଣ୍ଟୁଅଛନ୍ତି ।
କେ କରୁଣ ସେନ ଗଣ୍ଡି ବଳତା ଏକେ ଆରକେ
କାଟୁଅଛନ୍ତି ।
କେ ଛେନା ଚଡ଼ପା ସନ୍ଦେଶ ଉପତ ପାଇ
ଝିଣ୍ଟୁଅଛନ୍ତି ।
କେ ବାଜିଶାଳେ ପଶି ବଡ଼ ବଡ ଘୋଡା ବାନ୍ଧୁ
ଚଢ଼ୁଅଛନ୍ତି ।
କେ କେଉ ନ ପାରି ଉଗାଳ ହୋଇ ଅବଶରେ ପଡ଼ି
ଗଡ଼ୁଅଛନ୍ତି ।
କେ ବାଟବାଟେ ପଶି ପନ୍ଥବାଟେ ବାହାର ହୋଇ
ଯାଉଅଛନ୍ତି ।

Digitized by srujanika@gmail.com

ଯେ ବଳବନ୍ତ ଲେଖକଙ୍କର ହାତେ ପଡ଼ି ଟାକର ଜନ୍ମଣୀ ଶୁଦ୍ଧା
ଖାଉଅଛନ୍ତି ।

ଭୀମାନନ୍ଦ ଯୋଗୀର ଭଣିତାରେ ମଧ୍ୟ ତଦ୍ଭବ ଓ ଦେଶଜ ଶବ୍ଦାବଳୀର ବହୁଳତା ପରିଲକ୍ଷ୍ୟ ହୁଏ । ସେଥି ମଧ୍ୟରୁ କୁକୁଡ଼ା, ଦୂଆଡ଼, ପାଇକ, ଶିଖର, ହାଟ, ମଞ୍ଚି, ଦୁଧ, ଜୁଆଳ, ଗୋଡ଼, ଭୁଆଇ ପ୍ରଭୃତି ଦେଶଜ ଶବ୍ଦ ବିଶେଷଭାବେ ପ୍ରଣିଧାନ ଯୋଗ୍ୟ । ଯୁଦ୍ଧଯାତ୍ରାବେଳେ ଧ୍ୱନି ଅନୁକରଣାତ୍ମକ ଶବ୍ଦସବୁ ଭକ୍ତଙ୍କର ରସ ସୃଷ୍ଟି କରିବାରେ ବିଶେଷ ସହାୟକ । ଖେଁ, ଖେ ଫେଁ ଫେଁ, ରେରେକାର, ହୁଁକାର ଝଡ଼ ଇତ୍ୟାଦି । ଲେଖକ ମଧ୍ୟ ପାର୍ସୀଭାଷାର ମୁଗଲ ଓ କମର ଶବ୍ଦ ବ୍ୟବହାର କରିଛନ୍ତି । ଦରବେଶ୍ ଓ ଦରହାସ ମଧ୍ୟ ସେହି ଶ୍ରେଣୀର ଶବ୍ଦ ।

ନାରାୟଣ ଦାସଙ୍କ ବାକ୍ୟଗଠନ ପଦ୍ଧତିରେ ପ୍ରାଚୀନତାର ବହୁ ଲକ୍ଷଣ ଦେଖିବାକୁ ମିଳେ । ଡ଼କ୍ଟର କରୁଣାକର ସେଥି ମଧ୍ୟରୁ ଦ୍ୱିତୀୟା ବହୁବଚନରେ 'ନ୍ତ', ପଞ୍ଚମୀ ବିଭକ୍ତିରେ ତହିଁ ବା ତହୁଁ, ସପ୍ତମୀ ବିଭକ୍ତିରେ 'ହିଁ' ଓ ତହିଁ ପ୍ରଭୃତି ପ୍ରୟୋଗ ପୁଣି ଅମନାତ୍ୟ ପେଖିଲେ, ସ୍ରୋତ୍ରେ, 'ପବନେ କରି' 'ମଦାଙ୍ଗ' ପ୍ରଭୃତି ପ୍ରାଚୀନ ଶବ୍ଦ ପ୍ରତି ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି । ଏହା ବ୍ୟତୀତ ନିମ୍ନରେ ଉଦ୍ଧୃତ କେତେକ ବାକ୍ୟଯୋଜନା ପଦ୍ଧତି ନାରାୟଣ ଦାସଙ୍କ ବୈଶିଷ୍ଟ୍ୟ ଶୈଳୀର ପରିଚାୟକ ।

ସେ ପାଦେ ପ୍ରଣମ୍ୟ କରି ଧାଡ଼କାରେ ଅଇଲେ ।

ଏବେ ତୁମ୍ଭେ ବିଜେ କରିଥାଅ ।

ପୁଣ ପୁଣ କରି ଚିନ୍ତୁଅଛନ୍ତି ମନେ ମନେ ।

ଏସବୁ ପଂକ୍ତିରେ ଏବା 'କରି' ପ୍ରୟୋଗରେ ପ୍ରାଚୀନତା ନାହିଁ । କିନ୍ତୁ—

୧— ଗୁରୁ ଅଧିକ ଜ୍ଞାନ ଜାଣିବାକୁ କରି ମହାଭୂତ ପରମେଶ୍ୱରଙ୍କୁ ବୋଲି । (ପୃ.୧୦୧)

୨— ପୁତ୍ର ସ୍ତୁତିଏ କରି କେ ମୋତେ ଡାକନ୍ତି । (ପୃ.୫୧)

୩— ତ ସେ ଜାତସ୍ୱର ସବୁ କରି । ଅମଳ ରୁଦ୍ରାକ୍ଷ ତୁଳସୀ ପୁଷ୍ପଚନ୍ଦନ ଶଙ୍ଖ ସ୍ଫଟିକ ପ୍ରବାଳାଦି କରି ମାଳାମାନେ ବକ୍ଷସ୍ଥଳ ପର୍ଯ୍ୟନ୍ତ ଲମ୍ବନ୍ତେ କେମନ୍ତ ଶୋଭା ପାଉଅଛନ୍ତି କି ? (ପୃ: ୪୧)

ପ୍ରକୃତ ଆବାର 'କରି' ବ୍ୟବହାରରେ ପ୍ରାଚୀନତାର ଚିହ୍ନ ଅଛି । ସେହିପରି ଚକ୍ଷୁ ପାପନ୍ତା ମଣିମାନେ (ପୃ.୧୦୫), ଯୋଗୀଙ୍କ 'ପୂଜା କଲ ପ୍ରାୟେକ' (ପୃ.୨୩),

Digitized by srujanika@gmail.com

ଶୋଭା ପାନ୍ତା ହୋଇଅଛି (ପୃ.୧୧୯)। ଚଳନ୍ତା ପବନ (ପୃ.୧୧୮), ଉଡ଼ନ୍ତା ପକ୍ଷବାଣ (ପୃ.୧୦୩), ଅମୃତ ଫେନ ସମ ଶଯ୍ୟାଏ ନିର୍ମାଣ କରି ଅଛି (ପୃ.୨୯)। ରୁଆଇ ପଠିଆଇବାର, ଦେଖିବାର (ପୃ.୧୧୭), ଦର୍ପଣ ଶିଳାରେ ବନ୍ଧାଇଲି ହୋଇ-ଅଛି (ପୃ ୧୧୯, ଏମନ୍ତେ ବସ୍ତୁରନ୍ତେ, ସେ ପାଇକମାନେ କେମନ୍ତେ ଅଟନ୍ତି (ପୃ.୧୧୭, ଏକ ଅନେକ ଦ୍ରବ୍ୟ ପ୍ରତ୍ୟକ୍ଷେ ଦେଖିଲି, ଅଇଲେ ବୋଲି ପ୍ରଭୃତି ପ୍ରାଚୀନ ପ୍ରୟୋଗ ପରି ସହଳ (ପୃ ୧୨୪), ନଉଛାଳି (ପୃ.୧୨୦), ଫେରୁ (ପୃ.୧୧୫), ଆହ୍ଵାଦ (ପୃ.୧୧୩), କେତୁଣସି (ପୃ.୧୦୧), ପଇଠ (ପୃ.୧୦୧) ଚନ୍ଦ୍ରି ସନ୍ଧି, ଖଇ ବା ଭ୍ୟାଇ ପୃ ୧୦୦), ଏଥୁଁ, ଘାନ୍ତ୍ରଏ (ପୃ.୯୨), କେଣୁ (ପୃ.୬୭), ହାଦେ (ପୃ.୬୫) ଲେସ୍ତକ (ପୃ ୫୫), ବାଇଲେ (ପୃ.୫୧), ପିଠିଆଇଥିଲୁ (ପୃ.୩୮) ପ୍ରଭୃତି ପ୍ରାଚୀନ ଶବ୍ଦ ଗ୍ରନ୍ଥରେ ପ୍ରାଚୀନତାର ସ୍ପର୍ଶ ଆଣିବା ସଙ୍ଗେ ସଙ୍ଗେ ରଚନାଶୈଳୀରେ ନୂତନ ନୂତନ ଧରା ଉଦ୍ଭାବନ କରିଥାଏ।

ବ୍ରହ୍ମସୁଧାନିଧିର ରଚନାଶୈଳୀ ଲେଖକଙ୍କ ବ୍ୟକ୍ତିତ୍ୱର ପରିଚାୟକ। ବିଭିନ୍ନ ଶାସ୍ତ୍ର ବିଶେଷ କରି ଯୋଗ ଓ ବ୍ୟାକରଣରେ ପାରଦର୍ଶିତା ଲାଭକରିଥିବା ଲେଖକ ବ୍ରହ୍ମସୁଧାନିଧିକୁ ଯୋଗଶାସ୍ତ୍ରର ଶବ୍ଦାବଳୀଦ୍ୱାରା ଭାରାକ୍ରାନ୍ତ କରିଥିଲେହେଁ ସମାଜରେ ପ୍ରଚଳିତ ଶବ୍ଦାବଳୀକୁ ପରିତ୍ୟାଗ କରିପାରି ନାହାନ୍ତି। କାବ୍ୟୋଚିତ ଉପମାବଳୀ ବ୍ୟବହାର କରିବା ପାଇଁ ଲେଖକଙ୍କ ସାଧାରଣ ପ୍ରବୃତ୍ତି ଥିଲେହେଁ ସାଧାରଣ ଉପମାନ ସବୁକୁ ଆବଶ୍ୟକ ସ୍ଥଳେ ବ୍ୟବହାର କରିଛନ୍ତି। ବାକ୍ୟଗଠନପଦ୍ଧତିରେ ମଧ୍ୟ କୌଣସି ଗୋଟିଏ ପ୍ରକାର ଶୈଳୀ ଅନୁସୃତ ହୋଇ ନାହିଁ। କଥାକହିବାର ବିଭିନ୍ନ ପ୍ରକାର ଶୈଳୀକୁ ପ୍ରୟୋଗ କରି ଲେଖକ ବ୍ରହ୍ମସୁଧାନିଧିକୁ ଶୈଳୀର ଏକ ବିଶ୍ୱକୋଷରେ ପରିଣତ କରିଛନ୍ତି। ପ୍ରାଚୀନ ଯୁଗରେ ରଚନାଶୈଳୀର ଏ ପ୍ରକାର ବୈଚିତ୍ର୍ୟ ଆଦୌ ଦେଖିବାକୁ ମିଳୁ ନ ଥିଲା। ପଦ୍ୟାତ୍ମକ ଶୈଳୀରେ ଅଭ୍ୟସ୍ତ କବିମାନେ ଛନ୍ଦ ଉପରେ ଗୁରୁତ୍ୱ ଦେଉଥିବାରୁ କଥା କହିବାର ବିଭିନ୍ନ ଭଙ୍ଗୀ ସମ୍ବନ୍ଧରେ ସଚେତନ ନ ଥିଲେ। ନାରାୟଣ ଦାସ ଓଡ଼ିଆ ଭାଷାରେ କେବଳ ଯେ ଗଦ୍ୟଶୈଳୀର ପ୍ରବର୍ତ୍ତକ ତା ନୁହେଁ, ଭାଷାର ଶବ୍ଦସନ୍ଧାନରେ ଅପରାଜେୟ ମଧ୍ୟ।



Digitized by srujanika@gmail.com

# ରୁଦ୍ରସୁଧାନିଧିର ରଚନାକାଳ

ରୁଦ୍ରସୁଧାନିଧି ଓଡ଼ିଆ ଗଦ୍ୟ ସାହିତ୍ୟର ଏକ ଅଦ୍ୱିତୀୟ ଗ୍ରନ୍ଥ । କେବଳ ଓଡ଼ିଆ ଭାଷା ନୁହେଁ, ଭାରତର ଅନ୍ୟ ପ୍ରାନ୍ତୀୟ ଭାଷାରେ ମଧ୍ୟ ଏପରି କଥାଗ୍ରନ୍ଥ ରଚିତ ହୋଇ ନ ଥିଲା । ସଂସ୍କୃତର କାଦମ୍ବରୀ କଥା ସରିତ ସାଗର ପ୍ରଭୃତି କଥାଗ୍ରନ୍ଥକୁ ବାଦ ଦେଲେ ରୁଦ୍ର ସୁଧାନିଧି ହେଉଛି ଭାରତୀୟ କଥା ସାହିତ୍ୟର ପ୍ରକୃତରେ ଅନୁପମ ବିଦ୍ୟାପତିଙ୍କ କୀର୍ତ୍ତିଲତାରେ ଗଦ୍ୟାଂଶ ଥିଲେ ହେଁ ଏହା ଏକ କାବ୍ୟଗ୍ରନ୍ଥ । 'ହିତ୍ରବ୍ୟତ୍ତ ପ୍ରକରଣ'ର କଥାଭାଗ ଅତି ଗୌଣ । ପ୍ରକୃତରେ ଦେଖିଲେ ରୁଦ୍ରସୁଧାନିଧିର ଯୋଡ଼ି ନାହିଁ । ଏଥିରେ ପ୍ରତିପାଦିତ ବେଦାନ୍ତର କେବଳୋଽହଂ ପରି ଏହା ହେଉଛି, 'ଏକୋଽହଂ ଦ୍ୱିତୀୟୋ ନାସ୍ତି' । ଅଥଚ ନିର୍ଦ୍ଦିଷ୍ଟ ଭାବରେ ଏହି ଗ୍ରନ୍ଥର କାଳ ନିରୂପଣ କରିବା ସହଜ ନୁହେଁ । ଏ କଥା ସତ୍ୟ ଯେ ଗ୍ରନ୍ଥ ମଧ୍ୟରେ ଲେଖକଙ୍କ ଆବିର୍ଭାବ ସମୟ ସମ୍ବନ୍ଧରେ କୌଣସି ପ୍ରତ୍ୟକ୍ଷ ପ୍ରମାଣ ନାହିଁ । ହୁଏ ତ ଗ୍ରନ୍ଥ ଶେଷରେ ସେ କିଛି ଦେଇଥିବେ । କିନ୍ତୁ ଗ୍ରନ୍ଥ ଅସମ୍ପୂର୍ଣ୍ଣ ହେତୁ ଏହା ସବୁଦିନ ପାଇଁ ଅନ୍ଧାରରେ ରହିଗଲା । ପ୍ରତ୍ୟକ୍ଷ ପ୍ରମାଣ ନ ଥିଲେ ହେଁ ଗ୍ରନ୍ଥ ମଧ୍ୟରେ ବହୁ ପରୋକ୍ଷ ପ୍ରମାଣ ଦେଖିବାକୁ ମିଳିଥାଏ । ସେସବୁକୁ କ୍ରମରେ ବିଶ୍ଳେଷଣ କରି ରୁଦ୍ରସୁଧାନିଧିର ଆନୁମାନିକ ସମୟ ସ୍ଥିର କରିବା ପାଇଁ ଚେଷ୍ଟା କରାଯାଇଛି ।

ରୁଦ୍ରସୁଧାନିଧିର ସମ୍ପାଦକ ଡକ୍ଟର କରୁଣାକର କର ଏହାର ରଚନାଶୈଳୀକୁ ପରୀକ୍ଷା କରି କାଳ ନିର୍ଦ୍ଧାରଣ କରିବାକୁ ଚେଷ୍ଟା କରିଛନ୍ତି । ତାଙ୍କ ମତରେ "ନାରାୟଣାନନ୍ଦ ସାରଳାଦାସଙ୍କ ପରବର୍ତ୍ତୀ ଅର୍ଥାତ୍ ଚୈତନ୍ୟଙ୍କ ଓଡ଼ିଶା ଆଗମନ ପୂର୍ବରୁ ଅବଧୂତ ନାରାୟଣାନନ୍ଦ ରୁଦ୍ରସୁଧାନିଧି ରଚନା କରିଥିଲେ ।" ଓଡ଼ିଆ ସାହିତ୍ୟର ଅନ୍ୟ ଆଲୋଚକମାନେ ପ୍ରାୟ ଏହି ମତକୁ ଗ୍ରହଣ କରିଥିଲେହେଁ କୌଣସି ନୂଆ ଉପାଦାନ ବା ବଳିଷ୍ଠ ପ୍ରମାଣ ଉପସ୍ଥାପିତ କରିପାରି ନାହାନ୍ତି । ଶ୍ରୀଯୁକ୍ତ କେଦାର ନାଥ ମହାପାତ୍ର ରୁଦ୍ରସୁଧାନିଧିର ସମୟ ନିରୂପଣ (ନବରବି,୩ୟ ବର୍ଷ,୧୦ମ ସଂଖ୍ୟା, ୧୯୭୩) ପ୍ରବନ୍ଧରେ ଗ୍ରନ୍ଥ ମଧ୍ୟରେ ଉଲ୍ଲିଖିତ ଥିବା କେତେକ ଐତିହାସିକ ବ୍ୟକ୍ତି ଓ କେତେକ ପ୍ରଖ୍ୟାତ ଗ୍ରନ୍ଥ ସାହାଯ୍ୟରେ ଗ୍ରନ୍ଥର ରଚନାକାଳ ସମ୍ବନ୍ଧରେ ନୂତନ ଆଲୋକପାତ କରିଛନ୍ତି । ସେ ଯେଉଁ ବ୍ୟକ୍ତିମାନଙ୍କର ଆଲୋଚନା କରିଛନ୍ତି, ସେମାନେ ହେଲେ ଉଦୟନ ଆଚାର୍ଯ୍ୟ ଓ ଗୋରଖନାଥ । ଗ୍ରନ୍ଥଗୁଡ଼ିକ ହେଉଛି ପାଣିନି, ଶାକଟାୟନ, ଶେଷନାଗ ମହେଶ୍ୱର, ଜୁମର, ବର୍ଦ୍ଧମାନ ପ୍ରଭୃତି ବ୍ୟାକରଣ ମନୁସ୍ମୃତି

---

୧— ପ୍ରାଚୀନ ସାହିତ୍ୟ'ରେ ପ୍ରକାଶିତ 'ରୁଦ୍ର ସୁଧାନିଧିର ରଚନାକାଳ' ପ୍ରବନ୍ଧର ସମୟ ସୀମାକୁ ଏଥିରେ ଆହୁରି ସୀମିତ କରି ଦିଆଯାଇଛି ।

Digitized by srujanika@gmail.com

ଯାଜ୍ଞବାଲଦ୍ୟ ସ୍ମୃତି ଶୃଙ୍ଗାରଷଟ୍‌କ ସ୍ମୃତି, ବୃହସ୍ପତି ସ୍ମୃତି, ନାଟ୍ୟଶାସ୍ତ୍ର, ପିଙ୍ଗଳ ଓ କୌତୁକ ଚନ୍ଦ୍ରାମଣି । ଉଦୟନ ଆଚାର୍ଯ୍ୟ ରୁଦ୍ରସୁଧାନିଧିର ରଚୟିତା । ସେ ବହୁଭାଷା ବିଦ୍ୟାପ୍ରବୀଣ । ଶ୍ରୀଯୁକ୍ତ ମହାପାତ୍ରଙ୍କ ମତରେ ଉଦୟନ ଆଚାର୍ଯ୍ୟ ହେଉଛନ୍ତି, ଗଙ୍ଗଯୁଗର ଶ୍ରେଷ୍ଠକବି' ତଥା ପ୍ରଥମ ଅନଙ୍ଗଭୀମ ଦେବଙ୍କ (୧୧୭୨-୧୧୯୮) ସଭାପଣ୍ଡିତ । ଗୀତ ଗୋବିନ୍ଦର 'ଭାବ ବିଭାବରୀ' ଓ ନୈଷଧୀୟ ଚରିତ ମହାକାବ୍ୟର 'ଉଦୟନକର' ଟୀକାର ପ୍ରଣେତା । ପାଟାଗ୍ରାମଗଡ଼ଚଣ୍ଡୀ ନିଆଲୀ ଶାସନରେ ଅବସ୍ଥିତ ଶୋଭନେଶ୍ୱର ମନ୍ଦିର ଶିଳାଲେଖ ଏବଂ ଭୁବନେଶ୍ୱରସ୍ଥ ମେଘେଶ୍ୱର ମନ୍ଦିର ଶିଳାପ୍ରଶସ୍ତି ତାଙ୍କର ଅକ୍ଷୟ କୀର୍ତ୍ତି । ଶ୍ରୀଯୁକ୍ତ ମହାପାତ୍ର ଅନୁମାନ କରନ୍ତି ଯେ ଏହି ଉଦୟନ ଆଚାର୍ଯ୍ୟ ହେଉଛନ୍ତି ରୁଦ୍ରସୁଧାନିଧି ଗ୍ରନ୍ଥର ଉଦୟନ ଆଚାର୍ଯ୍ୟ । ଶ୍ରୀଯୁକ୍ତ ମହାପାତ୍ରଙ୍କ ଅନୁମାନରେ ବହୁ ସତ୍ୟତା ଅଛି । ଅତୀତ ଯୁଗର ଜଣେ ବିଖ୍ୟାତ ପଣ୍ଡିତଙ୍କୁ ଅନ୍ୟ ଜଣେ ପଣ୍ଡିତ ସମ୍ମାନ ଦେବା ସ୍ୱାଭାବିକ । ତେବେ ବି ଏହା ଅନୁମାନ । ଏଥିରେ ଥିବା ଅନ୍ୟ ଚରିତ୍ରରୁ ଅତୀତକୁ ଖୋଜାଯାଇପାରେ । ଯେପରି ଅନଙ୍ଗ ପଦ୍ମାକର । ଉଦୟନ ଆଚାର୍ଯ୍ୟଙ୍କ ପରି ନାମ ସାଦୃଶ୍ୟରୁ ଏହାଙ୍କୁ ଅନଙ୍ଗଭୀମଦେବଙ୍କ ସହ ଚିହ୍ନିତ କରାଯାଇପାରେ । ତେବେ ଉଭୟେ ଅନଙ୍ଗଭୀମ ଓ ଉଦୟନ ଅଚାର୍ଯ୍ୟ ଦ୍ୱାଦଶ ଶତାବ୍ଦୀର ଶେଷଭାଗର ବ୍ୟକ୍ତି । ଲେଖକ ଅତୀତରୁ ଏସବୁ ଚରିତ୍ରକୁ ଖୋଜି ନିଜ ଗ୍ରନ୍ଥକୁ ସଜେଇଥିବା ଅସମ୍ଭବ ନୁହେଁ । ଏହି ଅନୁମାନ ଉପରେ କେବଳ ଏତିକି କୁହାଯାଇପାରେ ଯେ ରୁଦ୍ରସୁଧାନିଧି ଦ୍ୱାଦଶ ବା ତ୍ରୟୋଦଶ ଶତାବ୍ଦୀ ପରେ ରଚିତ ହୋଇଥିବ ।

ତାଙ୍କ ଆଲୋଚନାର ଦ୍ୱିତୀୟ ବ୍ୟକ୍ତି ହେଉଛନ୍ତି ପିଷରୁର ଗୋରେଟନ ଥ । ଉଦୟନ ଆଚାର୍ଯ୍ୟଙ୍କ ପରି ସେ ମଧ୍ୟ ଦ୍ୱାଦଶ ଶତାବ୍ଦୀର ବ୍ୟକ୍ତି । ତେଣୁ ତାଙ୍କ ଉଲ୍ଲେଖରୁ ରୁଦ୍ରସୁଧାନିଧିର ରଚନାକାଳ ସମ୍ବନ୍ଧରେ କିଛି ନୂଆ ତଥ୍ୟ ମିଳେ ନାହିଁ, କେବଳ ପୂର୍ବମତ ପ୍ରତିଷ୍ଠିତ ହୋଇଥାଏ ।

ଗ୍ରନ୍ଥ ମଧ୍ୟରେ ଥିବା ବହୁନ୍ତ ପ୍ରସିଦ୍ଧ ଗ୍ରନ୍ଥ ମଧ୍ୟରୁ ସେ ବିଶେଷ କରି ପ୍ରାକୃତ ପିଙ୍ଗଳ ଓ କୌତୁକ ଚନ୍ଦ୍ରାମଣିର ଆଲୋଚନା କରିଛନ୍ତି । ତାଙ୍କ ମତରେ ପ୍ରାକୃତ ପିଙ୍ଗଳର ରଚନାକାଳ ହେଉଛି ପଞ୍ଚଦଶ ଶତକର ପ୍ରଥମ ଭାଗ । ନାରାୟଣାନନ୍ଦ ଏହି ଗ୍ରନ୍ଥକୁ ରାଜକୁମାରଙ୍କ ପାଠ୍ୟପୁସ୍ତକ ତାଲିକାଭୁକ୍ତ କରିଥିବାରୁ ସେ ନିଶ୍ଚିତ ରୂପେ ୧୪୨୫ ଖ୍ରୀ:ର ପରବର୍ତ୍ତୀ କାଳର ବ୍ୟକ୍ତି ରୂପେ ଅନୁମାନ କରାଯାଇପାରେ । ସେହିପରି ଅନ୍ୟ ଗ୍ରନ୍ଥଟି ହେଉଛି କୌତୁକ ଚନ୍ଦ୍ରାମଣି । ଏହି ଗ୍ରନ୍ଥର ପ୍ରଣେତା ରୂପେ ଦୁଇ ଜଣ ପ୍ରସିଦ୍ଧି ଲାଭ କରିଛନ୍ତି । ପ୍ରଥମ ବ୍ୟକ୍ତି ହେଉଛନ୍ତି ଶ୍ରୀନାଥ ଓ ଦ୍ୱିତୀୟ ବ୍ୟକ୍ତି ହେଉଛନ୍ତି ରାଜାଧିରାଜ ପ୍ରତାପରୁଦ୍ରଦେବ । ଶ୍ରୀନାଥଙ୍କ ସମସ୍ତ ବିଷୟରେ କିଛି ଉପାଦାନ ମିଳେ ନାହିଁ । ଶ୍ରୀ ମହାପାତ୍ର ମଧ୍ୟ ଏହି ଗ୍ରନ୍ଥକୁ ଆଲୋଚନା କରି ନାହାନ୍ତି । ତାଙ୍କ ମତରେ

Digitized by srujanika@gmail.com

ପ୍ରତାପରୁଦ୍ରଙ୍କ ରଚିତ 'କୌତୁକ ଚିନ୍ତାମଣି' ୧୫୦୯ ଖ୍ରୀ· ପୂର୍ବରୁ ସାମ୍ରାଜ୍ୟରେ ପୂର୍ଣ୍ଣ ଶାନ୍ତି ଥିବା ଅବସ୍ଥାରେ ରଚିତ ହୋଇଥିଲା । ନାରାୟଣାନନ୍ଦ ଉକ୍ତ ଗ୍ରନ୍ଥରୁ ବିଷୟ ଆହରଣ କରିଥିଲେ. ରୁଦ୍ରସୁଧାନିଧି ଗ୍ରନ୍ଥ ୧୫୦୯ ଖ୍ରୀ: ପରେ ରଚିତ ହୋଇଥିଲା ।

ପ୍ରସଙ୍ଗକ୍ରମେ ଗ୍ରନ୍ଥ ମଧ୍ୟରେ ଥିବା ଆଉ ଦୁଇଟି ଗୁରୁତ୍ୱପୂର୍ଣ୍ଣ ଉଲ୍ଲେଖ ପ୍ରତି ସେ ଆଲୋଚକମାନଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି । ସେ ଦୁଇଟି ଉଲ୍ଲେଖ ହେଲା- ଭୁବନେଶ୍ୱର ଓ ମୁଗଲ । ଶ୍ରୀ ମହାପାତ୍ରଙ୍କ ମତରେ ଭୁବନେଶ୍ୱର ଶବ୍ଦ ପ୍ରଥମ ଥର ପାଇଁ ଗଜପତି ପୁରୁଷୋତ୍ତମ ଦେବଙ୍କ ୩୪ ଅଙ୍କରେ ଖୋଦିତ ଶିଳାଲେଖରେ ସ୍ଥାନ ପାଇଥିଲା । ସେହି ଶିଳାଲେଖଟି ହେଉଛି 'ବୀର ଶ୍ରୀ ଗଜପତି ଗଉଡେଶ୍ୱର ପ୍ରତାପ ପୁରୁଷୋତ୍ତମଦେବ ମହାରାଜାଙ୍କର ବିଜେ ରାଜ୍ୟେ ସମସ୍ତ ୩୪ ଅଙ୍କ ଶ୍ରାଦ୍ଧ ଭୁବନେଶ୍ୱର ଦେହଲେ ଜଗମତ ମହାନ୍ତି ସେ ବନ୍ଦୀ ପଡ଼ିଥିଲା ତାହାଙ୍କୁ ଏହି ଭୁବନେଶ୍ୱର ଲିଙ୍ଗ ପାଇକଲ ।'' ଏହି ଲେଖର ସମୟ ହେଉଛି ( ୧୪୯୩—୧୪୯୪ ଖ୍ରୀ· ) । ତେଣୁ କବିବରଙ୍କ ଭୁବନେଶ୍ୱର ଉଲ୍ଲେଖ କରିଥିବା ଯୋଗୁଁ ନାରାୟଣ ଦାସ ଏହାର ପରବର୍ତ୍ତୀ ଲେଖକ ହେବା ଅନୁମେୟ ।

ରୁଦ୍ରସୁଧାନିଧି ପାଇଁ କନ୍ୟା ସନ୍ଧାନ କରିବାକୁ ଯାଇଥିବା ଦୂତ ଯେଉଁ ରାଜ୍ୟମାନଙ୍କୁ ଯାଇଥିବା ଦୂତ ଗୁଣନିଧାନ ମୁଗଲ ସହ ସିନ୍ଧୁ ମହାସିନ୍ଧୁ, ଶ୍ରୀମପାଟଣା ପ୍ରଭୃତି ରାଜ୍ୟର ଉଲ୍ଲେଖ କରିଛନ୍ତି । ଶ୍ରୀ ମହାପାତ୍ରଙ୍କ ମତରେ ପ୍ରସିଦ୍ଧ ଜ୍ୱାଳାମୁଖୀ ଦେବୀର ପୀଠ ଶ୍ରୀମ ପାଟଣା (ଶ୍ରୀମ ନଗର) ପଞ୍ଜାବର କାଙ୍ଗ୍ରା ନଗରରେ ଅବସ୍ଥିତ । ନାରାୟଣାନନ୍ଦ ସିନ୍ଧୁ ମହାସିନ୍ଧୁ ଶ୍ରୀମପାଟଣା ନିକଟରେ ମୁଗଲ ରାଜ୍ୟର ଅବସ୍ଥିତି ନିର୍ଦ୍ଦେଶ କରିଥିବାରୁ ସ୍ପଷ୍ଟ ଜଣାଯାଏ ଯେ ବାବରଙ୍କ ରାଜତ୍ୱ ପୂର୍ବରୁ (୧୫୨୬ ଖ୍ରୀ:) ମୋଗଲ ମାନେ ପଶ୍ଚିମ ପଞ୍ଜାବରେ ଅବସ୍ଥାନ କରୁଥିବା ସମୟରେ ଉକ୍ତ ଗ୍ରନ୍ଥ ରଚିତ ହୋଇଥିଲା ।

ଶ୍ରୀ ମହାପାତ୍ର ବିଭିନ୍ନ ପରୀକ୍ଷା ପରେ ରୁଦ୍ରସୁଧାନିଧି ରଚନାକାଳ ୧୫୦୯ ଖ୍ରୀ ପରେ ଓ ୧୫୨୬ ଖ୍ରୀ: ପୂର୍ବରୁ ରଚିତ ହୋଇଥିବା ଅନୁମାନ କରିଛନ୍ତି ।

ଏତଦ୍‌ବ୍ୟତୀତ' ଉଲ୍ଲେଖ ବ୍ୟତୀତ ରୁଦ୍ରସୁଧାନିଧିରେ ଆଉ ଦୁଇଟି ପରୋକ୍ଷ ପ୍ରମାଣ ମିଳେ । ପ୍ରଥମଟି ହେଉଛି ଉପଦ୍ୟାକରଣ ଗ୍ରନ୍ଥ କୌମୁଦୀର ଉଲ୍ଲେଖ । କୌମୁଦୀକୁ 'ପ୍ରକ୍ରିୟାଃ କୌମୁଦୀ' ରୂପେ ଗ୍ରହଣ କରାଯାଇପାରେ । ଏହାର ରଚନା କାଳ ୧୪୬୩ ଖ୍ରୀାବ୍ଦ । ତା ହେଲେ ରୁଦ୍ରସୁଧାନିଧି ୧୪୬୩ ଖ୍ରୀ: ପରବର୍ତ୍ତୀ କାଳରେ ରଚିତ ହୋଇଥିବା ଅନୁମାନ କରାଯାଇପାରେ । କୌମୁଦୀକୁ ଭଟ୍ଟୋଜୀ ଦୀକ୍ଷିତଙ୍କ "ସିଦ୍ଧାନ୍ତ

Digitized by srujanika@gmail.com

କୌମୁଦୀ" ରୂପେ ମଧ୍ୟ ଗ୍ରହଣ କରାଯାଇପାରେ । ଏହାର ରଚନାକାଳ ସପ୍ତଦଶ ଶତାବ୍ଦୀ । ତେଣୁ ରୁଦ୍ରସୁଧାନିଧି ସପ୍ତଦଶ ଶତାବ୍ଦୀରେ ରଚିତ ହୋଇଥିବା ମଧ୍ୟ ଅନୁମାନ କରାଯାଇପାରେ । କୌମୁଦୀ କୌଣସି ନିର୍ଦ୍ଦିଷ୍ଟ ଗ୍ରନ୍ଥକୁ ବୁଝାଉ ନ ଥିବାରୁ ଏହାକୁ ପ୍ରମାଣ ରୂପେ ଗ୍ରହଣ କରିବା ନିରାପଦ ନୁହେଁ । ତେବେ ଏଥିରୁ ଗୋଟିଏ କଥା କୁହାଯାଇପାରେ । ରୁଦ୍ରସୁଧାନିଧିର ଅନ୍ୟସବୁ ଉଲ୍ଲେଖ ୧୫୨୫ ଖ୍ରୀଷ୍ଟାବ୍ଦର ପୂର୍ବବର୍ତ୍ତୀ ହୋଇଥିବାରୁ ଏଥିରେ ଥିବା କୌମୁଦୀକୁ ପ୍ରକାଶ କୌମୁଦୀ ରୂପେ ଗ୍ରହଣକଲେ ଅସୁବିଧା ନାହିଁ । ଦ୍ୱିତୀୟ ଉଲ୍ଲେଖଟି ହେଉଛି ନାମକୀର୍ତ୍ତନ ପାଇଁ ରୁଦ୍ରସୁଧାନିଧିର ଉପଦେଶ । ଶ୍ରୀଚୈତନ୍ୟଙ୍କ ପ୍ରବର୍ତ୍ତିତ ମତର ଏହା ହେଉଛି ଏକ ପ୍ରଧାନ ଉପଦେଶ ।

ଓଡ଼ିଶାକୁ ଶ୍ରୀଚୈତନ୍ୟଙ୍କ ଆଗମନ ପରେ ଏହି ମତର ପ୍ରାଧାନ୍ୟ ବୃଦ୍ଧି ପାଇଥିଲା । ଶ୍ରୀଚୈତନ୍ୟ ୧୫୧୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶାକୁ ଆସିଥିଲେହେଁ ୧୫୧୬ ଖ୍ରୀଷ୍ଟାବ୍ଦ ପରେ ତାଙ୍କ ମତ ପ୍ରଚଳିତ ହୋଇଥିଲା । ୧୫୧୬ ଖ୍ରୀଷ୍ଟାବ୍ଦ ପରେ ପ୍ରାୟ ୨୦ ବର୍ଷ ଧରି ପୁରୁଷୋତ୍ତମ କ୍ଷେତ୍ରକୁ ଧର୍ମକ୍ଷେତ୍ର ରୂପେ ଗ୍ରହଣ କରୁଥିବାରୁ ଓଡ଼ିଶାରେ ତାଙ୍କ ମତ ପ୍ରଚାର ପାଇଁ ବିଶେଷ ସୁବିଧା ହୋଇଥିଲା । ସେ ଦୃଷ୍ଟିରୁ ନାରାୟଣ ଦାସଙ୍କ ପରି ପଣ୍ଡିତ ଲୋକ ତାଙ୍କ ମତକୁ ନିଜ ଗ୍ରନ୍ଥରେ ଲିପିବଦ୍ଧ କରିଥିବା ଅସ୍ୱାଭାବିକ ନୁହେଁ । କବି ଉତ୍ତମ ଜୀବଦେବ ଆଚାର୍ଯ୍ୟଙ୍କ ଭକ୍ତିଭାଗବତ ମଧ୍ୟ ଏଥିରେ ବିଭିନ୍ନ ମତକୁ ଖଣ୍ଡନ କରି ବୈଷ୍ଣବମତକୁ ପ୍ରତିଷ୍ଠା କରିବାର ଉଦ୍ୟମ ଥିଲେ ହେଁ ଏଥିରେ ଥିବା ନାମସଂକୀର୍ତ୍ତନର ମାହାତ୍ମ୍ୟ ୧୫୧୬ ଖ୍ରୀଷ୍ଟାବ୍ଦର ପରବର୍ତ୍ତୀ କଥା ।

ଏହି ସବୁ ଦୃଷ୍ଟାନ୍ତ ଓ ଅନୁମାନରୁ ଦୁଇଟି ନିର୍ଦ୍ଦିଷ୍ଟ ପ୍ରମାଣ ମିଳିଥାଏ । ପ୍ରଥମ ହେଉଛି ନାମକୀର୍ତ୍ତନର ଗୁରୁତ୍ୱ । ଶ୍ରୀଚୈତନ୍ୟଙ୍କର ଏହି ମତ ଓଡ଼ିଶାରେ ୧୫୧୬ ଖ୍ରୀଷ୍ଟାବ୍ଦ ପରେ ଲୋକପ୍ରିୟ ହୋଇଥିବ । ଦ୍ୱିତୀୟ ହେଉଛି, ମୁଗଲ ରାଜ୍ୟର ଅବସ୍ଥିତି । ୧୫୨୬ ଖ୍ରୀଷ୍ଟାବ୍ଦ ପରେ ମୁଗଲ ରାଜ୍ୟ କେବଳ ପଞ୍ଜାବ ରାଜ୍ୟରେ ସୀମିତ ହୋଇ ରହିପାରି ନ ଥିଲା । ତେଣୁ ସିନ୍ଧୁ ଓ ରାମନଗର ମଧ୍ୟରେ ଥିବା ମୁଗଲରାଜ୍ୟ ୧୫୨୬ ଖ୍ରୀଷ୍ଟାବ୍ଦର ପୂର୍ବ କଥା । ଏହି ଦୁଇଟି ପ୍ରମାଣକୁ ଆଖିଆଗରେ ରଖି ରୁଦ୍ରସୁଧାନିଧି ୧୫୧୬ ପରେ ଓ ୧୫୨୬ ପୂର୍ବରୁ ରଚିତ ହୋଇଥିବା ଅନୁମାନ କରାଯାଇପାରେ ।

ଏହି ସମସ୍ତ ନିର୍ଦ୍ଦିଷ୍ଟ କରିନେବା ପରେ ଗ୍ରନ୍ଥ ମଧ୍ୟରୁ ଆଉ କେତେକ ଅନୁମାନ ମନ ମଧ୍ୟରେ ସ୍ୱତଃ ଉଦିତ ହୁଏ । ସେଥିରୁ ପ୍ରଥମ ହେଉଛି ଧର୍ମଧ୍ୱଜ ରାଜା କଥା । ତାଙ୍କୁ ଲେଖକ କେବଳ ଯେ ଅତ୍ୟନ୍ତ ବୈଷ୍ଣବ କହିଛନ୍ତି, ତାହା ନୁହେଁ ତାଙ୍କ ରାଜ୍ୟଶାସନର ଯେଉଁ ଚିତ୍ର ଆଙ୍କିଛନ୍ତି ତାହା ପ୍ରତାପରୁଦ୍ରଙ୍କ ପରବର୍ତ୍ତୀ ଜୀବନର ଚିତ୍ର । ଶ୍ରୀଚୈତନ୍ୟ ପ୍ରାଣ ହେବା ପରେ ସେ ସାର୍ବଭୌମ ଓ ରାମାନନ୍ଦରାୟଙ୍କ ପ୍ରରୋଚନାରେ ରାଜକାର୍ଯ୍ୟ ପ୍ରତି ନିଲିପ୍ତ ହୋଇଯାଇଥିଲେ । ସେତେବେଳେ ଏ ଦେଶକୁ ପ୍ରକୃତରେ ରକ୍ଷା କରି-

Digitized by srujanika@gmail.com

ଅଳ୍ପ ବସ୍ତୁଙ୍କ ପ୍ରଦର୍ଶନ ଚଢ଼ । ଦୁଇ ପକ୍ଷରେ ଦୁଇ ପ୍ରତାପଶାଳୀ ରାଜାଙ୍କ ଆକ୍ରମଣର ଆଶଙ୍କା ନିରନ୍ତର ଲାଗି ରହିଥିଲେହେଁ ପ୍ରତାପରୁଦ୍ର ବୈଷ୍ଣବମାନଙ୍କ ବାହୁଚ୍ଛାୟା ତଳେ ଅତି ନିରାପଦରେ ନିଜ ବୈଷ୍ଣବତ୍ୱ ନିର୍ବାହ କରିପାରିଥିଲେ । କଥାଭିତରୁ ପ୍ରତାପରୁଦ୍ରଙ୍କୁ ଖୋଜିବା ସହଜ ନ ହେଲେ ହେଁ ଧର୍ମଧ୍ୱଜ ନାମରୁ ହିଁ ଯଥେଷ୍ଟ ସଙ୍କେତ ମିଳିଥାଏ ।

କାମାନନ୍ଦ ଯୋଗୀର ସେନାମାନେ ସୁଦର୍ଶନ ଚକ୍ରଦ୍ୱାରା ପରାଭୂତ ହୋଇ ଫେରିଯିବା ପରେ ଲେଖକ କହୁଛନ୍ତି ଯୋଦ୍ଧାଭୂତର ଦାଢ଼ୀ କଥା । ଭୂତ ତ ଭୂତ । ତା'ର ପୁଣି ଦାଢ଼ୀ । ଲେଖକ ତାକୁ ଯୁକ୍ତି ଦେଇ ଦ'ଥର କହୁଛନ୍ତି । ଅବଶ୍ୟ ଅଷ୍ଟାଦଶ ଶତାବ୍ଦୀର ଅଙ୍କିତ ବେତାଳ ଚିତ୍ରରେ ଲମ୍ବା ଦାଢ଼ୀ ଅଛି । ତେବେ ବି ଏହି ଦାଢ଼ୀ ଯେ ମୁସଲମାନ ସେନାର ଦାଢ଼ୀ, ଏ କଥା ଅସ୍ୱୀକାର କରିହୁଏ ନାହିଁ । 'ସ୍ତ୍ରୀମାନଙ୍କୁ ବଳପୂର୍ବେ ଭୋଗ କରୁଅଛନ୍ତି', ଉକ୍ତ ମୁସଲମାନମାନଙ୍କ ପାଇଁ ହିଁ ସତ୍ୟ ।

ଏହିଠାରେ ଥିବା କାମାନନ୍ଦ ଯୋଗୀ ପ୍ରସଙ୍ଗରେ କେବଳ ଶାସ୍ତ୍ରୀୟ କଥା ନାହିଁ । ଏଥିରେ ଅଛି ସେ ଯୁଗର ଲୋକକାହାଣୀର ପ୍ରଭାବ । ମହମ୍ମଦ ଜାୟସୀ କୃତ ପଦ୍ମାବତୀରେ ନାୟକ ଯୋଗୀ ବେଶରେ କନ୍ୟା ହରଣ କରିଥିବା ଅତି ପ୍ରସିଦ୍ଧ । କଥା ଭିତରେ ଯୋଗସାଧନାର ବର୍ଣ୍ଣନା କରିବା ପରମ୍ପରା ହିଁ ଜାୟସୀ ଆରମ୍ଭ କରିଥିଲେ । ଅବଶ୍ୟ ବଙ୍ଗଳାର ମୁସଲମାନ ସୁଲତାନ କନ୍ୟାହରଣ କରିବାକୁ ଆସିଥିବାର କୌଣସି ସୂଚନା ଇତିହାସରୁ ମିଳେ ନାହିଁ । ରାଜାଙ୍କ ଅନୁପସ୍ଥିତିରେ ମୁସଲମାନମାନଙ୍କର ଆକ୍ରମଣ ନିଶ୍ଚିତ ଭାବେ ଅମାତ୍ୟମାନଙ୍କୁ ବ୍ୟସ୍ତ କରିଥିବ । ରାଣୀମାନେ ନିରୁପାୟ ହୋଇ କାନ୍ଦିବାକୁ ଆରମ୍ଭ କରିଥିବେ । ମୁସଲମାନ ସେନା ବିଜୟୀ ହୋଇଥିଲେ କନ୍ୟାହରଣ ଯେ କରି ନ ଥାନ୍ତେ, ଏ କଥା ମଧ୍ୟ କହି ହେଉନାହିଁ । ସେମାନେ ପରାସ୍ତ ହୋଇ ଫେରିଗଲେ ଓ ପ୍ରତାପରୁଦ୍ରଙ୍କ କନ୍ୟା ଜଗନ୍ମୋହିନୀ ହେଲେ ବିଜୟନଗର ସମ୍ରାଟ କୃଷ୍ଣଦେବରାୟଙ୍କ ଅଙ୍କଶାୟିନୀ ।

ସତ କଥାକୁ ଘୋଡ଼େଇ କଥା କହିବା ହେଉଛି କଥାକାରର ପ୍ରକୃତ ଧର୍ମ । କଥାକାର ଇତିହାସ ଲୁଚେଇ ନାହିଁ । ଇତିହାସର ଚରିତ୍ରସବୁକୁ ଏପଟ ସେପଟ କରି ନାଁ ବଦଳେଇ ଦେଲେହେଁ ଇତିହାସକୁ ସେଥିରୁ ଖୋଜାଯାଇପାରେ । ଏହି ଦୃଷ୍ଟିରୁ ଦେଖିଲେ ପ୍ରତାପରୁଦ୍ର ଓ ରୁଦ୍ରସୁଧାନିଧିର ନାମ ସାଦୃଶ୍ୟ ଓ ଧର୍ମଧ୍ୱଜ ଓ ପ୍ରତାପରୁଦ୍ରଙ୍କ ବୈଷ୍ଣବୀୟ ଚରିତ ମଧ୍ୟରେ ଐତିହାସିକ ସତ୍ୟ ଲୁକ୍କାୟିତ ଭାବେ ଥିବା ଅନୁମାନ କରାଯାଇପାରେ । ରୁଦ୍ରରୂପୀ ପ୍ରତାପରୁଦ୍ର ଶେଷ ଜୀବନରେ ଅତ୍ୟନ୍ତ ବୈଷ୍ଣବ ହେଲା ପରି ଓ ରାଜକୀୟ ଗୁଡ଼ ବୈଷ୍ଣବ ଧର୍ମ ପ୍ରଚାରରେ ସାହାଯ୍ୟ କଲା ପରି ରୁଦ୍ରସୁଧାନିଧି ମଧ୍ୟ ପୂର୍ବଜନ୍ମରେ ରୁଦ୍ରଗଣ ଥିଲେହେଁ ଜନ୍ମ ପରେ ବାସୁଦେବ ଭକ୍ତ ପ୍ରତି ଆକୃଷ୍ଟ ହୋଇ ବୈଷ୍ଣବଧର୍ମ ପ୍ରଚାର କରିଥିଲେ ।

Digitized by srujanika@gmail.com

ସମୂହ ଦୃଷ୍ଟିରୁ ବିଗ୍ଭର କଲେ ଏହା ହିଁ ଥିଲା ଷୋଡ଼ଶ ଶତାବ୍ଦୀ ସମାଜର ପ୍ରତିଚ୍ଛବି । ସାଧକମାନଙ୍କ ଅଲୌକିକତା ନିକଟରେ ସାଧାରଣ ଲୋକେ ମୁଣ୍ଡ ନୁଆଁଇ ଦେଉଥିଲେ । ଅନ୍ୟ ପକ୍ଷରେ ସାଧାରଣ ଲୋକଙ୍କ ସରଳତାର ସୁଯୋଗ ନେଇ ସମାଜରେ ବାମାନନ୍ଦ ଯୋଗୀଙ୍କ ପରି ଭଣ୍ଡ ସାଧକମାନଙ୍କର ସଂଖ୍ୟା ବୃଦ୍ଧି ପାଇଥିଲା । ସେମାନେ ଶବ ସାକ୍ଷୀ ପଢ଼ି ବିଭିନ୍ନ ପ୍ରକାର ମନ୍ତ୍ରଗୁଟିକା ଶିଖି, ଭୂତ, ପିଶାଚ ଓ ଯୋଗୀ ସାଧନା କରି ଲୋକଙ୍କୁ ବିଭିନ୍ନ ଭାବେ ପ୍ରତାରିତ କରୁଥିଲେ । କେବଳ ସାଧାରଣ ପ୍ରଜା ନୁହନ୍ତି, ରାଜା, ରାଜପୁତ୍ର, ମନ୍ତ୍ରୀ ଓ ମନ୍ତ୍ରୀପୁତ୍ରଙ୍କ ସଦୃଶ ସମ୍ଭ୍ରାନ୍ତ ବଂଶର ବିବେକୀ ଲୋକମାନେ ମଧ୍ୟ ସେମାନଙ୍କ କବଳରୁ ରକ୍ଷାପାଇ ପାରୁ ନ ଥିଲେ । ସେଥିପାଇଁ ଷୋଡ଼ଶ ଶତାବ୍ଦୀର ସମସ୍ତ ସଚେତନ କବି ସେମାନଙ୍କ ରଚନାରେ ଏହି ଭଣ୍ଡ ସାଧୁଗୋଷ୍ଠୀଙ୍କ ମୁଖାଖୋଲି ସେମାନଙ୍କଠାରୁ ଦୂରେଇ ରହିବା ପାଇଁ ଉପଦେଶ ଦେଉଥିଲେ । କୌଣସି ଅଜ୍ଞାତ କବିକୃତ ଅମରକୋଷ, ବଳରାମ ଦାସଙ୍କ ବ୍ରହ୍ମାଣ୍ଡ ଭୂଗୋଳ, ଅଚ୍ୟୁତଙ୍କ ସୁଶଖାନି ପ୍ରଭୃତି ଗ୍ରନ୍ଥରେ ଏ ପ୍ରକାର ଚେତାବନୀ ବାରମ୍ବାର ଶୁଣିବାକୁ ମିଳିଥାଏ । ସାଧୁମାନଙ୍କ ଭଣ୍ଡତା ଓ କୁକର୍ମ ସମ୍ବନ୍ଧରେ ସାଧାରଣ ଲୋକେ କେବଳ ଯେ ସଚେତନ ଥିଲେ, ତାହା ନୁହେଁ, ବେଳ ହେଲେ ସେମାନଙ୍କୁ ବିରୋଧ କରୁଥିଲେ । ରୁଦ୍ରସୁଧାନିଧି ଗ୍ରନ୍ଥର କାପାଳିକ ପ୍ରତି କୈବର୍ତ୍ତମାନଙ୍କର ଘୃଣାଭାବ ପ୍ରକାଶ ପାଇଥିଲେ ହେଁ ଏହା ହିଁ ଥିଲା ସାଧାରଣ ଲୋକଙ୍କ ମନର କଥା । ଅଥଚ ଛାଲରେ ବସି ନଦୀ ପାରି ହେବା, ଶୂନ୍ୟେ ଶୂନ୍ୟେ ଆସିବା ପ୍ରଭୃତି ଘଟଣାରେ ଏ ଯୁଗର ବହୁ ଲୋକଙ୍କ ପରି ସେ ଯୁଗର ଲୋକେ ମଧ୍ୟ ଅଭିଭୂତ ହୋଇଯାଉଥିଲେ ଓ ଭଣ୍ଡ ସାଧୁମାନଙ୍କ ଭଣ୍ଡତା ଅବାଧ ଗତିରେ ସମାଜରେ ପ୍ରସ୍ତୁତ ହେଉଥିଲା ।

ରୁଦ୍ରସୁଧାନିଧି ଗ୍ରନ୍ଥରେ ଅତ୍ୟଧିକ ତାନ୍ତ୍ରିକତାର ପ୍ରଭାବ ପ୍ରକାରାନ୍ତରେ ଷୋଡ଼ଶ ଶତାବ୍ଦୀର କଥା । ସେହି ସମୟରେ ରଚିତ ନରସିଂହ ସେଣଙ୍କ ପରମଲାରେ ଏହି ପ୍ରବୃତ୍ତି ଦେଖିବାକୁ ମିଳେ । ସାରଳାଦାସଙ୍କ ମହାଭାରତରେ ମଧ୍ୟ ଏହି ପ୍ରବୃତ୍ତି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପଞ୍ଚସଖା ସାହିତ୍ୟ ତଥା ଅନ୍ୟାନ୍ୟ ସନ୍ଥଙ୍କ ରଚନା ପରି ଏଥିରେ ସଂଯୋଗର ବିଭିନ୍ନ ପ୍ରକ୍ରିୟା ଗୋଲ୍ ହାଟ, କାଉଁରି ମଣ୍ଡଳ, ବଙ୍କାନାଳ, ଶ୍ରୀ ହଟ ପାଟଣା, ଜଳନ୍ଧର ବିଦ୍ୟା ଓ ବିଭିନ୍ନ ମନ୍ତ୍ର କଥାର ଉଲ୍ଲେଖ ଦେଖିଲେ ଏହା ଯେ ସେହି ସମୟରେ ରଚିତ ହୋଇଥିଲା ଏହି ଧାରଣା ଦୃଢ଼ୀଭୂତ ହୁଏ । ଏଦୃଷ୍ଟିରୁ ବିଚାର କଲେ ରୁଦ୍ରସୁଧାନିଧି ଷୋଡ଼ଶ ଶତାବ୍ଦୀ ଖ୍ରୀ: (୧୫୧୭-୧୫୬୫) ମଧ୍ୟରେ ରଚିତ ହୋଇଥିବା ସମ୍ଭବପର ।

Digitized by srujanika@gmail.com

# ଓଡ଼ିଶାର ଧର୍ମପରମ୍ପରା

# ଓ

# ରୁଦ୍ରସୁଧାନିଧି

ରୁଦ୍ରସୁଧାନିଧି ଏକ କଥାଗ୍ରନ୍ଥ ହେଲେହେଁ ଏଥିରେ କଥା ଅପେକ୍ଷା ଧର୍ମ ଆଲୋଚନା ବେଶୀ । ଏଥିରେ ଥିବା ଧର୍ମ ଆଲୋଚନାକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ—ମୁଖ୍ୟ ଓ ଗୌଣ ଧର୍ମ । ମୁଖ୍ୟଧର୍ମ ଭାବେ ଲେଖକ ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମକୁ ଗ୍ରହଣ କରି ଶୈବ ଓ ଶାକ୍ତ ଅପେକ୍ଷା ବୈଷ୍ଣବ ଧର୍ମର ମହତ୍ତ୍ୱକୁ ବିଶେଷ ଭାବେ ପ୍ରତିପାଦିତ କରିଛନ୍ତି । ଗୌଣଧର୍ମ ଭାବେ ଲେଖକ ପ୍ରସଙ୍ଗକ୍ରମେ ହିନ୍ଦୁମତର ଷଡ଼ଦର୍ଶନ, ଜୈନ, ଧର୍ମ ସମ୍ପ୍ରଦାୟ (ପୃ-୪୭) ଓ ନାଥ ଧର୍ମ (ପୃ-୧୧୭)ର ଉଲ୍ଲେଖ କରିଛନ୍ତି । ଧର୍ମସବୁର ସବିଶେଷ ଆଲୋଚନା କରିବା ଫଳରେ କଥାର ପ୍ରବାହ ଗୌଣ ହୋଇଯାଇ ଧର୍ମ ଆଲୋଚନା ମୁଖ୍ୟ ହୋଇ-ଯାଇଛି । ଧର୍ମ ହେଉଛି ଏହାର ପୃଷ୍ଠଭୂମି । ଏଥିରେ ଥିବା ନାୟକ, ନାୟିକା ଓ ପ୍ରତିନାୟକ ଏକ ଏକ ସମ୍ପ୍ରଦାୟର ପ୍ରତିନିଧିତ୍ୱ କରି କଥାକୁ ଗତିଶୀଳ କରିଛନ୍ତି । ତେଣୁ ରୁଦ୍ରସୁଧାନିଧି ଗ୍ରନ୍ଥ ହେଉଛି କଥା ମାଧ୍ୟମରେ ଓଡ଼ିଶାରେ ପ୍ରଚଳିତ ଥିବା ବିଭିନ୍ନ ଧର୍ମପରମ୍ପରାର ଏକ ଆଲୋଚନାତ୍ମକ ଇତିହାସ । ନିମ୍ନରେ ବିଭିନ୍ନ ଧର୍ମର ପରମ୍ପରାକୁ ବିଶ୍ଳେଷଣ କରିବା ପାଇଁ ପ୍ରଚେଷ୍ଟା କରାଯାଇଛି ।

ଗ୍ରନ୍ଥର କଥାବସ୍ତୁକୁ ଅନୁଶୀଳନ କଲେ ଲେଖକଙ୍କ ଉଦ୍ଦେଶ୍ୟ ସ୍ପଷ୍ଟ ଭାବେ ଜାଣିହୁଏ । ରୁଦ୍ରସୁଧାନିଧିର କଥାକୁ ନିମ୍ନଭାବେ ବର୍ଣ୍ଣନା କରାଯାଇପାରେ ।

ଅଭିନବ ଚୈତନ୍ୟ ନାମକ ଜନୈକ ରୁଦ୍ରଗଣ ଶିବଙ୍କ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ନ ପାରି ଶିବଙ୍କଦ୍ୱାରା ଅଭିଶପ୍ତ ହୋଇ ମର୍ତ୍ତ୍ୟମଣ୍ଡଳରେ ରୁଦ୍ରସୁଧାନିଧି ରୂପେ ଜନ୍ମଲାଭ କରେ । ଗର୍ଭସ୍ଥ ହେବା ଦିନଠାରୁ ସେ ବିଭିନ୍ନ ସଂଘର୍ଷର ସମ୍ମୁଖୀନ ହୁଏ । ପ୍ରଥମେ ଆସେ ଅବଧୂତ । ସେ ଗର୍ଭସ୍ଥ ଶିଶୁ ସହ ଶାସ୍ତ୍ରାର୍ଥ କରି ପରାସ୍ତ ହୁଏ ଓ ତା'ର ଶିଷ୍ୟତ୍ୱ ଗ୍ରହଣ କରିବା ପାଇଁ ସ୍ଥିର କରେ । ଜନ୍ମ ହେବା ପରେ ସୂତକ ହାରିଣୀ ନାମ୍ନୀ ଯୋଗିନୀ ସଦ୍ୟଜାତ ରୁଦ୍ରସୁଧାନିଧିକୁ ହରଣ କରିନେବା ପାଇଁ ଇଚ୍ଛାକରି ବିଫଳ ହୁଏ ।

Digitized by srujanika@gmail.com

ରୁଦ୍ରସୁଧାନିଧି କୌମାରତ୍ୱ ପାଇବା ପରେ କାମାନନ୍ଦ ଯୋଗୀ ତା'ର ପ୍ରତଦ୍ୱନ୍ଦୀ ହୁଏ । "ଅବିଦ୍ୟା ମୃତ୍ୟୁ ହନ୍ତ୍ରୀବିଜ୍ଞକରଣୀ" କନ୍ୟା ପାଇଁ କାମାନନ୍ଦ ଯୋଗୀର ଆଗ୍ରହତା ଏହି ସଂଘର୍ଷର ମୂଳ କାରଣ । ଏଥିରେ ମଧ୍ୟ ରୁଦ୍ରସୁଧାନିଧି ବିଜୟୀ ହୋଇ କନ୍ୟାଲାଭ କରିବା ପାଇଁ ସମର୍ଥ ହୁଏ ।

ଏହି ତିନୋଟି ସଂଘର୍ଷରେ ବିଜୟଲାଭ କରିବାର ମୂଳ କାରଣ ହେଲା ରୁଦ୍ରସୁଧାନିଧିଙ୍କର ବାସୁଦେବଭକ୍ତି । ପ୍ରତ୍ୟେକ ଥର ସେ ନିଜର ପ୍ରତଦ୍ୱନ୍ଦୀମାନଙ୍କୁ ବାସୁଦେବଙ୍କଠାରେ ଶରଣ ନେବା ପାଇଁ ଉପଦେଶ ଦେଇଛନ୍ତି । ବୈଷ୍ଣବଧର୍ମର ବିଜୟବାନା ଉଡ଼ାଇବା ପାଇଁ ଲେଖକ ନାରାୟଣ ଦାସ ଅବଧୂତମାର୍ଗୀ, ଯୋଗୀମାର୍ଗୀ ତଥା ଯୋଗମାର୍ଗୀ ସାଧକମାନଙ୍କୁ ପ୍ରତଦ୍ୱନ୍ଦୀ ଭାବେ ଗ୍ରହଣ କରିଛନ୍ତି । ପ୍ରତଦ୍ୱନ୍ଦୀମାନଙ୍କ ଶକ୍ତି ଓ ପରାକ୍ରମକୁ ବିଶେଷ ଭାବେ ବର୍ଣ୍ଣନା କରି ଶେଷରେ ସେମାନଙ୍କ ପରାଜୟ କରାଇବାଦ୍ୱାରା ହିଁ ଲେଖକଙ୍କ ଉଦ୍ଦେଶ୍ୟ ସଫଳ ହୋଇଛି । ଗ୍ରନ୍ଥମଧ୍ୟରେ ବୈଷ୍ଣବଧର୍ମ ଅପେକ୍ଷା ଅନ୍ୟସବୁ ଧର୍ମର ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳୁଥିଲେହେଁ ଲେଖକ ସେସବୁ ଧର୍ମ ପ୍ରତି ଆଗ୍ରହୀ ନୁହନ୍ତି । ସେସବୁ ଧର୍ମର ନିଃସାରତା ଦେଖାଇବା ହିଁ ଲେଖକଙ୍କ ମୂଳ ଲକ୍ଷ୍ୟ ।

ଏହି ହେଉଛି ଏହାର ମୂଳ କାହାଣୀ, ଗଳ୍ପାଂଶ ବା ପ୍ଲଟ । ଏହାର ସଙ୍ଗରେ ଲାଗିରହିଛି ତନ୍ତ୍ର ଓ ସାଧନାର ଜ୍ଞାନଗର୍ଭ ଆଲୋଚନା । କେତେବେଳେ ବେଦାନ୍ତ-ସ୍ୱରରେ ଅଭିନବ ଚୈତନ୍ୟ ସମସ୍ତ ଜଗତକୁ ମିଥ୍ୟା ଓ ମାୟା କହି ଈଶ୍ୱରଙ୍କ କୃପା ପାଇଁ ବ୍ୟାକୁଳ ହୋଇଉଠିଛି ତ କେତେବେଳେ ଅବଧୂତ ଭାରତରେ ପ୍ରଚଳିତ ସବୁ ପ୍ରକାର ଧାର୍ମିକ ମତବାଦର ନିଃସାରତା ପ୍ରମାଣିତ କରିଛି, ପୁଣି କେତେବେଳେ ଭୁବନେଶ୍ୱରୀ ଯୋଗ ସାଧନାର ବିଭିନ୍ନ ଅଙ୍ଗକୁ ବିସ୍ତାର କରି ବର୍ଣ୍ଣନା କରିଛନ୍ତି । କଥା ଅପେକ୍ଷା ଦର୍ଶନ ଆଲୋଚନା ଏତେ ବେଶୀ ହୋଇଯାଇଛି ଯେ, କଥାର ମୂଳସ୍ରୋତ ଛିନ୍ନ ହୋଇଯିବା ପରି ଜଣାଯାଏ । ତେବେ ସମଗ୍ର ରୁଦ୍ରସୁଧା-ନିଧିର ଗଳ୍ପାଂଶକୁ ବିଶ୍ଳେଷଣ କଲେ ଏଥିରେ ଏକ ଐକ୍ୟର ସନ୍ଧାନ ମିଳେ । ଧର୍ମ ସଂସ୍ଥାପନା ପାଇଁ ରୁଦ୍ରସୁଧାନିଧିର ଜନ୍ମ । ଏହା କେଉଁ ଧର୍ମ ? ନିଶ୍ଚିତ ଭାବେ ଅବଧୂତର କାପାଳିକ ମାର୍ଗ ନୁହେଁ କି କାମାନନ୍ଦ ଯୋଗୀର ଶାକ୍ତମାର୍ଗ ନୁହେଁ । ରୁଦ୍ରସୁଧାନିଧି ଗ୍ରନ୍ଥରେ ଯେତେ ଧର୍ମ ବା ଯେତେ ସାଧନା କଥା କୁହ ଯାଇଛି ସେସବୁ ପ୍ରତଦ୍ୱନ୍ଦୀ ଚରିତ୍ରମାନଙ୍କ ମୁଖରେ । ରୁଦ୍ରସୁଧାନିଧି ଅତି ଶାନ୍ତ ସ୍ୱରରେ ନିର୍ବିକାର ଭାବେ କେବଳ ଗୋଟିଏ କଥା କହିଯାଇଛି । ବାସୁଦେବରେ ଶରଣ ଯା' । ଶିବ ତାକୁ ଜନ୍ମ ଦେଇଛନ୍ତି, ଶୈବଧର୍ମର ପ୍ରଚାର ପାଇଁ ନୁହେଁ, ଶୈବଧର୍ମର ଅନୁଗାମୀମାନଙ୍କୁ ବୈଷ୍ଣବଧର୍ମରେ ଦୀକ୍ଷିତ କରାଇବା ପାଇଁ । ସେତେବେଳକୁ ସେ ତ ନିଜେ

Digitized by srujanika@gmail.com

ବୈଷ୍ଣବ । ରାମନାମ ଓ କୃଷ୍ଣନାମ ଉଚ୍ଚାରଣ କରି ପାପ ଦୂର କରିବା ପାଇଁ ପାଗଳ । ଗ୍ରନ୍ଥ ମଧ୍ୟରେ ଗୋଟିଏ ପରେ ଗୋଟିଏ ଧର୍ମର ଅବତାରଣା କରାଯାଇଥିଲେ ହେଁ ରୁଦ୍ରସୁଧାନିଧି ଏହିସବୁ ଧର୍ମ-ବାଧାକୁ ଅତିକ୍ରମ କରି ଆଗେଇଚାଲିଛି ତା'ର ଲକ୍ଷ୍ୟ ପଥରେ । ଲେଖକଙ୍କ ମହାନ୍ ପରିକଳ୍ପନା ମଝିରେ ମଝିରେ ବାଧାଗ୍ରସ୍ତ ହେଲେ ହେଁ ଏକ ଅବସ୍ମରଣୀୟ ପରିଣାମରେ ଉପନୀତ ହୋଇଛି ବୈଷ୍ଣବଧର୍ମର ଜୟଗାନ କରି । ଏହି ଧର୍ମସଂଘର୍ଷର ପ୍ରଥମ ଧର୍ମ ହେଉଛି, ଶୈବଧର୍ମ । ଶିବ ହେଉଛନ୍ତି, ଏହି କାହାଣୀର ଆଦିବକ୍ତା ଓ ଗ୍ରନ୍ଥନାୟକର ମୂଳ-ସ୍ୱାମୀ । ରୁଦ୍ରଗଣ ପରିବେଷ୍ଟିତ ଶିବଙ୍କର ଅଭିନବ କଳ୍ପନାରୁ ଅଭିନବ ଚୈତନ୍ୟର ରୁଦ୍ରସୁଧାନିଧି ରୂପ । ପାର୍ବତୀଙ୍କ ମାନସ-କନ୍ୟା, ଅଯୋନିସମ୍ଭୂତା ଲକ୍ଷ୍ମୀପାଳିତା ଅବିଦ୍ୟା-ମୃତ୍ୟୁ ସଞ୍ଜୀବନୀ-କରଣୀ ହେଉଛି ଏହାର ନାୟିକା । ନାୟକ ଓ ନାୟିକା ଉଭୟେ ମହାଦେବଙ୍କ ସହ ସଂପୃକ୍ତ ଥିବାରୁ ଗ୍ରନ୍ଥ ମଧ୍ୟରେ ଶିବଙ୍କର ବିସ୍ତୃତ ବର୍ଣ୍ଣନା ଅପ୍ରାସଙ୍ଗିକ ନୁହେଁ । ଗ୍ରନ୍ଥମଧ୍ୟରେ ଏହା ଦୁଇ ସ୍ଥଳରେ ଦେଖିବାକୁ ମିଳେ । ଗ୍ରନ୍ଥର ପ୍ରାରମ୍ଭରେ ସ୍ତୁତି ରୂପେ, ପୁଣି ଗ୍ରନ୍ଥର ଆଦ୍ୟ ଓ ମଧ୍ୟଭାଗର ବର୍ଣ୍ଣନାରେ । ଉଭୟ ସ୍ଥଳରେ ଲେଖକ ଶିବଙ୍କ ପ୍ରତି ନିଜର ସମସ୍ତ ଶ୍ରଦ୍ଧା, ସମ୍ମାନ ଓ ଭକ୍ତି ଅର୍ପଣ କରିଛନ୍ତି ।

ଶିବଙ୍କର ବନ୍ଦନା ଓ ବର୍ଣ୍ଣନାକୁ ଅନୁସରଣ କଲେ ଓଡ଼ିଶାରେ ଶୈବଧର୍ମର ସ୍ଥିତି ଓ ପ୍ରସାର ସମ୍ବନ୍ଧରେ କେତେକ ଗୁରୁତ୍ୱପୂର୍ଣ୍ଣ ସୂଚନା ମିଳେ । ଭାରତର ଶୈବମତ ନିମ୍ନ କେତେକ ଭାବେ ବିଭାଗ କରାଯାଇଥାଏ—କାଶ୍ମୀର ଶୈବମତ ବା ପ୍ରତ୍ୟଭିଜ୍ଞା, ବୀର ଶୈବ, ଲିଙ୍ଗାୟତ ୧ ଓ ପାଶୁପତ ସଂପ୍ରଦାୟ । ପ୍ରଥମ ସଂପ୍ରଦାୟର ପ୍ରସାର କ୍ଷେତ୍ର ହେଉଛି ଉତ୍ତର ଭାରତ ଓ ଦ୍ୱିତୀୟ ସଂପ୍ରଦାୟ ସବୁ ଦକ୍ଷିଣ ଭାରତରେ ପ୍ରଚଳିତ । କାଶ୍ମୀର ଶୈବମତର ପ୍ରତିଷ୍ଠାତା ବସୁଗୁପ୍ତ । ସ୍ୱୟଂ ଶିବ ତାଙ୍କୁ ଶିବସୂତ୍ର ପ୍ରଦାନ କରିଥିଲେ । ଏହି ସଂପ୍ରଦାୟରେ ଈଶ୍ୱର, ଆତ୍ମା ଓ ପୃଥିବୀ ଏହି ତିନି ତତ୍ତ୍ୱର ପ୍ରସିଦ୍ଧି ଥିବାରୁ ଏହାକୁ ତ୍ରିକଶାସନ, ତ୍ରିକଶାସ୍ତ୍ର ବା ଖାଲି ତ୍ରିକ୍ ମଧ୍ୟ କୁହାଯାଏ । ବୀର ଶୈବ ମତର ପ୍ରତିଷ୍ଠାତା ଲକୁଲୀଶ । ସେ ଶିବଙ୍କର ଶେଷ ଅବତାର ଭାବେ କଥିତ । ଏମାନେ ଗଳାରେ ଲିଙ୍ଗ ଧାରଣ କରି ନିଜର ସ୍ୱାତନ୍ତ୍ର୍ୟ ରକ୍ଷା କରିଥାନ୍ତି । ଏହି ଦୁଇ ସଂପ୍ରଦାୟ ବ୍ୟତୀତ ଦକ୍ଷିଣାତ୍ୟରେ 'ଶୈବ ସିଦ୍ଧାନ୍ତ' ଅତି ଲୋକପ୍ରିୟ । ଏହାର ଅନୁଯାୟୀମାନେ ଗୀତା ଓ ଉପନିଷଦକୁ ମାନ୍ୟଗ୍ରନ୍ଥ ରୂପେ ଗ୍ରହଣ ନ କରି ତାମିଲ ଭାଷାରେ ରଚିତ ୬୩ ସିଦ୍ଧଙ୍କ ରଚନାକୁ ଆଦର କରିଥାନ୍ତି । ଏହି ସିଦ୍ଧମାନେ ନାୟନାର ବା ଅଡ଼ିୟାର ଅର୍ଥାତ୍ ଭଗବାନଙ୍କ ସେବକ ଭାବେ ପ୍ରସିଦ୍ଧ ।

---

୧— ଲିଙ୍ଗାୟତ ସଂପ୍ରଦାୟର ପ୍ରତିଷ୍ଠାତା ବାସବ । ପାଶୁପତ ସଂପ୍ରଦାୟର ପ୍ରସିଦ୍ଧି ଗୁଜରାଟରେ ।

Digitized by srujanika@gmail.com

ଶୈବମତରେ ପ୍ରତ୍ୟେକ ସମ୍ପ୍ରଦାୟଙ୍କ ପରମ ଈଶ୍ୱର ହେଉଛନ୍ତି ଶିବ । ହିନ୍ଦୁମାନଙ୍କ ତିନି ପ୍ରଧାନ ଦେବତାଙ୍କ ମଧ୍ୟରେ ତାଙ୍କର ସ୍ଥାନ ତୃତୀୟ । ବ୍ରହ୍ମା ସୃଷ୍ଟି କରନ୍ତି, ବିଷ୍ଣୁ ପାଳନ କରନ୍ତି ଓ ଶିବ ଧ୍ୱଂସ କରନ୍ତି - ସାଧାରଣରେ ଏହି ବିଶ୍ୱାସ ପ୍ରଚଳିତ ଥିଲେ ହେଁ, ସ୍ତୁତି ବା ବନ୍ଦନା କଲାବେଳେ ଶିବ ଅନ୍ୟ ଦୁଇ ଦେବତାଙ୍କର ଗୁଣସବୁକୁ ଗ୍ରହଣ କରି ମହାସ୍ଥାନ୍ ହୁଅନ୍ତି ଏବଂ ବେଳେବେଳେ ବ୍ରହ୍ମା ଓ ବିଷ୍ଣୁଙ୍କଠାରୁ ଶ୍ରେଷ୍ଠ ରୂପେ ବିବେଚିତ ହୁଅନ୍ତି । କେବଳ ଶିବ ନୁହନ୍ତି, ଯେ କୌଣସି ଦେବୀ ବା ଦେବତାଙ୍କୁ ବନ୍ଦନା କଲାବେଳେ ଏହି ପ୍ରବୃତ୍ତି ଦେଖିବାକୁ ମିଳେ । ଏଥିରେ ସାମ୍ପ୍ରଦାୟିକତାର ମୋହ ନାହିଁ । ଏହା ହେଉଛି ଭାରତୀୟ ପରମ୍ପରା ।

ରୁଦ୍ରସୁଧାନିଧିର ସ୍ତୋତ୍ର ଅଂଶରେ ସେଥିପାଇଁ ଶିବଙ୍କୁ 'କମଳାପତିସେବକ', 'ଖଗପତି ଆସନ ସୁହୃଦ୍', 'ମଧୁସୂଦନ ବନ୍ଦିତ', ବ୍ରହ୍ମା ବିଷ୍ଣୁ ଚରଣ ବନ୍ଦିତ', 'ବ୍ରହ୍ମା ବନ୍ଦିତ ଚରଣ', 'ଶ୍ରୀରାମଚନ୍ଦ୍ର ସେବିତ', 'ଦେବକୀସୁତ ବନ୍ଦିତ' ରୂପେ ବନ୍ଦନା କରାଯାଇଛି । ଶିବଙ୍କୁ ବ୍ରହ୍ମା, ବିଷ୍ଣୁ, ରାମ ଓ କୃଷ୍ଣଙ୍କଠାରୁ ଶ୍ରେଷ୍ଠ କହିଲେ ଲେଖକ ଶୈବ ହୁଏ ନାହିଁ । ଭାରତର ବିଶିଷ୍ଟ ରାମଭକ୍ତ ତୁଳସୀ ଦାସ ବିନୟ ପତ୍ରିକା (୧୨।୩) ପଦରେ ବ୍ରହ୍ମା ଓ ବିଷ୍ଣୁଙ୍କୁ ଶିବଙ୍କ ସେବକ ରୂପେ ଗ୍ରହଣ କରିଛନ୍ତି । ରାମଚରିତ ମାନସରେ ରାମ ଓ ଶିବଙ୍କ ମଧ୍ୟରେ ଅଭେଦତ୍ୱ ପ୍ରତିପାଦିତ । ସେଠି ତୁଳସୀ ଦାସ କହିଛନ୍ତି—

"ଶଙ୍କରପ୍ରିୟ ମମଦ୍ରୋହୀ ସିବଦ୍ରୋହୀ ମମ ଦାସ
ତେ ନର କରହିଂ କଲପ ଭରି ଘୋର ନରକ ମହିଁବାସ" ।

ଅନ୍ୟସ୍ଥଳରେ ମଧ୍ୟ କୁହାଯାଇଛି :—

"ସିବ ଦ୍ରୋହୀ ମମ ଭଗତ କହାଊ ।
ସୋ ନର ସପନେ ମୋହି ନ ପାଊ ।" ।

ଜଗମୋହନ ରାମାୟଣରେ କବି ବଳରାମଙ୍କ ଦୃଷ୍ଟିରେ ମଧ୍ୟ ଶିବ ଓ ରାମଙ୍କ ମଧ୍ୟରେ ପାର୍ଥକ୍ୟ ନାହିଁ । ଶିବ ରାମନାମ ଜପ କରି ବ୍ରହ୍ମହତ୍ୟା କଳୁଷ ନାଶ କଲାପରି ରାମ ବନବାସ ଦୁଃଖ ନିବାରଣ ପାଇଁ ପ୍ରତିଦିନ ଶିବପୂଜା କରିଛନ୍ତି । ଅଯୋଧ୍ୟାବାସ କାଳରେ ସେ ଯେଉଁ ଦେବତାସବୁଙ୍କୁ ପୂଜା କରିଛନ୍ତି, ସେମାନେ ହେଲେ ନାରାୟଣ, ଶିବ ଓ ଦୁର୍ଗା । ବିଭୀଷଣଙ୍କୁ ହିନ୍ଦୁଧର୍ମରେ ଦୀକ୍ଷିତ କଲାବେଳେ ଏହି ତିନି ଦେବତାଙ୍କୁ ପୂଜା କରିବା ପାଇଁ କୁହାଯାଇଛି । ଏସବୁ ସତ୍ତ୍ୱେ ବଳରାମ ଦାସ ଜଗନ୍ନାଥସେବକ ବୈଷ୍ଣବ ଭାବରେ ହିଁ ପ୍ରସିଦ୍ଧ । ଏହିବୁ ଦୃଷ୍ଟିରୁ ବିଚାର କଲେ ନାରାୟଣ ଦାସଙ୍କୁ ଶୈବ କହିବାରେ କୌଣସି ଯୁକ୍ତି ନାହିଁ । ତତ୍ତ୍ୱ ଦୃଷ୍ଟିରୁ ମଧ୍ୟ

Digitized by srujanika@gmail.com

ଏହା ଅଭିନବ ଚୈତନ୍ୟର ସ୍ତୁତି । ସେ ରୁଦ୍ରଙ୍କ ଗଣ ହୋଇଥିବାରୁ ତାଙ୍କ ପାଇଁ ଏହା ଏକ ସ୍ୱାଭାବିକ କଥା ।

ଠାକୁରଙ୍କୁ ବଡ଼ କହିବା ପରି ବିଭିନ୍ନ ନାଁରେ ଡାକିବା ମଧ୍ୟ ଏକ ପରମ୍ପରା । ଏହି ଡାକିବା ମଧ୍ୟରେ ଥାଏ ଠାକୁରଙ୍କ ରୂପ, ଗୁଣ, ବେଶ, ବର୍ଣ୍ଣ, ମହିମା ଓ ପାରିବାରିକ ସମ୍ପର୍କ । ଏହି ଭାବେ ଶିବ ପୁରାଣ (୭୧ ଅ:) ଓ ମହାଭାରତର ଅନୁଶାସନ ପର୍ବ (୧୭ ଅ:)ରେ ଶିବଙ୍କର ୧୦୦୮ ନାମ । ରୁଦ୍ରସୁଧାନିଧିରେ ୧୨୦୪ । ସ୍ତୋତ୍ରପରମ୍ପରାରେ ଶିବଙ୍କ ପାଇଁ ପ୍ରସିଦ୍ଧ ନାମାବଳୀର ଗ୍ରନ୍ଥନ କରିବା ସଙ୍ଗେ ସଙ୍ଗେ ଓଡ଼ିଶାକୁ ଦୃଷ୍ଟି ନାରାୟଣ ଦାସ, 'ଲିଙ୍ଗରାଜ' 'ଭୁବନେଶ୍ୱର' ଓ 'ନୀଳାଚଳପତି ଚନ୍ଦ୍ରଚୂଡ଼ ପଦଦ୍ୱୟ' ପ୍ରଭୃତି ନାମର ସଂଯୋଗ କରିଛନ୍ତି ।

ଶିବଙ୍କ ବର୍ଣ୍ଣନାର ଆଉ ଦୁଇଟି ରୂପ ରୁଦ୍ରସୁଧାନିଧିରୁ ମିଳେ । ପ୍ରଥମଟି ହେଉଛି ସିଦ୍ଧ ରୂପଗଣ ପରିବେଷ୍ଟିତ ଶିବ ଓ ପାର୍ବତୀ । ଏଠାରେ ପାର୍ବତୀ ହେଉଛନ୍ତି ସାଂଖ୍ୟମତର ପ୍ରକୃତି, ସୃଷ୍ଟିକାରିଣୀ । ସିଦ୍ଧମାନେ ବେଦାନ୍ତୀମାନଙ୍କ ପରି ଜଗତକୁ, 'ରଜ୍ଜୁରୁ ସର୍ପ ରୂପେ ଓ ଶୁକ୍ତିରୁ ରଜତ ଭ୍ରମରେ' ଦେଖିଛନ୍ତି । ଶିବଙ୍କର ଏହି ରୂପରୁ ହିଁ କଥାର ଆରମ୍ଭ । ଦ୍ୱିତୀୟ ରୂପ ହେଉଛି ଶିବଙ୍କ ପରିବାର । ଶିବ ଏଠାରେ ବୃଷଭ, ନନ୍ଦୀ, ପାର୍ବତୀ ଓ ଗଣେଶଙ୍କଦ୍ୱାରା ପରିବେଷ୍ଟିତ । ଉଭୟ ଅବସ୍ଥାରେ ଶିବ ମାନସରୋବର ନିକଟରେ ଅବସ୍ଥାନ କରୁଥିଲେ ହେଁ ପ୍ରଥମ ବର୍ଣ୍ଣନାରେ ତାନ୍ତ୍ରିକମାନଙ୍କର ଦେବ ଓ ଦ୍ୱିତୀୟରେ ହିନ୍ଦୁମତର ମହାଦେବ ।

ଦୀର୍ଘ ସ୍ତୁତି ଓ ରୂପବର୍ଣ୍ଣନା ବ୍ୟତୀତ ଗ୍ରନ୍ଥ ମଧ୍ୟରେ ଶିବଙ୍କର ଉଲ୍ଲେଖ ବାରମ୍ବାର ଦେଖିବାକୁ ମିଳେ । କୁମାର ଜନ୍ମ ହେବା ବେଳେ ଅନ୍ୟ ଶିଶୁମାନଙ୍କ ପରି କୋଽହଂ, କୋଽହଂ ନ କହି ଶିବୋଽହଂ ଶିବୋଽହଂ କହି ରୋଦନ କରୁଛି । ଯୋଗବିଦ୍ୟାର ଚର୍ଚ୍ଚା କଲାବେଳେ ରୁଦ୍ରସାଧନ, ଶମ୍ଭୁଥାଳ (ପୃ: ୧୧୭) ରୁଦ୍ର ଡମ୍ବରୁ (ପୃ: ୧୨୩) ଭୈରବ ରୂପ (ପୃ: ୧୩୦) ଓ ଯୋଗର ପୂର୍ଣ୍ଣଜ୍ଞାତା ଈଶ୍ୱରଙ୍କର ଉଲ୍ଲେଖ ଅଛି । ଏସବୁ ଉଲ୍ଲେଖରେ ଶିବଙ୍କ ପ୍ରତି ଲେଖକଙ୍କର ଶ୍ରଦ୍ଧା ଓ ସମ୍ମାନ ଅତୁଟ । କଥାର ଗତିରେ ଏହି ଧାରା ଉହାପାଇ ନାହିଁ । ବିଶେଷ କରି ବୈଷ୍ଣବ ଧର୍ମ ନିକଟରେ ସବୁ ପ୍ରକାର ଶୈବମତ ଉପସ୍ଥିତ ହୋଇଯାଇଛି । ରୁଦ୍ରସୁଧାନିଧି ମାତୃଗର୍ଭରେ ପ୍ରବେଶ କରିବା ବେଳଠାରୁ ଏହି ସଂଘର୍ଷର ଆରମ୍ଭ । ଏହି ସଂଘର୍ଷ ହେଉଛି ଧର୍ମ ମତର ସଂଘର୍ଷ । ଏକ ପକ୍ଷରେ ପ୍ରବଳ ପ୍ରତାପୀ କାପାଳିକମାର୍ଗୀ ଅବଧୂତ ଓ ଅନ୍ୟ ପକ୍ଷରେ ଗର୍ଭସ୍ଥ ଶିଶୁ ।

Digitized by srujanika@gmail.com

ପ୍ରଥମେ ଅବଧୂତଙ୍କୁ ଗ୍ରହଣ କରିବାର କାରଣ ହେଉଛି, ଭାରତରେ ସେମାନଙ୍କର ଖ୍ୟାତି ଓ ପ୍ରତିପତ୍ତି । ଭାରତୀୟ ସାହିତ୍ୟରେ ଅବଧୂତ ଶବ୍ଦ ବିଭିନ୍ନ ସମ୍ପ୍ରଦାୟର ସିଦ୍ଧଙ୍କ ପାଇଁ ପ୍ରଯୁକ୍ତ । ଡକ୍ଟର ହଜାରୀପ୍ରସାଦ ଦ୍ୱିବେଦୀଙ୍କ ମତରେ ଏହି ଶବ୍ଦ ମୁଖ୍ୟତଃ ତାନ୍ତ୍ରିକ, ସହଜଯାନୀ ଓ ଯୋଗୀମାନଙ୍କ ମଧ୍ୟରେ ପ୍ରଚଳିତ । ତନ୍ତ୍ରଗ୍ରନ୍ଥରେ ଚାରି ପ୍ରକାର ଅବଧୂତଙ୍କର ଉଲ୍ଲେଖ ମିଳେ । ସେମାନେ ହେଲେ ବ୍ରହ୍ମାବଧୂତ, ଶୈବାବଧୂତ, ଭକ୍ତାବଧୂତ ଓ ହଂସାବଧୂତ । କବୀର ଦାସ ଯେଉଁ ଅବଧୂ ବା ଅବଧୂତମାନଙ୍କର ଉଲ୍ଲେଖ କରିଛନ୍ତି, ସେମାନେ ନାଥପନ୍ଥୀ ଅବଧୂତ । କବୀରଙ୍କ ମତରେ ସେମାନେ ଜଗତରୁ ସମ୍ପୂର୍ଣ୍ଣ ଅଲଗା । ସେମାନେ ମୁଦ୍ରା, କରଙ୍ଗ, ସୁରତି ଓ ଶୃଙ୍ଗ ଧାରଣ କରନ୍ତି । ନାଦଦ୍ୱାରା ଧାରାକୁ ଖଣ୍ଡନ କରନ୍ତି ନାହିଁ । ଗଗନ-ମଣ୍ଡଳରେ ବସିଥାନ୍ତି । ପୃଥିବୀକୁ ଦେଖନ୍ତି ବି ନାହିଁ । ସେମାନେ ଚୈତନ୍ୟ-ଖଟ ଉପରେ ବିରାଜିତ । ଆକାଶ ଉପରେ ରହିକରି ମଧ୍ୟ ଆସନ ତ୍ୟାଗ କରନ୍ତି ନାହିଁ । ସଦା ମଧୁର ରସପାନ କରୁଥାନ୍ତି । କନ୍ଥା ଯୋଡ଼ି ହୋଇ ରହିଲେ ବି ହୃଦୟ ଦର୍ପଣରେ ସବୁ ଦେଖିବା ହିଁ ସେମାନଙ୍କର ପରାକ୍ରମ । ନିଶ୍ଚଳ ଆସନରେ ବସି ନାସିକା ମାର୍ଗରେ ୨୧ ହଜାରେ ୬ ଶହ ସୂତା ବୁଣିବା, ବ୍ରହ୍ମାଗ୍ନି ଦ୍ୱାରା କାୟାକୁ ଶୋଧନ କରିବା, ତ୍ରିକୁଟ ସଙ୍ଗମରେ ଜାଗ୍ରତ ରହିବା, ସହଜ ଓ ଶୂନ୍ୟର ଲୟ କରିବା ସେମାନଙ୍କର କାର୍ଯ୍ୟ ।

।

ନାରାୟଣ ଦାସଙ୍କ ଅବଧୂତର ବେଶଭୂଷା କବୀରଙ୍କ ଅବଧୂତଠାରୁ ସ୍ୱତନ୍ତ୍ର । ସେ ଅବଧୂତର, କେଶ ମୁକୁଳା, ଭସ୍ମେ ଶୁକଳ, ଅନ୍ତ ନିର୍ମଳ, ଦନ୍ତ ଉଜ୍ଜ୍ୱଳ । ହାତରେ ଅଛି ଦଣ୍ଡେ । କଟିରେ ଅଛି ଦରପୋଡ଼ା ଖଣ୍ଡେ । ମୃତ ସର୍ପେକ ପଇତା କରି ନାଇଅଛି । ସିଦ୍ଧମୂଳିକା ଖାଉଅଛି । କଣ୍ଠେ ଲମ୍ବାଇଅଛି କୁମ୍ଭ ମୁଖ ଖଣ୍ଡେ । ମଥାରେ ଦେଇଅଛି ଅନ୍ନ ସମେତ ଭାଣ୍ଡେ । ବଣ ବଣ ହୋଇ ଆସୁଅଛି । ଶିଙ୍ଗି ନାଦେ ଖାସୁଅଛି । ଦ୍ରବ୍ୟାନ୍ନମାନ ଯାଚଲେ ନିନ୍ଦୁଅଛି । ପଡ଼ିଲା ଅନ୍ନ ଚୁଣ୍ଡିଆଇ ଭୁଞ୍ଜୁଅଛି । ଆସନେ ବସିଲେ ବାର ବର୍ଷ ବସଇ । ଅହଙ୍କାର ଲୟରେ ପୁଣି ବ୍ରହ୍ମରେ ମିଶଇ" । (ପୃ-୪୮) ଅନ୍ୟ ସ୍ଥଳର ବର୍ଣ୍ଣନାରୁ ଜଣାଯାଏ ଯେ ତା'ର "କଟିରେ ଅଛି ବଳକାଗ୍ରେଟି । ସ୍କନ୍ଧେ ଅଛି ଚକ୍ଷୁ ଚରଟି । ପୁଷ୍ପରସ ମଦରେ ହୋଇଅଛି ମତ୍ତ ।" ଭଖେ ହୋଇ ବଳରେ ନ ଚାଲଇ ପନ୍ଥା, ବା ଲାଗିବା ଡ଼ରେ ଦେହରେ କନ୍ଥା, ଅମୃତ କ୍ଷୟ ହେବା ଡ଼ରେ ନ କହଇ କଥା ।"

ଏ ସବୁ ବର୍ଣ୍ଣନାକୁ ମିଶାଇ ଅବଧୂତ ଯୋଗୀର ଯେଉଁ ରୂପ ପ୍ରକାଶ ପାଏ, ତାହାକୁ ନିର୍ବାଣତନ୍ତ୍ର (ଚତୁର୍ଦ୍ଦଶପଟଳ)ରେ ଥିବା ଅବଧୂତ ସହ ତୁଳନା କରାଯାଇପାରେ । ତଦନୁଯାୟୀ ଅବଧୂତମାନେ ସଦାସର୍ବଦା ଖାସ୍ଵୃଷ୍ଟ ହୋଇ

Digitized by srujanika@gmail.com

ତତ୍ତ୍ୱପରସ୍ପର ବୁଝନ୍ତି । ସନ୍ନ୍ୟାସର ସମସ୍ତ ବିଧି ପାଳନ କରନ୍ତି । ଦଣ୍ଡୀ ସନ୍ନ୍ୟାସୀଙ୍କ ପରି ଅମାବାସ୍ୟା ଦିନ ଲଣ୍ଡା ନ ହୋଇ ଲମ୍ବା କେଶ ଓ ଜଟା ଆଦି ଧାରଣ କରନ୍ତି । ଗଳାରେ ରୁଦ୍ରାକ୍ଷମାଳା ବା ଅସ୍ଥିମାଳା ଧାରଣ କରିଥାନ୍ତି । ଦିଗମ୍ବର ବା କେବଳ କୌପୀନ ମାତ୍ର ଧାରଣ କରି ଶରୀରରେ ରକ୍ତଚନ୍ଦନ ଓ ଭସ୍ମଲେପନ କରିଥାନ୍ତି ।

ଏଥିରୁ ଲମ୍ବକେଶ, କୌପୀନ, ଭସ୍ମ ପ୍ରଭୃତିର ଉଲ୍ଲେଖ ରୁଦ୍ରସୁଧାନିଧିରେ ଥିଲେ ବି "ହାତରେ ଅଛୁ ଦଣ୍ଡେ । କଟିରେ ଅଛୁ ଦରପୋଡ଼ା ଖଣ୍ଡେ । ମୃତ ସର୍ପେକ ପଇତା କରି ଲଇଅଛୁ । ସିଦ୍ଧି ମୃତ୍ତିକା ଖାଇଅଛୁ । କଣ୍ଠେ ଲମ୍ବାଇଅଛୁ କୁମ୍ଭ ମୁଖ ଖଣ୍ଡେ । ମଥାରେ ଦେଇଅଛୁ ଅନ୍ନ ସମେତ ଖଣ୍ଡେ ।" ପ୍ରଭୃତିର ଉଲ୍ଲେଖ 'ନିର୍ବାଣ-ତନ୍ତ୍ର'ରେ ମଧ୍ୟ ନାହିଁ ।

ଏ ବିଷୟରେ ଗ୍ରନ୍ଥମଧ୍ୟରୁ ଏକ ସୂଚନା ମିଳେ । ତାହା ହେଉଛି ଅବଧୂତ 'କାପାଳିକ ବିଧି' ସାଧକ । କାପାଳିକମାନେ ୬ ମୁଦ୍ରା ଧାରଣ କରନ୍ତି । ସେସବୁ ହେଲା କଣ୍ଠହାର, ଆଭୂଷଣ, କର୍ଣ୍ଣାଭୂଷଣ, ଚୂଡ଼ାମଣି, ଭସ୍ମ ତଥା ଯଜ୍ଞୋପବୀତ । କାପାଳିକମାନଙ୍କର ଅନ୍ୟ ଏକ ବିଭାଗ ହେଉଛି, କାଳୀମୁଖ ସମ୍ପ୍ରଦାୟ । ଏମାନଙ୍କ ମତରେ ଲୌକିକ ଓ ପାରଲୌକିକ କାମନାକୁ ତୃପ୍ତ କରୁଥିବା ସାଧକର ସିଦ୍ଧି ହେଉଛି—(୧) କପାଳ ଭୋଜନ, (୨) ଭସ୍ମଲେପନ, (୩) ଚିତାଭସ୍ମ ଲେପନ, (୪) ଦଣ୍ଡ ଧାରଣ, (୫) ସୁରାପାତ୍ର ଧାରଣ, (୬) ସୁରାପାତ୍ରରେ ଭୈରବଙ୍କର ପୂଜା ।

ଏହିସବୁ ଲକ୍ଷଣରୁ ଜଣାଯାଏ ଯେ ରୁଦ୍ରସୁଧାନିଧିର ଅବଧୂତ ହେଉଛି ଏକ ଅଘୋରପନ୍ଥୀ କାପାଳିକ । କାଳାମୁଖ ସମ୍ପ୍ରଦାୟ ସହ ଏହାର ସମ୍ପର୍କ ଅଧିକ ।

ରୁଦ୍ରସୁଧାନିଧିରେ ଅବଧୂତଙ୍କୁ ଶରୀର ଗର୍ଭସ୍ଥ ଉତ୍ତାପ କରିବା ପାଇଁ ଅଣାଯାଇଥିଲେ ହେଁ ଲେଖକ ଏ ମତର ପକ୍ଷପାତୀ ନୁହନ୍ତି । ସେଥିପାଇଁ ସେ ଅବଧୂତଙ୍କୁ ଏକ ଅହଂକାରୀ ପୁରୁଷ ଭାବେ ଚିତ୍ରଣ କରିଛନ୍ତି । ଲେଖକଙ୍କର ଉକ୍ତିରେ ଏ କଥା ବାରମ୍ବାର ସ୍ପଷ୍ଟହୋଇ ପ୍ରକାଶ ପାଇଛି । ଅବଧୂତର ପ୍ରତ୍ୟେକ ଉକ୍ତିକୁ ଖଣ୍ଡନ କରିବା ହିଁ ଏ ଗ୍ରନ୍ଥର ମୂଳ ଉଦ୍ଦେଶ୍ୟ । ଅବଧୂତ ପ୍ରତି ଲେଖକଙ୍କ ବିତୃଷ୍ଣା ନିମ୍ନ ପଂକ୍ତି ସବୁରେ ଦେଖାଯାଇପାରେ ।

(୧) ଦେହାତ୍ମମାନେ ହୋଇଛନ୍ତି ସିଦ୍ଧ । ଏ ସେ ଅଟଇ ଆପୁଣକ ମତ ବୁଦ୍ଧି ।
(ପୃ-୪୮)

(୨) ଏମନ୍ତେ ସେ ଅହଂକାର ଯୋଗ ଅବଧୂତ ପଦ କୁଳାଶ, ପବନ, ଖେଚର, ଅଜଟ, ଆରମ୍ଭ, ଧାରଣ, ଆସନ, ଉଜାଣି, ତାଟକ, ରେଚକ, ପୂରକ, କୁମ୍ଭକ, ଶୋଷଣ ଆଦିକର ସମସ୍ତ ଜ୍ଞାନ ଜାଣଇ । ବିଷ୍ଣୁଭକ୍ତ ନୋହିବାରୁ କର ପରମାନନ୍ଦର ପରମ ଜ୍ଞାନସେ ନ ଜାଣଇ (ପୃ—୪୯) ।

Digitized by srujanika@gmail.com

ଅବଧୂତ ମୁଖରେ ଜଗତ, ଶରୀର ଓ ମନବାର ବ୍ୟାଖ୍ୟା ଶୁଣିବା ପରେ ମାତୃ-ଗର୍ଭ ପୁରୁଷ କହୁଛି,"ଆହେ। ତୋତେ ଏମନ୍ତ ବଚାର ହୋଇ। ଅବିଦ୍ୟା ପ୍ରପଞ୍ଚ ସେ ଭୂମିରେ ପ୍ରକାଶ ହେଉଅଛି। ଏ ଭ୍ରମ୍ମର ସ୍ୱପ୍ନ ସେହି। ଏ ହାଦେ ଜଚ୍ଛ ନୋହଇ। ଏକା ଶୁଦ୍ଧ ଚୈତନ୍ୟ ମାତ୍ରକ ସେ ଜଗତରେ ଅଛି। ଭ୍ରମଚ୍ଛିରେ ତୋତେ ଅବସ୍ଥା ସ୍ୱପ୍ନରେ ଏମନ୍ତ ଦିଶଇ। ତାହେ ଯେତେ ଲୋସ୍ତକ କହିଲ୍ ଏ ସବୁ ଅନ୍ତଃ-କରଣ ଭିତରେ ଅଛି। ପୁଣି ବାହ୍ୟ ପ୍ରକାର ଦିଶଇ। ଏମନ୍ତ ସରସ ସଂଯୋଗ ଯେମନ୍ତେ ଇନ୍ଦ୍ରସ୍ୱମାନଙ୍କୁ ରଣ୍ତ କରଇ। କଳ୍ପନା କଦ୍ୱାରୁ ସାଜସ୍ୱପ୍ନ ପ୍ରକାଶ ହେଉଅଛି। ଏସବୁ ମନୋମୟ ବକାର ସେହି। ମାୟାକୁ ମାୟା ଦର୍ଶିଲ ପ୍ରାୟେକ ହେଉଅଛି। ସ୍ୱପ୍ନେ ଇନ୍ଦ୍ରଜାଲ ପର ପ୍ରଳାପ ପ୍ରାୟେକ ସେହି। (ପୃ—୫୫)

ଅଜ୍ଞାନ ଆକର୍ଷଣ ନ କରିବା ପାଇଁ ଦୁଇ ଜଣଙ୍କର ଦୁଇ ମତ। ଉଭୟଙ୍କ ମତରେ ଅଜ୍ଞାନରୂପୀ ମାୟାକୁ ବଶ କରିବାକୁ ହେଲେ କୁଣ୍ଡଳିନୀ ସାଧନା ଆବଶ୍ୟକ। ଅଥଚ ଅବଧୂତର ମାର୍ଗ କୁମାରଦ୍ୱାରା ଗୃହୀତ ନୁହେଁ। କୁମାର ମତରେ ମାୟା ହେଉଛି ପରମେଶ୍ୱରଙ୍କ ଦାସୀ। ତେଣୁ ପରମେଶ୍ୱରଙ୍କୁ ଅନବରତ ଚିନ୍ତା କଲେ କୁଣ୍ଡଳିନୀ ତାହାର ସ୍ୱୟଂ ଜାଗ୍ରତ ରହିବ। କୁଣ୍ଡଳିନୀକୁ ଜାଗ୍ରତ କରିବାପାଇଁ ଏକମାତ୍ର ଉପାୟ ହେଉଛି ପରମେଶ୍ୱର ଧ୍ୟାନ।

କୁମାରଠାରୁ ଏସବୁ ଶୁଣିବା ପରେ ଅବଧୂତର ଅହଙ୍କାର ଦୂର ହୋଇଛି। ଶିକ୍ଷାଦେବା ପ୍ରବୃତ୍ତି ତ୍ୟାଗ କରି ସେ ନିଜେ କୁମାରଠାରୁ ଉପଦେଶ ପାଇବା ପାଇଁ ଉଦଗ୍ରୀବ ହୋଇଛି। ସେହି ଦୃଷ୍ଟିରେ ସେ ଭାରତର ପ୍ରଚଳିତ ବିଭିନ୍ନ ଧର୍ମଶାସ୍ତ୍ରର ଆଲୋଚନା କରି ସେଥିରୁ ପ୍ରକୃତ ସତ୍ୟ ଖୋଜିବା ପାଇଁ ବୁଲିଛି। ଅବଧୂତର ଆଲୋଚକ ଦୃଷ୍ଟିରେ ମନ୍ୱାଦି ଧର୍ମଶାସ୍ତ୍ର, ସାଂଖ୍ୟ, ପାତଞ୍ଜଳଙ୍କ ଯୋଗମୀମାଂସା, ବୈଷ୍ଣବିକ, ଶୈମାସା, ପାଶୁପତ, ନ୍ୟାୟ, ତର୍କ, ବୌଦ୍ଧ, ଆହତ, କାପାଳିକ ଲୌକିକ, ବୃହାନୁପାସକ, ପାଷାଣ୍ଡ, ହଲଗ୍ନସିଦ୍ଧି, ଉପନିଷଦ ବେଦାନ୍ତ ଓ ଚନ୍ତାମଣି ପ୍ରଭୃତି ମତର ଆଲୋଚନା କରାଯାଇଛି। କୁମାରର ସାନ୍ନିଧ୍ୟ ଲାଭକରି ଅବଧୂତ ହୃଦୟରେ ବିରକ୍ତ ଭାବ ଜାତ ହୋଇଛି।

ଏଠାରେ ମନେପଡ଼େ "ଚୈତନ୍ୟ ଚରିତାମୃତ"ର ବାସୁଦେବ ସାର୍ବ-ଭୌମ ଓ ଶ୍ରୀ ଚୈତନ୍ୟଙ୍କ ଗୁରୁ ଶିଷ୍ୟ ହେବାର ପ୍ରସଙ୍ଗ। ବାଳକ ସନ୍ନ୍ୟାସୀ ଶ୍ରୀ ଚୈତନ୍ୟଙ୍କୁ ଦେଖି ସାର୍ବଭୌମ ତାଙ୍କୁ ବୈରାଗ୍ୟ ଅଦ୍ୱୈତ ମାର୍ଗରେ ପ୍ରବେଶ କରାଇବା ପାଇଁ ପ୍ରଥମେ ଇଚ୍ଛା କରିଥିଲେ।

"ସାର୍ବଭୌମ କହେ ଏଇ ନାମ ସର୍ବୋତ୍ତମ
ଭାରତୀ ସମ୍ପ୍ରଦାୟ ଇହୋଁ ହୟେନ ମଧ୍ୟମ।

Digitized by srujanika@gmail.com

ଗୋପୀନାଥ କହେ ଇହାଁର ନାହି ବାହ୍ୟାପେକ୍ଷା
ଅତଏବ ବଡ଼ ସମ୍ପ୍ରଦାୟେତେ ଉପେକ୍ଷ୍ୟା
ଭଟ୍ଟାଚାର୍ଯ୍ୟ କହେ ଇହାଁର ପ୍ରୌଢ଼ ଯୌବନ
କେମନେ ସନ୍ନ୍ୟାସ ଧର୍ମ ହଇବେ ରକ୍ଷଣ
ନିରନ୍ତର ଆମି ଇହାକେ ବେଦାନ୍ତ ଶୁନାଇବ
ବୈରାଗ୍ୟ ଅଦ୍ୱୈତ ମାର୍ଗେ ପ୍ରବେଶ କରାଇବ
କହେନ ଯଦି ପୁନରପି ଯୋଗପଟ୍ଟ ଦିୟା
ସଂସ୍କାର କରି ସେ ଉତ୍ତମ ସମ୍ପ୍ରଦାୟ ଆନିୟା ।"

( ମଧ୍ୟଲୀଳା )

ଶାସ୍ତ୍ରଚର୍ଚ୍ଚା ପରେ ଶ୍ରୀ ଚୈତନ୍ୟଙ୍କ ମହିମାରେ ମୁଗ୍ଧ ହୋଇ ସେ ନିଜେ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ ।

"ଶୁନି ଭଟ୍ଟାଚାର୍ଯ୍ୟ ମନେ ହୈଲ ଚମତ୍କାର
ପ୍ରଭୁକେ କୃଷ୍ଣଜାନି କରେ ଆପନା ଧିକାର
ଇହେଁ ତ ସାକ୍ଷାତ କୃଷ୍ଣ ଇହା ନା ଜାନିୟା
ମହା ଅପରାଧ କୈନୁ ଗର୍ବିତ ହଇୟା
ଆତ୍ମନିନ୍ଦା କରି ଲୈଲ ପ୍ରଭୁର ଶରଣ
କୃପା କରିବାରେ ତବେ ପ୍ରଭୁର ହଇଲ ମନ ।"

( ମଧ୍ୟଲୀଳା )

ଲେଖକ ଶୈବଧର୍ମର କେବଳ ଯେ ପ୍ରଶଂସା କରିଛନ୍ତି ତାହା ନୁହେଁ, ଏହାର ଦୋଷଦୁର୍ବଳତା ଦେଖାଇବା ପାଇଁ କେତେକ ପ୍ରସଙ୍ଗର ଅବତାରଣା କରିଛନ୍ତି । ସେଥିମଧ୍ୟରୁ ମୀମାଂସକ, ପାଶୁପତ ଓ କାପାଳିକମାନଙ୍କ ଆଲୋଚନା ବିଶେଷଭାବେ ଉଲ୍ଲେଖଯୋଗ୍ୟ ।

ମୀମାଂସା ମତ ବୋଲଇ । କର୍ମ କରିଲ ଈଶ୍ୱର ଆପଣ ହୋଇ । ବୋଇଲେ କର୍ମେ ଦୁଃଖ ମହାଶ୍ରମ । ଏ ଦୁଃଖ କି ସହି ହୁଅଇ ନାହିଁ । ଈଶ୍ୱର ହୋଇ । ଈଶ୍ୱର ଚଢ଼ନ୍ତି ବୃଷଭ ଗୋଟିଏ ଚଢ଼ି ଡମ୍ବରୁ ଗୋଟାଏ ବଜାଉଥାଇ । ଘରକର କୈଳାସ

Digitized by srujanika@gmail.com

କନ୍ଦରେ ରହିଥାଇ । କାମ କ୍ରୋଧେ ତ ଥାନ୍ତି । ସେବାକଲା ଲୋକଙ୍କୁ ତ ସଂସାର ସୁଖ ଦେଇ । ପୁତ୍ର, ଦାର ମମତା ଥାଇ । ପ୍ରଳୟମାନଙ୍କରେ ଦୁଃଖ ସହି । ଦେହ ଗୋଟାଏ ଘେନି ଅଚଳ ସମାଧିରେ ବସିଥାଇ । ଏହି ତ ଦୁଃଖ ହିଁ ସେଟି । ଏଥି କି ଫଳ ହୋଇଲା । (ପୃ-୫୮)

ସେହିପରି ପାଶୁପତମାନଙ୍କ ସମ୍ବନ୍ଧରେ ସେ କହିଛନ୍ତି, "ତଦନ୍ତରେ ପାଶୁ-ପତମାନେ ବୋଲନ୍ତି । ଜଗତ ଶିବଶକ୍ତି ହୋଇ । ତ କେମନ୍ତ ପ୍ରାପ୍ତେ ହୋଇ । ଚନ୍ଦ୍ର ଶକ୍ତି, ସୂର୍ଯ୍ୟ ଶିବ । ଆତ୍ମା ଶକ୍ତି, ପରମ ଶିବ । ପୃଥ୍ୱୀ ଶକ୍ତି, ମେରୁ ଶିବ । ମନ ଶକ୍ତି, ଚୈତନ୍ୟ ଶିବ । ଚୈତନ୍ୟ ଶକ୍ତି, ମନ ଶିବ । ଏବଂଭୂତ ପ୍ରକାରେ ମନ ଶିବ କରି ଜଗତ ଚଳନ୍ତି । ଏମନ୍ତ କରି କଳ୍ପି ମରୁଥିଲେ କି କାର୍ଯ୍ୟ ହୋଇବଟି ?" (ପୃ.୫୮)

କାପାଳିକମାନଙ୍କ ବିଷୟରେ ତାଙ୍କ ମତ ହେଉଛି—

କାପାଳିକ ମତ ବୋଲଇ । ଦେହ ସିଦ୍ଧ ହୋଇ । ଆସନ ଯୋଗ ଅଭ୍ୟାସେ ଉଡ଼ିବା ଆକାଶେ ପବନ ହୋଇ । ଏଥି ତ ଧର୍ମ କଥା ନାହିଁ । ଚଢ଼େଇ ପ୍ରାପ୍ତ ହୋଇ ଆକାଶ ମଣ୍ଡଳେ ବୁଲୁଥିଲେ ହେଁ କି କାର୍ଯ୍ୟ ହୋଇଲାଟି ? ଶାଗୁଣା ଉଡ଼ୁ ନ ଥାଇ କି ? ଏ ଈଶ୍ୱର ସ୍ୱରୂପ ଭ୍ରମ ସିନା ।" (ପୃ-୫୯) ଅନ୍ୟ ସ୍ଥଳରେ କହିଛନ୍ତି, "ଶୁଣ ସୂକ୍ଷ୍ମ ବିଶ୍ୱଶଳେ କାପାଳିକ ଦର୍ଶନ ଉଚିତ ନୁହଇ । କେତେଣସି କାଳେ ପୂର୍ବେ ଗୋରେଖନାଥ ସିଦ୍ଧମାନେ ଦେହ ଧ୍ୟାନେ ସେ ମୋକ୍ଷ ନୋହିଲେ । ପାଷାଣ୍ଡମାନଙ୍କୁ ଭଣ୍ଡିବା ନିମନ୍ତେ କାପାଳିକ ଶାସ୍ତ୍ର କହିଆଇଲେ । ଏମାନେ ସହସ୍ର ବର୍ଷ ସେବା କଲେ, ଦେହ କଳ୍ପିତ ନ ଛାଡ଼ନ୍ତି । ଶରୀରରେ ବିସ୍ମୟ ଐଶ୍ୱର୍ଯ୍ୟ ସେ ଲୋଡ଼ନ୍ତି । ଏ ପାପିଷ୍ଠମାନଙ୍କୁ ଆପଣାର ଉତ୍ତମ ପଦ ନ ଦେଖାଇ ଦେହରକ୍ଷା ଯୋଗ କହିଆଇଲେ । ଭୋଗ ଲୋଭ ଦେଖାଇ ଇନ୍ଦ୍ରିୟମାନଙ୍କ ବଶକୁ ଗଲେ । ସେ ଡରରେ କରି ଦେହକୁ ଧଇଲେ । ଏବଂଭୂତ ମାୟାବୀ ଦର୍ଶନମାନଙ୍କରେ ଅନେକ ପାପ କହିଅଛୁ । ଧର୍ମ ଶାସ୍ତ୍ର ପ୍ରମାଣେ ଯୋଗୀଙ୍କ ମୋହ ବିଶ୍ୱରେ ଭେଟ ହୋଇବା ନ ଯୋଗାଇ ।" (ପୃ.୧୧୭)

ଶୈବ ସମ୍ପ୍ରଦାୟସବୁର ଆଲୋଚନାରୁ ଲେଖକଙ୍କ ଦୃଷ୍ଟିକୋଣ ସ୍ପଷ୍ଟ । ଅବଶ୍ୟ ଏସବୁର ଆଲୋଚନା ହୋଇଛି ଅବଧୂତ ଓ ମନ୍ତ୍ରୀପୁତ୍ର ମୁଖରେ । ମାତୃଗର୍ଭ ପୁରୁଷକୁ ପରୀକ୍ଷା କରିବା ପାଇଁ ଅବଧୂତ ଦୋଷଦର୍ଶୀ ବ୍ୟକ୍ତି ଭାବେ କଥା କହିଛି । ଅବଧୂତ ନିଜେ କାପାଳିକ ମତବାଦୀ ହେଲେ ହେଁ ନିଜ ମତର ଆଲୋଚନା କରିବାକୁ ପଛେଇ ନାହିଁ । ଗର୍ଭସ୍ଥ ଶିଶୁ ଅବଧୂତର ଆଲୋଚନାକୁ ଖଣ୍ଡନ କରିବା ପରିବର୍ତ୍ତେ ସମର୍ଥନ କରିଛି ଏବଂ ଏସବୁ ମାର୍ଗର ବ୍ୟର୍ଥତା ଉପରେ ଗୁରୁତ୍ୱ ପ୍ରଦାନ କରି ବାସୁ-

Digitized by srujanika@gmail.com

ଦେବ ଭକ୍ତଙ୍କୁ ଶ୍ରେଷ୍ଠ ବୋଲି କହୁଛୁ । ମନ୍ତ୍ରୀପୁଅ କଥାରେ କିନ୍ତୁ ଛଳନା ନାହିଁ । ସାଧାରଣ ସମାଜରେ କାପାଳିକମାନଙ୍କ ପାଇଁ ଘୃଣା ଭାବ ହିଁ ଥିଲା । (୧) ସେଥିପାଇଁ ଧର୍ମ ସଂସ୍ଥାପନା କରିବାକୁ ଆସିଥିବା ଶିଶୁ ଶୈବଧର୍ମ ପରିବର୍ତ୍ତେ ବୈଷ୍ଣବ ଧର୍ମର ପ୍ରତିଷ୍ଠା ଗାନ କରୁଛୁ । ପାର୍ବତୀ ଠାକୁର ଈଶ୍ୱର । ଯେ ଭଜେ ହିଁ ଚରଣକୁ ହାରି ଯୋଡ଼ିଲେକ କର । (୨) (ପୃ. ୧୧୫)

ରୁଦ୍ରସୁଧାନିଧି ଜନ୍ମଲାଭ କଲା ପରେ ତାଙ୍କ ଜୀବନର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହୁଏ । ଲେଖକ ମଧ୍ୟ କହିଛନ୍ତି, ତାଙ୍କର ଶିବଅଂଶ ଓ ବିଷ୍ଣୁଅଂଶ 'ଭିନ୍ନେ' ଅର୍ଥାତ୍ ସ୍ୱତନ୍ତ୍ର ଭାବରେ ରହିଛୁ । ଜନ୍ମ ହେବା ପୂର୍ବରୁ ସେ ଥିଲେ ବେଦାନ୍ତମାର୍ଗୀ ଓ ଶିବ ଉପାସକ ଅଥଚ ଜନ୍ମ ହେବା ପରେ ସେ ହେଲେ ବୈଷ୍ଣବ ।

ଅହଂକାର ବନ୍ଧ ଶେଦନ କଲି ସନ୍ତୁ
ଗର୍ବ ନ ସହନ୍ତି ବୈଷ୍ଣବୀ ମାୟା ବଳାତ୍କାରେ ଆବୋରିଲା ତନ୍ତୁ ।

ସୂତିକ ହାରଣୀ ଉପାଖ୍ୟାନରୁ ମଧ୍ୟ ଏହା ପ୍ରତିପାଦିତ ହୁଏ ।

କାପାଳିକ ଅବଧୂତ ପରେ ସୂତିକହାରିଣୀ ସହ ସଙ୍ଘର୍ଷ ସୃଷ୍ଟି ହୁଏ । ଲେଖକଙ୍କ ମତରେ ସେ ଯୋଗିନୀ, ସେ ପିଶାଚୀ, ସେ ହିଡ଼ିମ୍ବୀ । ସଦ୍ୟଜାତ ଶିଶୁଙ୍କୁ ହରଣ କରିବା ଏହାର କାର୍ଯ୍ୟ । ଅଥଚ କୁମାର ନିକଟରେ ତାର ସମସ୍ତ ବଳବୀର୍ଯ୍ୟ ନଷ୍ଟ ଭି । କୁମାରର ଟହ ଟହ ହସ ଦେଖି ସୂତିକହାରିଣୀର ପୂର୍ବ କଥା ମନେ ପଡ଼ି-ଗଲା ଏବଂ ସେ ବୁଝିପାରିଲା କୁମାରର ପ୍ରକୃତ ସ୍ୱରୂପ । ସେତେବେଳେ ସେ କହୁଛୁ "ପୂର୍ବେ ମୋତେ ଦେବତାମାନେ କହି ନାହାନ୍ତି କି ? ବାସୁଦେବ ଭକ୍ତ ଲୋକମାନଙ୍କୁ ପାଳିଟାଇ ନ ପାରିବୁ ବୋଲି । ଏ ନିଶ୍ଚୟ ବୈଷ୍ଣବ ଅଟଇ । ମୋହର ମନକୁ ଘଟଇ । କୁମାରର ଦର୍ଶନ ମାତ୍ରେ ତାର ଜ୍ଞାନୋଦୟ ହୋଇଛୁ ଓ ଅତି ବ୍ୟାକୁଳ ସ୍ୱରରେ ସେ କୁମାରକୁ ତାର ଅଜ୍ଞାନ ତମିସ୍ର ନାଶ କରିବା ପାଇଁ ଅନୁରୋଧ କରି ତାକୁ ସଦ୍‌ଗୁରୁ ଭାବେ ବାରଣ କରୁଛୁ । କୁମାର ମଧ୍ୟ ତାର ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ କହୁଛୁ, "ପ୍ରାଣୀ-ମାନଙ୍କର ବାସନା କର୍ମ ବଳେ ସେ ସିଦ୍ଧ ହୋଇ । ଯେସନ୍ତେ କ୍ଷୁଧାର୍ତ୍ତି ଲୋକ ଦୁଇ ହାତେ ନ ଭୁଞ୍ଜଇ ତୋହର ଏ ପ୍ରାର୍ଥନା ସିଦ୍ଧ ହୋଇ । ପୁଣି ଏ ସମୟେ ନୁହଇ । ତୁ ମୋହର ଧାଇ ହୋଇ ମୋତେ ପ୍ରତିପାଳନା କରୁଥା । ମୋହର ଯୁବା ସମୟରେ ତୋତେ ଉପଦେଶ ଦେବି । ଏବେ ତୁ ବାସୁଦେବର ନାମକୀର୍ତ୍ତନ କରୁଥା । ପ୍ରଥମ

(୧) କୈବର୍ତ୍ତମାନେ କାମାନନ୍ଦକୁ କାପାଳିକ ଭାବ ତଥ୍ୟରେ ବସେଇ ଦେଇ ନାହାନ୍ତି । ପ୍ରକାରାନ୍ତରେ ଏହା ହିଁ ଥିଲା ନାରାୟଣ ଦାସଙ୍କ ନିଜ ମତ ।

(୨) ତୁଳନା ପାଇଁ ଦ୍ରଷ୍ଟବ୍ୟ ବୃନ୍ଦାବନ ଦାସ-ଚୈତନ୍ୟ ଭାଗବତ ।

Digitized by srujanika@gmail.com

ଉପଦେଶ ହିଁ ଏହିଟି । ଉପଦେଶମାନଙ୍କର ଜ୍ଞାନମାନଙ୍କର ଜନନୀ ଏ । ସ୍ରଜାତି ଏ । ଏଥିରୁ ସମସ୍ତ ଜ୍ଞାନମାନ ଜାତ ହୁଅନ୍ତି । (ପୃ ୭୯-୭୬)

ନାମ ଜପର ପ୍ରାଧାନ୍ୟ ବୈଷ୍ଣବ ଧର୍ମରେ ବିଶେଷଭାବେ ସ୍ୱୀକୃତ । ସେମାନଙ୍କ ମତରେ ସାଧନ ନବବିଧ ।

ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନଂ ।
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନମ୍" ।

ଏଥିରୁ ନାମାଶ୍ରୟ ଭଜନ ହିଁ ବଳବାନ୍ । କାରଣ 'ନାମ' ଓ 'ନାମୀ'ରେ ଭେଦ ନାହିଁ । ନାମ ଉଚ୍ଚାରଣ କଲେ ନବବିଧ ସାଧନା ସାଧିତ ହୁଏ । ନାମ ଉଚ୍ଚାରଣ କଲେ, ଶ୍ରବଣ କୀର୍ତ୍ତନର ଫଳ ମିଳେ । କେବଳ ସେତିକି ନୁହେଁ, ନାମ ଉଚ୍ଚାରଣରେ ହରି ଲୀଳା ସ୍ମରଣ ହେବା ସଙ୍ଗେ ସଙ୍ଗେ ମନ ମଧ୍ୟରେ ପାଦ ସେବା, ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ ଓ ଆତ୍ମନିବେଦନ ମଧ୍ୟ ହୋଇଥାଏ । ନାମ ଜପର ଅଶେଷ ମହିମା । "ଶ୍ରୀ ଚୈତନ୍ୟ ଭାଗବତ"ରେ କୁହାଯାଇଛି ।

ସାଧ୍ୟସାଧନ ତତ୍ତ୍ୱ ଯେ କିଛୁ ସକଳ ।
ହରିନାମ ସଙ୍କୀର୍ତ୍ତନେ ମିଳିବେ ସକଳ ।"

ହରିନାମ ଉଚ୍ଚାରଣ ହିଁ କଳିଯୁଗରେ ଭଗବାନଙ୍କୁ ପାଇବାର ଶ୍ରେଷ୍ଠ ପନ୍ଥା ।

"ହରେର୍ନାମ ହରେର୍ନାମ ହରେର୍ନାମୈବ କେବଳଂ,
କଳୌ ନାସ୍ତ୍ୟେବ ନାସ୍ତ୍ୟେବ ଗତିରନ୍ୟଥା" ।

ଶ୍ରୀ ଚୈତନ୍ୟ ଚରିତାମୃତରେ ନାମ ସଙ୍କୀର୍ତ୍ତନର ମହିମା ବ୍ୟାଖ୍ୟାନ କରି କୁହାଯାଇଛି—

ନାମ ସଙ୍କୀର୍ତ୍ତନ ହୈତେ ସର୍ବାନର୍ଥ ନାଶ
ସର୍ବ ଶୁଭୋଦୟ କୃଷ୍ଣେ ପ୍ରେମେର ଉଲ୍ଲାସ ।

ଶ୍ରୀ ଚୈତନ୍ୟ ପଦ୍ୟାବଳୀରେ କହିଛନ୍ତି—

"ଚେତୋଦର୍ପଣମାର୍ଜ୍ଜନଂ ଭବମହାଦାବାଗ୍ନି ନିର୍ବାପଣଂ,
ଶ୍ରେୟଃ – କୈରବ – ଚନ୍ଦ୍ରିକାବିତରଣଂ ବିଦ୍ୟାବଧୂଜୀବନମ୍
ଆନନ୍ଦାମ୍ବୁଧିବର୍ଦ୍ଧନଂ ପ୍ରତିପଦଂ ପୂର୍ଣ୍ଣାମୃତାସ୍ୱାଦନମ୍ ।
ସର୍ବାତ୍ମସ୍ନପନଂ ପରଂ ବିଜୟତେ ଶ୍ରୀକୃଷ୍ଣସଙ୍କୀର୍ତ୍ତନମ୍ ।"

Digitized by srujanika@gmail.com

ଅର୍ଥାତ୍ ଯାହା ମାନସମୁକୁରର ମାଳିନ୍ୟ ଅପସାରଣ କରେ, ଯାହା ସଂସାର ରୂପ ଦାବାଗ୍ନିର ନିବାରକ, ଯାହା ପରମମଙ୍ଗଳ ପଥରୂପ ଶ୍ୱେତପଦ୍ମର ଶୁଭ୍ର ଜ୍ୟୋତ୍ସ୍ନା ସଦୃଶ, ଯାହା ପରମ ବିଦ୍ୟାରୂପ ବଧୂର ପ୍ରାଣ ସ୍ୱରୂପ, ଯାହା ଶ୍ରବଣ ଫଳେ ସୁଖ ସାଗର ଉଦ୍‌ବେଳ ହୋଇଉଠେ, ଯାହାର ପଦ ପଦକେ ଅମୃତାସ୍ୱାଦ ପୂର୍ଣ୍ଣରୂପେ ବିରାଜମାନ, ଯାହା ଆତ୍ମାକୁ ରସାବେଶଦ୍ୱାରା ସ୍ନାତ କରାଇ ଅଭୂତପୂର୍ବ ପ୍ରୀତିସୁଖ ପ୍ରଦାନ କରେ, ସେହି ହରିସଂକୀର୍ତ୍ତନ ଜୟଯୁକ୍ତ ହୋଇଅଛି ।

ସର୍ଗଶେଷର ତୃତୀୟ ପର୍ଯ୍ୟାୟ ଆରମ୍ଭ ହୁଏ କାମାନନ୍ଦ ଯୋଗୀ ପ୍ରସଙ୍ଗରେ । ସେ ମଧ କାପାଳିକ । ପ୍ରଥମ କାପାଳିକଠାରୁ ସ୍ୱତନ୍ତ୍ର । ୧ ସକଳ ବିଦ୍ୟାରେ ନିପୁଣ । ବିଦ୍ୟା ବଳରେ ତିନି ଭୁବନକୁ ଜିଣିପାରେ । ଏହି ପ୍ରସଙ୍ଗରେ ଲେଖକ କଳ୍ପ ଚିନ୍ତାମଣି, ଗରୁଡ଼ ପୁରାଣ, କୌତୁକ ଚିନ୍ତାମଣି, ବୌଦ୍ଧ ଆଗମାଦି ଗ୍ରନ୍ଥର ଉଲ୍ଲେଖ କରିଛନ୍ତି । ବିଦ୍ୟା ମଧ୍ୟରେ ବିଭିନ୍ନ ପ୍ରକାର କଳ୍ପ, ମଣି, ସାଧନ, ଅଷ୍ଟବେତାଳ ଓ ଚଉଃଷଷ୍ଠୀ ଯୋଗିନୀସାଧନା କଥା କହିଛନ୍ତି । ଭୁବନେଶ୍ୱରୀଙ୍କ ପ୍ରସନ୍ନ କଲା ପରେ, ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧ୍ୟାନ, ଧାରଣା ଓ ସମାଧି ପ୍ରଭୃତି ଯୋଗମାର୍ଗର ଅଷ୍ଟାଙ୍ଗ ସାଧନା ସାଧି ବିଭିନ୍ନ ପ୍ରକାର ଅଲୌକିକ ଶକ୍ତି ସଞ୍ଚୟ କରିଛି । ଏସବୁ ଶକ୍ତି ବଳରେ ସେ ଅନଳକେତର ପରି ଭୂତକୁ ସଖା ରୂପେ ପାଇଅଛି । ଅନଳଖେଚରର ଅନେକ ମହିମା । ସେ ଭୂତ ଭବିଷ୍ୟ ସକଳ ଶାସ୍ତ୍ର ଜାଣେ । ଅଚରଚରକୁ ଯାଇପାରଇ । ମହାବାତେ ରହିପାରଇ । ତୃଣେ ଭେଦ ଚାଲିପାରଇ । ଗଗନମାର୍ଗେ ଉଡ଼ିପାରଇ । ଇତ୍ୟାଦି (ପୃ—୧୦୦) ଏହିପରି ବହୁ ଅସାଧ୍ୟ ସାଧନ କରିପାରୁଥିଲେ ହେଁ ଏହା ହେଉଛି ବାସୁଦେବଙ୍କ ଅଧମ ଭକ୍ତିର ଫଳ । ଅଧମ ଭକ୍ତିରୁ ପାପ ହୁଏ, ପୁଣ୍ୟ ହୁଏ ନାହିଁ । ଏସବୁ ଶକ୍ତି ସତ୍ତ୍ୱେ ଅବିଦ୍ୟା ମୁଖ୍ୟ ଦନ୍ତିବନ୍ଦୀ କାରଣୀ କନ୍ୟାକୁ ହରଣ କରିବାରେ ସେମାନେ ଅକ୍ଷମ ହୋଇଛନ୍ତି । ବାସୁଦେବ ତାଙ୍କ ନିକଟରେ ଏ ସବୁ ବିଦ୍ୟା ପରାହତ । ସେଥିପାଇଁ କାମାନନ୍ଦ ଯୋଗୀ ନିରୁପାୟ ହୋଇ କୁମାର ସହ କପଟ ପ୍ରୀତି କରିଛି । ତଥା ଅସମର୍ଥ ହେଲେ ହେଁ କୁମାରର ବାସୁଦେବପ୍ରୀତି ହିଁ ତାକୁ ସବୁ ସ୍ଥଳରେ ବିଜୟୀ କରିଥିବା ଅନୁମାନ କରାଯାଇପାରେ ।

କାମାନନ୍ଦ ଯୋଗୀ ବିଭିନ୍ନ ସାଧନାରେ ସିଦ୍ଧିଲାଭ କରିଥିଲେ ହେଁ ସେ ଥିଲେ ଜଣେ ଲକ୍ଷ୍ୟଭ୍ରଷ୍ଟ ଯୋଗୀ ବା ନରାଧମ । ଭୁବନେଶ୍ୱରୀ ତାଙ୍କୁ ମୋକ୍ଷ ପଦ ଯାଚିଲ

---

୧—ଗୋରେକ୍ଷପନ୍ଥୀ ସାଧୁଙ୍କ ପରି କର୍ଣ୍ଣରେ କୁଣ୍ଡଳ ବା କାଟା ମୁଦ୍ରା (ପୃ—୯୭ । କେଶ ଚାଦାର ଦରବେଶ । ସାକ୍ଷୀ ଶବ୍ଦ କହୁଅଛି । ଅଙ୍ଗେ ବିଭୂତି । ମନ୍ତ୍ର ମୂଳିକା ଜାଣି । (ପୃ-୧୨୦)

Digitized by srujanika@gmail.com

ବେଳେ ସେ ବିଷୟସ୍ୱରସର କାମନା କରିଛନ୍ତି । ତାଙ୍କ ମତରେ "ବିଷୟରସ ବ୍ୟତୀତେ ଆନନ୍ଦ ଅବା ଅଛି କାହିଁ । ବିଷୟ ଆନନ୍ଦ ହିଁ ସେ ସୁଖ । ସୁଖ ହିଁ ସେ ଜ୍ଞାନ । ନୋହିଲେ କେମନ୍ତେ ଖଗେନ୍ଦ୍ର ଚୂଡ଼ାମଣି ଅର୍ଦ୍ଧାଙ୍ଗେ ଅଛନ୍ତି ହିମାଳୟନନ୍ଦିନୀ । ଆପଣେ ସୁଖ ପାଉଅଛି । ଜଗତକୁ ବିଡ଼ମ୍ବି ଭଣ୍ଡାଇବା ନିମିତ୍ତ ସ୍ତ୍ରୀ ବସ୍ତୁ ଅଜ୍ଞାନ ବୋଲି କହୁଅଛି । ଉପବାସେ ଥାଇ, ଖରକାକର ଖାଇ, ସଙ୍ଗ ନ ଦେଖି, ଅରଣ୍ୟ ଭୂମିରେ ଥାଇ କେ ଅବା କାହିଁ ଅଛି ଆନନ୍ଦ ସୁଖ ପାଇ ।" ସେଥିପାଇଁ ସେ "ଦିବ୍ୟ ହେମଘରେ, ସୁଲୋଚନା ମଣ୍ଡଳରେ, ଚନ୍ଦ୍ର ଜ୍ୟୋସ୍ନାରେ, ଉଜ୍ଜ୍ୱଳ ବସ୍ତ୍ରରେ, ଚନ୍ଦନ ଲେପନ ଗାତ୍ରରେ, ମନ୍ଦ ମନ୍ଦ ପବନରେ, ବୀଣା ଶ୍ରବଣରେ, କୁସୁମାଦିତ ଉପବନରେ, ମଳୟ ମନ୍ଦ ପବନରେ, ନିବିଡ଼ ଆଲିଙ୍ଗନରେ, ମୃଗ ଦୃଶାର ପ୍ରେମ ପ୍ରସନ୍ନ ମୁଖ ଦର୍ଶନେ କେ ଅବା ନ ପାଇବଟି ପରମ ସୁଖ ଏସନେ । ମୋହମତେ ବିଷୟିହିତେ ବୋଧଜ୍ଞାନ । ଏଥି ଉତ୍ତାରେ କେ ନୋହିବ ଜ୍ଞାନ ।" (ପୃ – ୯୦) ସେଥିପାଇଁ ସେ ମୋକ୍ଷ ଚାହିଁ ନାହିଁ । ବିଷୟରସରେ ରତ ହେବା ପାଇଁ ଶକ୍ତି ଚାହିଁଛି । ଯୋଗସାଧନା କରି ଅସୀମ ଶକ୍ତି ଲାଭ କରିବା ପ୍ରକୃତ ଯୋଗୀର ଲକ୍ଷ୍ୟ ନୁହେଁ । ସମାଜରେ ପ୍ରତି-ଷ୍ଠିତ ଓ ସମ୍ମାନିତ ହେବା ପାଇଁ କୌଣସି କୌଣସି ଯୋଗୀ ଏ ପ୍ରକାର ସାଧନା କରିଥିଲେ ହେଁ ଏହା ହେଉଛି ଲକ୍ଷ୍ୟଭ୍ରଷ୍ଟ ଯୋଗୀର କଥା ।

ଏହି ପ୍ରସଙ୍ଗରେ ସାଧକର ଚରମ ଲକ୍ଷ୍ୟ ମୋକ୍ଷପ୍ରାପ୍ତିର ବିଷୟ ମଧ୍ୟ କହି-ଯାଇପାରେ । ମୋକ୍ଷ ଶବ୍ଦର ଅନ୍ୟ ପର୍ଯ୍ୟାୟବାଚୀ ଶବ୍ଦ ହେଉଛି ପରମଶ୍ରେୟ, କୈବଲ୍ୟ ବା ନିର୍ବାଣ । ଏହି ଅବସ୍ଥାରେ ଯୋଗୀ ସବୁପ୍ରକାର ସଂସର୍ଗ, କ୍ରିୟା, ମନ, ବୁଦ୍ଧି, ମୁହିଁ ମୋହର ଭାବ, ଅହଂକାର, ଜ୍ଞାନାଜ୍ଞାନ ଜାଗ୍ରତ ଓ ସ୍ୱପ୍ନ ଇତ୍ୟାଦି ଅବସ୍ଥାକୁ ଅନୁଭବ କରିପାରେ ନାହିଁ । ତା ସ୍ଥାନରେ ସେ ଅନୁଭବ କରେ ଆନନ୍ଦ ଘନ ନିବିଡ଼ବୋଧ । ସେ ଏତିକିବେଳେ ତୁରୀୟାତୀତ ଅବସ୍ଥାରେ ଥାଏ ଏବଂ ସଦାସର୍ବଦା ସତ୍ୟ, ନିତ୍ୟ, ଅନନ୍ତ ସ୍ପର୍ଶ ପାଏ । ଏହି ଅବସ୍ଥାକୁ ମୋକ୍ଷ ଅବସ୍ଥା ବା ପୂର୍ଣ୍ଣବ୍ରହ୍ମ ଅନୁଭୂତି କୁହାଯାଏ । ଶଙ୍କରାଚାର୍ଯ୍ୟ ତାଙ୍କ ରଚିତ ଅପରୋକ୍ଷାନୁଭୂତି ଗ୍ରନ୍ଥରେ କହିଛନ୍ତି—

"ତ୍ୟାଗଃ ପ୍ରପଞ୍ଚରୂପସ୍ୟ ଚିଦାତ୍ମତ୍ୱାବଲୋକନାତ୍
ତ୍ୟାଗୋ ହି ମହତାଂ ପୂଜ୍ୟଃ ସଦ୍ୟୋ ମୋକ୍ଷମୟୋ ଯତଃ ।"
(୧୦୬)

ଅର୍ଥାତ୍ ଚିଦାତ୍ମର ଅବଲୋକନପୂର୍ବକ ପ୍ରପଞ୍ଚ ରୂପର ତ୍ୟାଗ ହୋଇଥାଏ । ଏହି ତ୍ୟାଗ ମହତ୍ ବ୍ୟକ୍ତିଗଣର ପୂଜ୍ୟ, ଯେଉଁଥିରୁ ସଦ୍ୟ ମୋକ୍ଷମୟ ଅବସ୍ଥା ପ୍ରାପ୍ତ ହୁଏ । ଅନ୍ୟ ସ୍ଥଳରେ ଶଙ୍କରାଚାର୍ଯ୍ୟ କହିଛନ୍ତି—ବ୍ରହ୍ମ ହିଁ ଅଜ୍ଞାନତାବଶତଃ ଜଗତ ରୂପେ

Digitized by srujanika@gmail.com

ପ୍ରତିଷ୍ଠିତ ହୋଇଥାଏ । ଏହି ହେତୁ ଅର୍ଥ ଅଜ୍ଞାନର ବିନାଶ ବା ଅପନୋଦନ କରିବା ଦ୍ୱାରା ଦୃଶ୍ୟାଦି ବିନଷ୍ଟ ହୋଇ ବ୍ରହ୍ମରେ ପର୍ଯ୍ୟବେସିତ ହୁଏ । ବିଶ୍ୱ ହିଁ ବୈତୋକ୍ତ ପ୍ରତିରୂପ । ଭିତ୍ତି କ୍ଲେଶାଦିର ଆକାର । ତେଣୁ ଶଙ୍କର ବା ବେଦାନ୍ତୀ ସାଧକ ବ୍ରହ୍ମ ଓ ପ୍ରପଞ୍ଚର ଅଭିନ୍ନତ୍ୱ ଜ୍ଞାନକୁ ଭବମୋକ୍ଷ ଅଥବା ସଂସାରମୋଚନର କାରଣ ରୂପେ ଗ୍ରହଣ କରିଥାଏ । ରୁଦ୍ରସୁଧାନିଧିରେ ମୋକ୍ଷାବସ୍ଥାର ଯେଉଁ ଚିତ୍ର ଦିଆଯାଇଛି ତାହା ଶଙ୍କରଙ୍କ ମତର ଅନୁରୂପ । ଶିବ ଜ୍ଞାନଦାତା ଓ ବିଷ୍ଣୁ ମୋକ୍ଷପ୍ରଦାୟକ । ଏହି ଶକ୍ତି-ଦ୍ୱାରା ପ୍ରଭାବିତ ହୋଇ ନାରାୟଣ ଦାସ ବାସୁଦେବଙ୍କ ଶରଣ କଥା ବାରମ୍ବାର କହିଥିଲେ ହେଁ ଏହା ଶ୍ରୀ ଚୈତନ୍ୟ ପ୍ରବର୍ତ୍ତିତ ମତ ସହ ସମତା ରକ୍ଷା କରିପାରି ନାହିଁ । ମୋକ୍ଷର ଆଲୋଚନା କାଳରେ ଶ୍ରୀକୃଷ୍ଣଙ୍କ ନାମ ଦେଖି କେହି କେହି ଏହାକୁ ବୈଷ୍ଣବ ମତ କହିପାରନ୍ତି । କିନ୍ତୁ ପ୍ରକୃତରେ ତାହା ନୁହେଁ । ଚୈତନ୍ୟ ନିଜ ଜୀବନର ଆଦର୍ଶ ନିର୍ଦ୍ଦିଷ୍ଟ କରି ପଦ୍ୟାବଳୀରେ କହିଛନ୍ତି—

"ନ ଧନଂ ନ ଜନଂ ସୁନ୍ଦରୀଂ
କବିତାଂ ବା ଜଗଦୀଶ ନ କାମୟେ
ମମ ଜନ୍ମନି ଜନ୍ମନୀଶ୍ୱରେ
ଭବତାଦ୍ ଭକ୍ତି ରହୈତୁକୀ ତ୍ୱୟି ।"

ଅର୍ଥାତ୍ ହେ ଜଗଦୀଶ, ମୁଁ ଧନ କାମନା କରୁ ନାହିଁ । ଜନ ଚାହୁଁ ନାହିଁ, ସୁନ୍ଦରୀ ନାରୀ ପ୍ରାର୍ଥନା କରୁ ନାହିଁ କବିତ୍ୱଶକ୍ତି ମଧ୍ୟ ଚାହେଁ ନାହିଁ, କିନ୍ତୁ ଆପଣଙ୍କ ପ୍ରତି ଅହେତୁକ ଭକ୍ତି ହିଁ ମୋର ପ୍ରତି ଜନ୍ମର କାମନା । ସେ ଆହୁରି କହିଛନ୍ତି—

"ଅୟି ନନ୍ଦତନୁଜା କିଙ୍କରଂ
ପତିତଂ ମାଂ ବିଷମେଭବାମ୍ବୁଧୌ
କୃପୟା ତବ ପାଦପଙ୍କଜ—
ସ୍ଥିତ ଧୂଳି ସଦୃଶଂ ବିଚିନ୍ତୟ ।"

ଅର୍ଥାତ୍ ହେ ନନ୍ଦନନ୍ଦନ, ତ୍ୱଦୀୟ କିଙ୍କର ବିଷମ ଭବସାଗରରେ ନିମଗ୍ନ ହୋଇଥିବା ମୋତେ ଆପଣଙ୍କ ପାଦପଦ୍ମସ୍ଥ ଧୂଳିକଣା ସଦୃଶ ଦାସ୍ୟ ଭାବେ ଗ୍ରହଣ କର । ମୋକ୍ଷପ୍ରାପ୍ତି ଓ ଦାସ୍ୟ ଭାବରେ ଭଗବାନଙ୍କ ପାଦତଳେ ଶରଣ ନେବାରେ ପାର୍ଥକ୍ୟ ବହୁତ । ବିଶେଷ କରି ବୈଷ୍ଣବମାନେ ଶଙ୍କରଙ୍କ 'ନାହିଁ' ତତ୍ତ୍ୱକୁ ସ୍ୱୀକାର କରନ୍ତି ନାହିଁ ।

ରୁଦ୍ରସୁଧାନିଧି ଧର୍ମ ଆଲୋଚନା କଲାବେଳେ ଲେଖକଙ୍କ ଦୃଷ୍ଟିକୋଣକୁ ମଧ୍ୟ ବିଚାର କରାଯାଇପାରେ । କେବଳ ବିଷୟବସ୍ତୁର ସଂଯୋଜନା ନୁହେଁ, ରଚନା

Digitized by srujanika@gmail.com

ଚରିତ୍ର ଚିତ୍ରଣ କଲାବେଳେ ଲେଖକ ଧର୍ମକୁ ମୂଳସୂତ୍ର ରୂପେ ଗ୍ରହଣ କରିଛନ୍ତି । ତାଙ୍କ ଗ୍ରନ୍ଥର ପ୍ରତ୍ୟେ ମୁଖ୍ୟଚରିତ୍ର ବାସୁଦେବ ଭକ୍ତ । ରୁଦ୍ରସୁଧାନିଧିର ପିତା ଅନଙ୍ଗ ପଦ୍ମାକର ବିଷୟରେ ଲେଖକ କହିଛନ୍ତି ଯେ, "ସେ ବିଶିଷ୍ଟ ବୈଷ୍ଣବ ନିତ୍ୟ ।" ରାଣୀ ମଧ୍ୟ ଗର୍ଭ-ବେଦନାର ଉପଶମ ପାଇଁ ବାସୁଦେବଙ୍କୁ ବାରମ୍ବାର ସ୍ମରଣ କରିଛନ୍ତି । ରାଜା ଯେଉଁ ପଣ୍ଡିତମାନଙ୍କ ସହ ରାଣୀଙ୍କ ସ୍ୱପ୍ନକଥା ଆଲୋଚନା କରିଛନ୍ତି, ସେମାନେ ମଧ୍ୟ ବାସୁଦେବଙ୍କ ଭକ୍ତ । ଜନ୍ମ ହେବା ପରେ ରୁଦ୍ରସୁଧାନିଧି କେବଳ ଯେ ବୈଷ୍ଣବୀମାୟା-ଦ୍ୱାରା ମୋହିତ ହୋଇଛି ତାହା ନୁହେଁ, ସଂଜ୍ଞାହରଣୀକୁ ଶ୍ରୀକୃଷ୍ଣଙ୍କ ନାମ ଜପ କରିବାକୁ ଉପଦେଶ ଦେଇଛି । ଜନ୍ମହେବାପୂର୍ବରୁ ମଧ୍ୟ ସେ କାପାଳିକ ଅବଧୂତକୁ ବାସୁଦେବରେ ଶରଣ ନିବା ପାଇଁ କହିଛି । ନାୟକ ପରି ନାୟିକାର ପିତା ଧର୍ମଧ୍ୱଜ ମଧ୍ୟ ଅତ୍ୟନ୍ତ ବୈଷ୍ଣବ ।' ବାସୁଦେବଙ୍କ ଚରଣରେ ମନ ବୃତ୍ତି ଦେଇ ବାହ୍ୟ ଜ୍ଞାନ ପାଶୋରି ଥାଏ । ତାଙ୍କର ସ୍ତ୍ରୀ ଆଗ ମଧ୍ୟ ସେ ସ୍ତ୍ରୀର ବଶ ନୁହନ୍ତି । ସମସ୍ତ ସ୍ତ୍ରୀଙ୍କୁ ବାସୁଦେବ ଜ୍ଞାନରେ ସମ୍ମାନ କରିଥାନ୍ତି । (ପୃ-୧୦୩) ରାଣୀ କୋକିଳାବତୀ ମଧ୍ୟ "ଲକ୍ଷ୍ମୀଦେବୀଙ୍କୁ ଅନେକ ପ୍ରକାର ସେବା କରୁଥାଏ ।" ସେମାନଙ୍କର ଭକ୍ତିରେ ସନ୍ତୁଷ୍ଟ ହୋଇ ବିଷ୍ଣୁ ସଦା ସର୍ବଦା ସେମାନଙ୍କୁ ତଥା ସେମାନଙ୍କ ରାଜ୍ୟକୁ ରକ୍ଷା କରିଥାନ୍ତି । ଏହିପରି ବାସୁଦେବଭକ୍ତ ରାଜା ଧର୍ମଧ୍ୱଜ ଓ ତାଙ୍କ ପତ୍ନୀ କୋକିଳାବତୀଙ୍କର କନ୍ୟା ହେଉଛି "ଅବିଦ୍ୟା ମୃତ୍ୟୁସଞ୍ଜୀବନୀ କରଣୀ" । ସେଥିପାଇଁ କାମାନନ୍ଦ ଯୋଗୀର ସମସ୍ତ ସାଧନା ଭୂତ, ପ୍ରେତ, ଚଣ୍ଡ, ବେତାଳ, ପିଶାଚ, ଯକ୍ଷ, ବ୍ରହ୍ମଦୈତ୍ୟ ଇତ୍ୟାଦିଙ୍କ ସହାୟତା କନ୍ୟା ହରଣରେ ସହାୟକ ହୋଇ ନାହିଁ । ବିଷ୍ଣୁଙ୍କ ସୁଦର୍ଶନ ଚକ୍ର ସବୁ ବିପଦରୁ ରାଜାଙ୍କୁ ରକ୍ଷା କରିଛି । ଏହିପରି ଦେଖିଲେ ରୁଦ୍ରସୁଧାନିଧି ଗ୍ରନ୍ଥର ସବୁ ଚରିତ୍ର ବାସୁଦେବ ଭକ୍ତ । ଲେଖକ ନିଜେ ମଧ୍ୟ ଯେତେବେଳେ ନିଜ ବିଷୟରେ କହିଛନ୍ତି, ସେତେବେଳେ ନିଜକୁ ଜଣେ ବୈଷ୍ଣବ ଭାବରେ ଚିତ୍ରଣ କରିଛନ୍ତି । ଯେଉଁଥିରୁ ଗୋଟିଏ ସ୍ଥାନରେ କୁହାଯାଇଛି 'କାହିଁ ପୁରୁଷୋତ୍ତମ କ୍ଷେତ୍ରରେ ସିଦ୍ଧମାନେ ପୁତ୍ର ଦାର ଘେନି କରିଥାନ୍ତି ବାସ । ନିରନ୍ତରେ ବିଷୟରସେ ନିମଗ୍ନ ଥାଆନ୍ତି । କୌଣସିମାନେ ସ୍ୱଇଚ୍ଛା ଏ ଦେହ ତ୍ରୁଟି ହୃଦୟ୍ୟାଗତ ପରମ ଯୋଗ ନିର୍ବାଣ ବ୍ରହ୍ମମୟ ସୁଖକୁ ଯାନ୍ତି । କାହିଁ କୌଣସିମାନେ ନିଳ ନୀଳଧର ନିବିଡ଼ ଆନନ୍ଦ ବୋଧ ସ୍ୱରୂପ ଚତୁର୍ଭୁଜ ଶରୀର ପାଆନ୍ତି । ଏସବୁକୁ ଈଶ୍ୱରଙ୍କ ମାୟା କୁହାଯାଇଥିଲେ ହେଁ ଏହା ପ୍ରକୃତରେ ଯଥାକ୍ରମେ କର୍ମୀ, ଜ୍ଞାନୀ ଓ ଭକ୍ତଙ୍କର ବିବରଣୀ ପ୍ରଦାନ କରିଥାଏ ଓ ପୁରୁଷୋତ୍ତମ କ୍ଷେତ୍ରର ମହାତ୍ମ୍ୟ ପ୍ରତିପାଦନ କରେ । ବୈଷ୍ଣବପ୍ରବର ବୃନ୍ଦାବନ ଦାସ 'ଶ୍ରୀ ଚୈତନ୍ୟ ଭାଗବତ'ରେ ପୁରୁଷୋତ୍ତମ କ୍ଷେତ୍ରର ମହାତ୍ମ୍ୟ ପ୍ରତିପାଦନ କରି ଲେଖିଛନ୍ତି—

"ସିନ୍ଧୁତୀରେ ବଟମୂଳେ ନୀଳାଚଳ ନାମ
କ୍ଷେତ୍ର ଶ୍ରୀ ପୁରୁଷୋତ୍ତମ-ଅତି ରମ୍ୟ ସ୍ଥାନ

Digitized by srujanika@gmail.com

ଅନନ୍ତ ବ୍ରହ୍ମାଣ୍ଡ କାଳେ ଯଖନ ସଙ୍ଗରେ
ତଭୁ ସେ ସ୍ଥାନେର କଚ୍ଛୁ କରତେ ନା ପାରେ
ସର୍ବକାଳ ସେଇ ସ୍ଥାନେ ଆମାର ବସତି
ପ୍ରତିଦିନ ଆମାର ଭୋଜନ ହୟ ତଥି ।
ସେଇ ସ୍ଥାନ— ପ୍ରଭାବେ ଯୋଜନ ଦଶଭୂମି
ତାହାତେ ବସୟେ ଯତ ଜନ୍ତୁକୀଟ କୃମି ।
ସଭାରେ ଦେଖୟେ ଚତୁର୍ଭୁଜ ଦେବଗଣେ
"ମରଣ ମଙ୍ଗଳ" କରି କହୟେ ଯେ ସ୍ଥାନେ
ନିଦ୍ରାତେଓ ଯେ ସ୍ଥାନେ ସମାଧି ଫଳ ହୟ
ଶୟନେ ପ୍ରଣାମ— ଫଳ ଯଥାବେଦେ କୟେ
ପ୍ରଦକ୍ଷିଣ— ଫଳ ପାୟେ କରଲେ ଭ୍ରମଣ
କଥାମାତ୍ର ଯଥାହୟେ ଆମାର ସ୍ତବନ
ହେନ ସେ କ୍ଷେତ୍ରେର ଅତି ପ୍ରଭାବ ନିର୍ମଳ
ମତ୍ସ୍ୟ ଖାଇଲେଓ ପାୟେ ହବିଷ୍ୟେର ଫଳ
ନିଜ ନାମେ ସ୍ଥାନେ ମୋର ହେନ ପ୍ରିୟତମ
ତାହାତେ ଯତେକ ବୈସେ, ସେଇ ମୋର ସମ । "

— ଅନ୍ତ୍ୟଖଣ୍ଡ" —

ଲେଖକ ଶୈବଧର୍ମର କେବଳ ଯେ ପ୍ରଶଂସା କରିଛନ୍ତି ତାହା ନୁହେଁ, ଏହାର ଦୋଷ ଦୁର୍ବଳତା ଦେଖାଇବା ପାଇଁ ନେତେକ ପ୍ରସଙ୍ଗର ଅବତାରଣା କରିଛନ୍ତି । ସେଥି ମଧ୍ୟରୁ ମୀମାଂସକ ପାଶୁପତ ଓ କାପାଳିକମାନଙ୍କ ଆଲୋଚନା ବିଶେଷଭାବେ ଉଲ୍ଲେଖଯୋଗ୍ୟ ।

ଜଗନ୍ନାଥ କ୍ଷେତ୍ର ସମ୍ବନ୍ଧରେ ଏହି ପ୍ରକାର ପ୍ରବୃତ୍ତି ସ୍କନ୍ଦ ପୁରାଣରେ ଆରମ୍ଭ ହୋଇ ବୃନ୍ଦାବନ ଦାସଙ୍କ ଚୈତନ୍ୟ ଭାଗବତ, ଦୀନକୃଷ୍ଣ ଦାସଙ୍କ ରସକଲ୍ଲୋଳ ଓ ଅନ୍ୟାନ୍ୟ ବହୁ କାବ୍ୟଗ୍ରନ୍ଥରେ ଦେଖିବାକୁ ମିଳେ । ନାରାୟଣ ଦାସ ସେହି ପରମ୍ପରାକୁ ଅନୁସରଣ କରି କ୍ଷେତ୍ର ମାହାତ୍ମ୍ୟ ପ୍ରକାଶ କରିଥିବା ଜଣାଯାଏ । ସେହି କ୍ଷେତ୍ରର ଅଧିପତି ହେଉଛନ୍ତି ଶ୍ରୀ ଜଗନ୍ନାଥ । ସେଥିପାଇଁ ଅନ୍ୟ ସ୍ଥଳରେ ଜଗନ୍ନାଥଙ୍କୁ ଯୋଗାଧିପତି ଭାବେ ମଧ୍ୟ ବର୍ଣ୍ଣନା କରିଛନ୍ତି । ତାଙ୍କର ଅନୁଗ୍ରହକୁ ଆଧାରରେ ଯୋଗସାଧନା ସମ୍ଭବ ହୁଏ । ତାଙ୍କର ଦୟା ହେଲେ ଅଶୁଚ ପ୍ରାଣୀ କାମୁକ, ମିଥ୍ୟାଭାଷୀ ମଦ୍ୟପ, ପିଶାଚପ୍ରକୃତିର ଲୋକ ମଧ୍ୟ ଯୋଗସାଧନା କରିବାକୁ ସକ୍ଷମ ହୁଏ । ସେହି ଜଗନ୍ନାଥଙ୍କ ସେବକମାନଙ୍କ ପାଦଧୂଳିର ପ୍ରସାଦରେ ନାରାୟଣ ଦାସ ଯୋଗସାଧନ

Digitized by srujanika@gmail.com

କରିଥିବା ନିଜେ ସ୍ୱୀକାର କରିଛନ୍ତି । କିନ୍ତୁ ସେ ଯୋଗସାଧନାକୁ କୌଣସି ସ୍ଥଳରେ ଶ୍ରେଷ୍ଠ ବୋଲି କହିନାହାନ୍ତି । କାପାଳିକ, ପାଶୁପାତ ଓ ଅନ୍ୟାନ୍ୟ ମାର୍ଗର ସାଧକମାନଙ୍କୁ ପରିହାସ କଲାପରି ସେ ଯୋଗୀମାନଙ୍କୁ ମଧ୍ୟ ହୀନ ଦୃଷ୍ଟିରେ ଦେଖନ୍ତି । ଯୋଗରେ ମନ ଦେଲେ ବହୁ ଅପରାଜିତ ଶକ୍ତି ଉପରେ ବିଜୟ ମିଳିଥାଏ । କିନ୍ତୁ ଏସବୁ ହେଉଛି ବୁଦ୍ଧିଯୋଗର ଶକ୍ତି; ବାସୁଦେବଙ୍କ ଭକ୍ତ ନିକଟରେ ଏସବୁ ନିକୃଷ୍ଟ ।

କାମାନନ୍ଦ ଯୋଗୀର ଅଭିଯାନ ବର୍ଣ୍ଣନା କଲାବେଳେ ଲେଖକଙ୍କର ପରିହାସ-ବ୍ୟଞ୍ଜିତ ଦୃଷ୍ଟିକୋଣ ବିଶେଷ ଭାବେ ଉଲ୍ଲେଖଯୋଗ୍ୟ । ଆଧୁନିକ ଯୁଗର କଥାସମ୍ରାଟ ଫକୀରମୋହନଙ୍କ 'ଧୂଳିଆବାବା' ପରି କାମାନନ୍ଦ ଯୋଗୀ ଲୋକଙ୍କୁ ଭଣ୍ଡାଇବା ପାଇଁ ବା ନିଜର ଶକ୍ତିର ପରିଚୟ ଦେବା ପାଇଁ ବହୁ କୃତ୍ରିମ ପନ୍ଥା ଅବଲମ୍ବନ କରିଛନ୍ତି । ସେ ଧର୍ମଧ୍ୱଜ ରାଜାଙ୍କ ପୁରକୁ ଶୂନ୍ୟେ ଶୂନ୍ୟେ ଆସିଥିବା କୁହାଯାଉଥିଲେହେଁ ପ୍ରକୃତରେ ଚାରି ଜଣ ଭୂତ ଅଦୃଶ୍ୟ ରୂପେ ରହି ତାଙ୍କୁ ବହନ କରି ଆଣିଛନ୍ତି । ଏହି କଥା ବର୍ଣ୍ଣନା କରି ଲେଖକ ଲେଖିଛନ୍ତି—"ବେତାଳ ମାନଙ୍କୁ ହକାରି ବୋଇଲା । ତୋଳି ଧରିଥିବ ମୋତେ ଅଦୃଷ୍ଟ ହୋଇ । ଆସନ ଚାରିପାରୁଶରେ ଥିବ ଚାରିଦିଗେ ଉଭାହୋଇ । ଧୀରେ ଧୀରେ ଗଲେ ତୁମ୍ଭଙ୍କୁ କେହି ନ ଦେଖିବ । ଏମନ୍ତ ଆଜ୍ଞା ଦେଇ ପଦ୍ମାସନେ ବସିଲା । ବେତାଳେ ତୋଳିଧରି ଆଣୁଅଛନ୍ତି । ଆକାଶରେ ସିଦ୍ଧର ଗମନ ହୋଇଲା ବୋଲି ଲୋକେ ଜାଣୁଅଛନ୍ତି ।" ସେହି ଯୋଗୀ ସମ୍ମୁଖରେ ଗୋଟିଏ ପାଟଛତ୍ର ଶୂନ୍ୟରେ ରହିଲା ପ୍ରାୟେ ଦିଶୁଅଛି । କିନ୍ତୁ ପ୍ରକୃତରେ ତାକୁ ଧରିଛି ଭୂତଚୂଡ଼ାମଣି । ସେ ଅଦୃଶ୍ୟ ହୋଇ ରହିଥିବାରୁ କେହି ଦେଖିପାରୁ ନାହାନ୍ତି । ଯୋଗୀର ଏହି ମହିମା ଦେଖି ସବୁ ଲୋକେ ସାଷ୍ଟାଙ୍ଗେ ପ୍ରଣିପାତ କରୁଛନ୍ତି । ରାଜା ମଧ୍ୟ ଭୂମିକି ଓହ୍ଲାଇଆସିବା ଦେଖି କୃତକୃତ୍ୟ ହୋଇ ମହାଗୌରବ କଲା । ସମସ୍ତଙ୍କ ମୁହଁରେ ଗୋଟିଏ କଥା—ଏ ସିଦ୍ଧ ପୁରୁଷ ଅଟଇ । ନୋହିଲେ ଆକାଶରେ ଆସିବ କି । ଏମନ୍ତ ଯୋଗ ଲକ୍ଷଣ ତ କାହିଁ ଦେଖିଲା ନାହିଁ । ରାଜା ଏ କଥା ବିଚାରି କଲାବେଳେ ତାଙ୍କ ମନରେ ସନ୍ଦେହ ସୃଷ୍ଟି ହେଉଛି । ଏତେବଡ଼ ସିଦ୍ଧ ହୋଇ ମନୁଷ୍ୟସମାଜକୁ ଆସିବାର ଆବଶ୍ୟକତା କ'ଣ ? ଯୋଗୀ କିନ୍ତୁ ପିଶାଚୀ ବିଦ୍ୟାବଳରେ ରାଜାଙ୍କ ବିଚାର ଜାଣି କହୁଛି । ପୂର୍ବେ ମହାଋଷିମାନେ ଲୋମଶ, ପରାଶର, ବଶିଷ୍ଠ ବିଶ୍ୱାମିତ୍ର ଆଦିକରି ଏମାନେ ପରମସିଦ୍ଧ ସିନା ! ଏ ପୁଣି ରାଜାମାନଙ୍କୁ ଭେଟ ନୋହନ୍ତି କି ? ଗୋରେଖ ମତ୍ସ୍ୟେନ୍ଦ୍ରନାଥ ସିଦ୍ଧ-ମାନେ ରାଜାମାନଙ୍କୁ ଭେଟ ଦେଇ ନିସ୍ତାର କରନ୍ତି । ରାଜାଙ୍କର ଭୟ ବଢ଼ିଗଲା । ଏକେତ ଶୂନ୍ୟରେ ଆସୁଥିଲା ଦ୍ୱିତୀୟରେ ମନକଥା ଜାଣିପାରିଲା । ରାଜାଙ୍କୁ ଆହୁରି ଭୟଭୀତ କରିବା ପାଇଁ କାମାନନ୍ଦ ଯୋଗୀ ଉଚ୍ଛୁକ ବିଭୂତି କପୋଳରେ ଘଷି ଅଦୃଶ୍ୟ ହୋଇଗଲା । ରାଜା ସମେତ ରାଜଦରବାରର ସମସ୍ତ ବ୍ୟକ୍ତି ଆକୁଳ ହେଲେ । ହସ୍ତ-

Digitized by srujanika@gmail.com

ପ୍ରାପ୍ତ ନିଧି ଗଳ୍ପ ବୋଲି ବୋଇଲେ । ଏତଦ୍‌ପର ଭାବେ ନଜର ଇନ୍ଦ୍ରଜାଲ ବିଦ୍ୟା ପ୍ରଭାବରେ ଭାମାନନ୍ଦ ଯୋଗୀ ସମସ୍ତଙ୍କୁ ବଶୀଭୂତ କରିପାରିଥିଲା ।

ଏସବୁ ଆଲୋଚନାର ମୂଳତତ୍ତ୍ୱ ହେଲା ନାରାୟଣ ଦାସ କିଛି ଯୋଗବିଦ୍ୟା ହାସଲ କରିଥିଲେ ହେଁ ସେଥିପ୍ରତି ତାଙ୍କର ଆଦୌ ଆସକ୍ତି ନ ଥିଲା ଏବଂ ବିଦ୍ୟା ବଳରେ ସେ ଲୋକଙ୍କୁ ଭଣ୍ଡିବା ପାଇଁ ଇଚ୍ଛୁକ ନ ଥିଲେ । ସେ ସ୍ପଷ୍ଟଭାବରେ ଏପରି ଯୋଗୀମାନଙ୍କୁ ନରାଧମ ଆଖ୍ୟା ଦେଇଛନ୍ତି । ଯୋଗବିଦ୍ୟା ଜଗନ୍ନାଥଙ୍କ ପ୍ରସାଦରୁ ମିଳିଥିଲେ ହେଁ ଏ ପ୍ରକାର ବିଦ୍ୟା ଯେ ସମାଜ ପ୍ରତି ଅହିତକର, ଏ କଥା ତାଙ୍କ ଗ୍ରନ୍ଥ ଭିତରେ ବାରମ୍ବାର କୁହାଯାଇଛି । ତେଣୁ ନାରାୟଣ ଦାସ ଯୋଗୀ ନ ଥିଲେ । ଶାକ୍ତମାର୍ଗୀ ସାଧକ ନ ଥିଲେ । କାପାଳିକ ନ ଥିଲେ । ବେଦାନ୍ତ ମାର୍ଗକୁ ସମର୍ଥନ କରୁଥିଲେ ହେଁ ବୈଷ୍ଣବଧର୍ମର ନାମମାହାତ୍ମ୍ୟ ତାଙ୍କର ସର୍ବଶ୍ରେଷ୍ଠ ଅଙ୍ଗୀକାର । ଏ ଉପଦେଶ ଗ୍ରନ୍ଥର ମଧ୍ୟଭାଗରେ ସୂଚିତ ହାଣ୍ଡୀକୁ ପ୍ରଦତ୍ତ ହୋଇଥିଲେ ହେଁ ଗ୍ରନ୍ଥ ମଧ୍ୟରେ ବାସୁଦେବ ଭକ୍ତର ଯେଉଁ ପରିବେଶ ସୃଷ୍ଟି ହୋଇଛି, ସେ ଦୃଷ୍ଟିରୁ ବୈଷ୍ଣବଧର୍ମ ହିଁ ଥିଲା ତାଙ୍କ ଜୀବନର ପରମ ଲକ୍ଷ୍ୟ ଓ ଚରମ ଆଦର୍ଶ । ସେହି ଧର୍ମର ଧ୍ୱଜ ଧରି, ସେ ଆଗେଇ ଯାଇଛନ୍ତି । ତାଙ୍କ ପଛରେ ପଡ଼ିରହିଛି ଶୈବ, ଶାକ୍ତ, କାପାଳିକ, ତାନ୍ତ୍ରିକ ଓ ନାଥ ଧର୍ମର ଅତୀତ ପରମ୍ପରା ।



Digitized by srujanika@gmail.com

# ରୁଦ୍ର ସୁଧାନିଧି

ଶ୍ରୀ ହରିହରାଭ୍ୟାଂ ନମଃ (୧) :—ଶ୍ରୀ ଏକାମ୍ରର (୨) ବନ ଆଶ୍ରିତ (୩) । ଶ୍ରୀ ଭୁବନେଶ୍ୱର (୪) ଦେବଙ୍କର ବରପୁତ୍ର । ନିର୍ଦ୍ଦୋଷ (୫) ବାଗ୍ (୬) ବିଶେଷ ଆଗମ ଜନ୍ମ (୭) । ପୁରୁଷ (୮) ବଡାର ଶାରଦା । ଦିଗ୍‌ଗଜ (୯) ପଣ୍ଡିତଙ୍କ (୧୦) ବିଜୟ-କେଶରୀ । ଶୁଦ୍ଧଧୀରେ ମଣ୍ଡଳବିଜ୍ଞ । ପଣ୍ଡିତ ଜନସମ୍ମୁଖକୁ ଉନ୍ମତ୍ତ ମୂବା (୧୧) । ଷଣ୍ଡ (୧୨) ପଞ୍ଚାନନ । ନବକୃତ୍ତ କଣ୍ଠୀରବ । ପଞ୍ଚମ ବେଦ, ଷଡ୍ ଶାସ୍ତ୍ର (୧୩), ଜନଧା (୧୪) ବ୍ୟାକରଣ, ଅଷ୍ଟାଦଶ ପୁରାଣ (୧୫), ଗୀତା (୧୬), ଛତିଶ ମୃତ୍ତି, ନବ ନାଟକ ସ୍ତମ୍ଭନ, ମୋହନ, ବଶ୍ୟ (୧୭), ଉଚ୍ଚାଟନ, ଗୋଟିକା, ଅଞ୍ଜନ, ପାଦୁକ (୧୮) ଲେପନ, ରସ, ରସାୟନ (୧୯), ଉଲଗ, କୁହୁକ, ମଣି, ମନ୍ତ୍ରୌଷଧି (୨୦) ଇତ୍ୟାଦି ଜଣ (୨୧) ବିଦ୍ୟାପଟଳ, ତପତ କନକ କଣିକା (୨୨) ଏବଂଭୂତ (୨୩) ନାରାୟଣାନନ୍ଦ ଅବଧୂତର ବାକ୍ୟବାଣୀ (୨୪) ବ୍ରହ୍ମସୁଧାର ଗ୍ରନ୍ଥେ (୨୫) ନବରତ୍ନ

---

୧-କ ଶ୍ରୀ ଶିବାୟ ନମଃ, ୨- ବନ୍ଧୁ ଏକାମ୍ର, ୩-କ ଆଗ୍ରହି, (୪-କ ଶ୍ରୀ ଭୁବନାଦ୍ରି ଦେବ, ୫-(କ) ଅନଦେଷ, ୬-(ଖ) ବାକ୍, ୭-(କ) ନାହିଁ, ୮-(କ) ପୁଂସା, ୯-(କ) ବିଶାରଦ, ୧୦-(କ) ଶୁଦ୍ଧ ପଣ୍ଡିତ, ୧୧-(କ) ସର୍ବସ ସମ୍ମୋହକୁ ଉନ୍ନତ ମୂବା, ୧୨-(କ) ଯୋଦ୍ଧା ୧୩-(କ) ଛଡ଼ ଶାସ୍ତ୍ରାପ, ୧୪-(କ) ନ, ୧୫-(ଖ) ବିଦ୍ୟା, ୧୬-(ଖ) ଚାରି ପୁରାଣ, ୧୭-(କ) ବଶ, ୧୮-(ଖ) ପାଦୁକା, ୧୯-(କ) ଲେପନ, ରସ, ରସାୟନ ନାହିଁ, ୨୦-(କ) ନାହିଁ, ୨୧-(ଖ) ନାହିଁ, ୨୨-(ଖ) ପାଦୁକବେ କଣି, ୨୩-(ଖ) ନାହିଁ, ୨୪-(ଖ) ବାକ୍ୟ ବାଗ୍ମିଶେଷ, ୨୫-(କ) ନାହିଁ,

Digitized by srujanika@gmail.com

ଦୀପ (୧) ଜଡ଼ିତ ମଣି । ବ୍ରହ୍ମାଣ୍ଡ ସେଧକର (୨) ପ୍ରଶସ୍ତ । ଜାଣିମେ ଥୋକେ । ନ ଜାଣି ପୁଛିବେ ନା ବହୁତ ଲୋକେ । ଏମୁକର କହିବା ନା ଆଦ ସମ୍ଭବ ଯାକେ । ସେ କଥା ମୁଁ ଅବା କେହ୍ମଣ ? କପିଳାସ ଭବରେ ଯାବତାଙ୍କି ହର ପୁଛାକଲେ ଯେଉଣ (୩) ଶିବ ଶିବ ନମଃ ଶିବାୟ (୪) ବ୍ରହ୍ମାଣ୍ଡ ଖଣ୍ଡେ, ଭୂତାଦି ଝଣ୍ଡେ (୫), ଭୁବନଣ୍ଡ (୬) ଖଣ୍ଡେ, କନକାଚଳ ଦଣ୍ଡେ, ବ୍ରହ୍ମଶୁକ୍ଳ ଶୂଳଦଣ୍ଡେ, (୭) ତଇ-ଲୋକ (୮) ବଟେ, କପିଳାସ ସ୍ଥଟେ, ମନୋରମ ମନ୍ଦରେ, (୯) ଜଡ଼ାଶ୍ରମ କନ୍ଦରେ, ସିଦ୍ଧ ରୁଦ୍ରଗଣମାନଙ୍କର ସଙ୍ଗେ, ଜ୍ଞାନ-ହଲ୍ଲୋଳ ରଙ୍ଗେ, (୧୦) ମାନସ ସରୋବର କୂଳେ, ଚନ୍ଦ୍ର ଉଜ୍ଜ୍ୱଳ ଶଇଳେ, ସୂର୍ଯ୍ୟ ଅସ୍ତମିତେ, କ୍ରୀଡ଼ାରସ ମତେ, (୧୧) ହେ କାମାଙ୍ଗନାଶନ ବହରୂଅଛନ୍ତି ଶଇଳେନ୍ଦ୍ରପୁତ୍ରୀ ସହିତେ । ତ ସେ ପରମେଶ୍ୱର-ଙ୍କର (୧୨) ପରମ (୧୩) ଜ୍ୟୋତି ପରିପୂର୍ଣ୍ଣାନନ୍ଦ ପରମ ପାରଙ୍ଗତ (୧୪) ଝଣ୍ଡେନ୍ଦୁ ମହଲ (୧୫) ସ୍ଥିର ପାରୁଶରେ (୧୬) ସମସ୍ତ ସିଦ୍ଧ ରୁଦ୍ରଗଣମାନେ ବେଢ଼ି ବସିଛନ୍ତି ଅତ୍ୟନ୍ତ ହରଷେ (୧୭) ତ ସେ ଉପମା (୧୮) ନକ୍ଷତ୍ରସମୂହର ମଧ୍ୟେ, ଶରଦ ଶୁକ୍ଳ (୧୯) ମେଘର ଉଙ୍କେ, ଅଶ୍ୱ ଗ୍ରହଙ୍କର ଭଙ୍ଗେ, ହଲ୍ଲୋଳ ରୋହିଣୀର ସଙ୍ଗେ, ସମ୍ପୂର୍ଣ୍ଣ କଳାମୁକ୍ତ (୨୦) ଚନ୍ଦ୍ରମାର ପ୍ରାଏ (୨୧) ଶୋଭା ପାଉଅଛନ୍ତି (୨୨) ବୋଲି ଜାଣିଲୁ (୨୩) ଧ୍ୟାନ କରନ୍ତେ (୨୪) ସୁସିଦ୍ଧେ (୨୫) । ତ ସେ ମହାତ୍ମା (୨୬) ସିଦ୍ଧ ରୁଦ୍ରଗଣମାନେ କେମନ୍ତ ଅଛନ୍ତି ।

---

୧-(କ) ନାହିଁ, ୨-(ଖ) ବ୍ରାହ୍ମଣ ରୁଦ୍ରକର, ୩-(ଖ) 'ଜାଣିମେ···ଯେଉଣ' ନାହିଁ ୪-(ଚ) ହାଇ ହାଇ, ୫-(କ) 'ବ୍ରହ୍ମାଣ୍ଡ···ଖଣ୍ଡେ' ନାହିଁ ୬-(କ) ଭୁଅ ଡଅଣ୍ଡେ ଭୁବ ଖଣ୍ଡେ, ୭-(କ) ନାହିଁ, ୮-(ଖ) 'ତ୍ରଇଲୋକ୍ୟ' ୯-(କ) ସୁନ୍ଦର ୧୦-(କ) ମାନ-ହଲ୍ଲୋଳ ରଙ୍ଗେ, (ଖ) ଜ୍ଞାନାଲୁତ ରଙ୍ଗେ; ୧୧-(ଖ) 'ସୂର୍ଯ୍ୟ ଅସ୍ତମିତେ' 'କ୍ରୀଡ଼ା ରସ ମତେ' ପରେ ଅଛି । ୧୨-(ଗ) ପରମେଶ୍ୱର, ୧୩-(ଖ) ସରସ ୧୪-(କ) ପାରଂପାରଗନ୍ଧ, ୧୫-(ଖ) ମୌଳି, ୧୬-(ଗ) ସ୍ଥିରପାରୁଶେ, ୧୭-(ଖ) ସମସ୍ତ ଦେବତାମାନେ ମେଖଳା ଆକାର ହୋଇ ରହିଲେ ସିଦ୍ଧ ରୁଦ୍ରଗଣମାନେ ଅତି ହରଷେ (ବହି) ସମସ୍ତ ଦେବତାମାନେ ବେଢ଼ିଅଛନ୍ତି ।···୧୮-(ଖ) ତ ସେ ନାହିଁ, ୧୯-(କ) ଶୁକ୍ଳ ୨୦-(କ) କଳାମୁକ୍ତେଂ, ୨୧-(କ) ଚନ୍ଦ୍ରମା ଶୋଭା ପ୍ରାଏକ, ୨୨-(ଚ) ପାଉଅଛି, ୨୩-(କ) ନାହିଁ । ୨୪-(ବହି) ନାହିଁ, ୨୫-(କ) ଜାଣିଲ୍ ଶୁଦ୍ଧ ବୁଦ୍ଧି ମେ ୨୬-(କ) ପୁଣ ସେ,

Digitized by srujanika@gmail.com

ସେ ସମସ୍ତେହେଂ (୧) ଧନ୍ୟ, ଶୁଦ୍ଧ ଚଇତନ୍ୟ, କେ (୨) ପଦ୍ମାସନ, ବିଶ୍ଳଳ ନୟନ, (୩) ନିର୍ମଳ ମନ, (୪) ଅନୁଭବ ସଚ୍ଚିଦାନନ୍ଦ ଘନ (୫) ବିଷୟରସରେ ବିଘନ (୬) ବିଷୟାଗତ ଶ୍ରବଣ ମନ (୭) ଅଜିସ୍ତ ଅସ୍ତ୍ରୀଢ ବାହ୍ୟନ, ମନ ଇନ୍ଦ୍ରିୟ ପ୍ରତପାଳନ (୮)। ତ ସମସ୍ତେହେଁ ଚେଷ୍ଟାରେ ସ୍ଥଳ ନବଦଳଣ, ଅଶରୀର ବୁଦ୍ଧି, ଆଶ୍ଚର୍ଯ୍ୟ ସିଦ୍ଧି, (୯) ଜ୍ଞାନାନନ୍ଦେ ଯୁତା (୧୦), ସର୍ବଦା ମୁକ୍ତ (୧୧), ଜୀବ (୧୨) ଅନ୍ତଃକରଣ ଶୁଦ୍ଧ ହୋଅନ୍ତେ ବିବେକ, ଊର୍ଦ୍ଧ୍ୱକ, ଭୟ, ଅଭୟ, ଉଦ୍‌ବେଗ ଅବସ୍ଥା ଛାଡ଼ି (୧୩) ସେମାନେ କେମନ୍ତ ଅଛନ୍ତି। ନାରାୟଣ ପଦାରବିନ୍ଦେ (୧୪) ଶରଣ। ତ (୧୫) ସେ ଆତ୍ମାପୁରୁଷ ପରମାତ୍ମାଏ (୧୬) ଲଏ, ନିରାଲମ୍ବ ଧ୍ୟାଏ, ବ୍ରହ୍ମତତ୍ତ୍ୱନିଷ୍ଠ (୧୭) ଅଂଶମସ୍ତେ, ସମସ୍ତେହେଂ (୧୮) ତ୍ରିଲୋଚନର ସ୍ୱରଣାରୁଣରେ ମେଖଳାକାର ହୋଇ (୧୯) ରହିଲେ। ସେ ପୂର୍ଣ୍ଣ (୨୦) ସମାଧି ଲୟେ ମନ (୨୧) ବଶକୁ (୨୨) ନେଇ (୨୩) ଅଛନ୍ତି ତାହାଙ୍କୁ (୨୪) ଇନ୍ଦ୍ରିୟ ମାନଙ୍କର (୨୫) ନାୟକ (୨୬) ସେ ସେ ନାସ୍ତି କରିଅଛନ୍ତି। ଦେହକୁ ଯେହ୍ନେ (୨୭) ମଦବ୍ରାନ୍ତ ଲୋକର ବସ୍ତ୍ର ପ୍ରାପ୍ତେକ (୨୮) ତ ଏବଂଭୂତ (୨୯) ଦେଖି ଅମୃତ ଲୋଚନେ (୩୦) ନିରେଖି ଜ୍ଞାନ ବୁଦ୍ଧି ଜାଣି ଦେବେନ୍ଦ୍ର (୩୧) ମୁକୁଟ ମଣି ମନେ ବିସ୍ମିତ ବୋଇଲେ ଦେଖି ଜାଣିମାନ। ଏମାନଙ୍କର ଅନ୍ତର୍ଗତେ ଦୋଷ (୩୨), ପରୀକ୍ଷା କର ମଣିମା।

---

୧-(ଖ) ନାହିଁ, ୨-(ଖ) କେ ଧନ୍ୟ, ୩-(ଖ) ନିର୍ମଳ ମନ ପରେ, ୪-(କ) ନାହିଁ, ୫-(ଖ) ଅନୁଭବାନନ୍ଦ ଚିଦ୍‌ଘନ, ୬-(ଚ) ବିଷୟରେ ବିସର୍ଜନ, ୭-(କ) ବିଶ୍ରାନ୍ତ ଶ୍ରବଣ, ୮-(କ) ମନ ନୟନ ଆଦ୍ୟପତ୍ୟ ବାଗୀନ ପରମ ଆତ୍ମାରେ ଯୋଗ କରିଅଛନ୍ତି ଗୁଣ କରଣ ଗଣ ଜୀବନ ମନ ପବନ ସେ ସମସ୍ତ ଚେଷ୍ଟା ହଳ୍ପ, ୯-(ଖ) ଆଶ୍ଚର୍ଯ୍ୟ ସାଧି, ୧୦-(କ) ମୁକ୍ତ, ୧୧-(କ) ସର୍ବଦା ସ୍ୱେ ପୂଜ୍ୟ, ୧୨-(ବନ୍ଧ) ସାବତ; (ଖ) ଜୀବ ନିରାକରଣ, ୧୩-(ଚ) 'ଶୁଦ୍ଧ…ଛାଡ଼ି'-ନାହିଁ, ଏବଂ ଭୂକ ହୋଇ, ୧୪-(ଖ) ନାରାୟଣରେ, (କ) ପଦାରବିନ୍ଦରେ, ୧୫-(ବନ୍ଧ) ନାହିଁ ୧୬- ବନ୍ଧ) ପରମାତ୍ମାରେ ୧୭-(ଖ) ବ୍ରହ୍ମନିଷ୍ଠ ନିଷ୍ଠେ (କ) ତ…ଅଂଶମସ୍ତେ, ନାହିଁ ୧୮-(କ) ଏବଂଭୂତ ହୋଇ, ୧୯-(କ) 'ମେଖଳାକାର ହୋଇ' ନାହିଁ, ୨୦-(କ) ସମ୍ପୂର୍ଣ୍ଣ, ୨୧- ଚ) ସ୍ୱେ ମନ ୨୨-(ବନ୍ଧ) ଦେଶକୁ, ୨୩-(କ) ନେଇ, ୨୪-(କ) ନାହିଁ, ୨୫-(ଖ)ର ନାହିଁ, ୨୬-(କ ଖ) ନୟନ, ୨୭-(କ) ନାହିଁ, ୨୮-(କ) ପ୍ରାପ୍ତେକ ହୋଇ ୨୯-(କ) ଏମନ୍ତ, ୩୦-(ଖ) ନୟନେ, ୩୧-(କ) ଦେବଇନ୍ଦ୍ର ୩୨- ଖ) ବନ୍ଧର୍ବୁଦ୍ଧି ବିସ୍ମୃର ମନେ ଏହାଙ୍କର ଅନ୍ତର୍ଗତ ବାଣୀ ବୁଝିବ।

Digitized by srujanika@gmail.com

ଏବଂଭୂତ ଷଗ୍ନର (୧) ଜଗତ ପ୍ରଭୁ ଜିପୁରାର, ପାର୍ବତୀଙ୍କି ହୁକାଶ କଉତୁକରସେ ପଣହାସ କର ପର୍ସ୍ବର (୨) କୋମଳ କର ✳ କଣ୍ଠ ମୂଳରେ ଆଜ୍ଞା ଦେଲେ (୩) ହେ ଭଦ୍ରେ, ହେ କଲ୍ୟାଣୀ, (୪) ହେ ଶୁଭ୍ର ସୁକୁମାରି, ହେ ଶାକମୁଖି, ଜଗତ ମାୟାସ୍ୱରୂପୀ, ପରମ ମୋହନୀରୂପୀ, ବ୍ରହ୍ମାଦ ଚରଣ(I) ପରସତ୍ରେ (୫) ବାହ୍ୟ ଅନ୍ତରେ (୬) ଅଛୁ ବ୍ୟାପି । ଏ ତୋହର ବଭ୍ରମ ମାୟାର ପ୍ରଭାବ ଗୁଣ । ଏମାନଙ୍କର (୭) ବୋଧ ଭେଦସ୍ଥ ହୋଇଲକ ବୁଦ୍ଧିରୁ ଅଚଳ ନିର୍ମଳ ଗୁଣ । ଏ ଦୁହନ୍ତ ଯୁକ୍ତ ବଗ୍ନର ନିକଟରେ ପକାଇ ରହିଲେ ଜାଣିମା ନା ଆଜ । ଲଘୁ ଗୁରୁ ପରମାଣିମା (୮) । ହେ ଦେବୀ ଏବେ (୯) ତୁମ୍ଭେ ଆମ୍ଭର ବଚନେ (୧୦) ଅତ୍ୟନ୍ତ ପ୍ରସନ୍ନେ ତ୍ରୈଲୋକ୍ୟ (୧୧) ମୋହନୀ କର କନ୍ୟାସ୍ୱେ (୧୨) ଜନ୍ମ କରିବ (୧୩) ସ୍ୱେ ସିଦ୍ଧ ରୁଦ୍ରଗଣମାନଙ୍କର ଗ୍ୟାନ ବୁଦ୍ଧି ମୋହିବାକୁ (୧୪) ସର୍ଜନେ । ହେ ସୁନ୍ଦରି, ତୁ ତ ସର୍ଭେବେ ହେ ପରମମାୟା ଲାବଣ୍ୟମୟେ କାୟା ! କନ୍ଦର୍ପ ନିତମ୍ବ ମଣ୍ଡଳକୁ ଆଶ୍ରେକର ଅନ୍ତରରତେ ହୋଇଥାଇ ସାହା (୧୫) । (୧୬) ସେ ଶକ୍ତି କାମଦେବର (୧୭) ଅଛୁଟିକ ଜାଣିମାନା ଏବେ । ସ୍ୱେବେ ତୁମ୍ଭେ ଆମ୍ଭର ବଚନେ ଅତ୍ୟନ୍ତ ପ୍ରସନ୍ନେ (୧୮) ଆମ୍ଭ କଉତୁକ ଲୀଳା କ୍ରୀଡା ପ୍ରସଙ୍ଗ (୧୯) କର ଭସ୍ମ ଚୁଣ୍ଡ ମାଭିଏ (୨୦) ହୋଇ ଚରାଚର ମୋହନୀ କର କନ୍ୟାଏ ଜନ୍ମ କରିବୁ (୨୧) ସେ କାମଦେ ମୋହନୀ କନ୍ୟା ସଙ୍ଗତରେ ଥାଇ, ସହଚର ବସନ୍ତ ଥିବ ସଖାମୁକ୍ତ ହୋଇ । ପୁଷ୍ପଧନୁ ଧର ତୋହରେ ତାହାର ସିଦ୍ଧ ହେବ କାର୍ଯ୍ୟ, କାମ ବ୍ରହ୍ମର ପ୍ରତିଜ୍ଞା ଦେଖି ଜାଣିମାନା ଆଜ (୨୨) ।

---

୧- (କ) ତ ସେ ସ୍ୱେତେ ବଗ୍ନର ୨-(କ) କଉତୁକରସ ପ୍ରସଙ୍ଗେ କରି, ୩-(କ) ମୂଳେ ଧରିଲେ, ୪-(କ) ଦେବୀ, ୫-(ଖ) ପ୍ରକୃତ ସ୍ୱରୂପେ, ୬-(ଖ) ଅଭ୍ୟନ୍ତରେ, ୭-(କ) ଏହାଙ୍କର, ୮-(କ) ତାହାର କେତେ ଲଘୁ ଗୁରୁ, (ଖ) ସବୁଙ୍କର ଶୁକ୍ଳ ବଗ୍ନର କର, ୯-(କ) ତୁ ଏବେ, ୧୦-(କ) ନିତ୍ୟାନିତ୍ୟ ଦର୍ଶନେ, ୧୧-(କ) ତିଲୋକ,୧୨-(ଖ) ଏକ, ୧୩-(କ) କରିବୁ, ୧୪-(କ) ଧଂସିବାକୁ, ୧୫-(କ) କାମଦେବ ତୋତେ. (କ) ✳ କୋମଳ ରସ କଉତୁକ କରି ୫-(କ) କଲ୍ୟାଣୀ ୫-(I) (ଖ) ତୁମ୍ଭେ (୧୬) ସେ ଶକ୍ତି ଭାସ ଦେଲେ । (୧୭) 'କ' ତାହାର ସେ ଶକ୍ତିବଳ (୧୮, 'କ' ତୁ ସ୍ୱେବେଂ ଆମ୍ଭର ବଚନେଂ କଉତୁକ ରସ ପ୍ରସନ୍ନେ କରି (୧୯) (ବନ୍ଧ) ପ୍ରସଙ୍ଗେ' (୨୦) 'ବେହ ନାରୀଏ' (୨୧) 'ଖ' 'ନାରୀ ...କରିବୁ" ନାହିଁ (୨୨) 'କ' କେବଳ ମୂର୍ତ୍ତି ମାତେ ଧ୍ୟାନେ ରହ ସେ ମାୟାର କନ୍ୟାର ସାଙ୍ଗେ ଥାଇ ସହଚର ସଙ୍ଗାମୁକ୍ତେ ପୁଷ୍ପଧନୁ ଧର ତାହାରେ ତୋହରେ ସିଦ୍ଧ ହୋଇବ କାର୍ଯ୍ୟ କାମ ବ୍ରହ୍ମା ପ୍ରଭାବ ଦେଖି ଜାଣିମାନା ଆଜ ।

Digitized by srujanika@gmail.com

(୧) ତ ସେ ଚଇତନସ୍ୱରୂପୀ ଈଶ୍ୱର (୨) ଆଜ୍ଞା ପାଇ ଅମ୍ବାଶକ୍ତ ହୋଇଲା (୩) ପାଶମୁକ୍ତ (୪) ପ୍ରାଣିମାନଙ୍କ ମନକୁ (୫) ପୁନରପି (୬) ଅନଙ୍ଗ ପ୍ରାସେ ଆକର୍ଷିବାକୁ (୭) ଅତ୍ୟନ୍ତ (୮) ହରଷ ହୋଇ (୯) ତ ସେ (୧୦) ସଚରାଚର ମୋହନୀ କର (୧୧) କନ୍ୟାଏ (୧୨) ଜନ୍ମକଲା (୧୩) ଆପଣା ମନରୁ (୧୪) କେବଳ ମୁହୂର୍ତ୍ତ ମାତ୍ର (୧୫) ଧ୍ୟାନେ ରହୁ । ତ (୧୬) ଆହା ବାବୁ କନ୍ୟା ସେ (୧୭) ରପେ ଜଗତ ମୋହିଲା (୧୮) ପୃଥିବୀ ଶୋହିଲା ! ପ୍ରାଣିମାନଙ୍କର ଧଇର୍ଯ୍ୟ (୧୯) ହଡ଼ିଲା । ଅନଙ୍ଗ ଅମ୍ବନଧ୍ୱଜ ଆସି (୨୦) କପିଳାସ କନ୍ଦର ଯାକେ ବେଢ଼ିଲା । (୨୧) ତାହାର (୨୨) ଧନ୍ୟ ଧନ୍ୟ । କ ଭୂମିଗତ ସ୍ଥିତ (୨୩) । କ ମନ୍ମଥ ରାଜାର କୋଦଣ୍ଡ ଭ୍ରୁନ୍ତ (୨୪) ? କ ବଜୁଳର କାନ୍ତ ? କ ବ୍ରହ୍ମାଦ ଦେବଙ୍କ ମୋହନୀ ଫାଶୀ ? କ ବନ୍ଧୁ ନମୀଣ କଲା (୨୫) ଲାବଣ୍ୟରାଶି ? କ ଅନଙ୍ଗ ଅମୀୟପୂର୍ଣ୍ଣ କଳସୀ ? କ ଯୋଗୀଜନ ମନମୀନ ବଡଶୀ ? କ କାମିନୀକୁଳ କମଳ ବିଳାସୀ ? କ ମନସିଜ ମନସ ବନଶଶୀ ? କ ବ୍ରହ୍ମଜ୍ୟୋତ ନମୀଣ ନଶି ? (୨୬) କ ବବେକ ପ୍ରଦୀପକୁ ହତ ବତାସୀ ? କ ଈଶ୍ୱର ମୋହିବାକୁ ଇପିତ ହାସୀ ? କ ଦେଖି କାମଦେବ ହିଁ ହେଉଛୁ ଧଡ଼ସୀ ? (୨୭) ଆହା ବାବୁ କନ୍ୟାର ସେ ବଦନ ପୂର୍ଣ୍ଣ ନର୍ମଳ ଶରଦ ଚନ୍ଦ୍ର (୨୮) ଦରହାସ ନୟନ କ (୨୯) ମୁନଜନମାନଙ୍କର (୩୦) ମନନୟନକୁ ପାତଅଛୁ ଫାନ୍ଦ ? ଜ୍ଞାନତରୁ ଉପାଡ଼ିବାକୁ (୩୧) ନୟନ ଗଙ୍ଗାନଦୀର ତରଙ୍ଗ । ସ୍ନିଗ୍ଧ ବଦଗ୍ଧ (୩୨) ମଧୁର ଚଞ୍ଚଳ କଟାକ୍ଷେ କର (୩୩) କୋଟି କୋଟି କାମ ଆସି ହୋଇଅଛୁ ସଙ୍ଗ (୩୪) ।

---

(୧) 'କ' ଦୁର୍ଗାଈଶ୍ୱରେ, (୨)'କ' ନାହିଁ (୩) 'ଖ' ନାହିଁ (୪) 'କ' ନାହିଁ (୫) 'ଖ' ନାହିଁ (୬) 'କ' "ଅନଙ୍ଗ ପାଶେ" ନାହିଁ । (୭) 'କ' ନ ହିଁ (୮) (ବନ୍ଧୁ) ହୋଇଲା, (୯) 'କ' ନାହିଁ, (୧୦) 'ଖ' ନାହିଁ, (୧୧) 'କ' କନ୍ୟାଏକ (୧୨) 'ଖ' ଜାତ କଲା । (୧୩) 'କ' ଆପଣାର ମନରୁ: (୧୪) 'କ' ମାତ୍ରକେ, (୧୫) କନ୍ଧ ଓ 'କ' ରେ ନାହିଁ, (୧୬) ଅତ୍ୟନ୍ତ କନ୍ୟାରେ (୧୭· 'କ' ' ରପେ" ନାହିଁ (୧୮) 'ଖ' ଧଇର୍ଯ୍ୟ, (୧୯) 'କ' ଅମ୍ଭେ ନଧି ଆଣିକ (୨୦) 'କ' ବୁଡ଼ାଇଲା (୨୧) 'କ' ଆ (୨୨) 'କ' ଥିବ, 'ଖ' ଭୂମିସ୍ଥିତ ଲ ? (୨୩, 'କ' ନାହିଁ' (୨୪) 'କ' ନରମିଲା' (୨୫) 'କ' 'କ ବ୍ରହ୍ମ......ନଶି" ନାହିଁ । (୨୬) 'ଖ' ଧଡ଼ସୀ-ଧ୍ୱଂସୀ (କ) ଏହୁ ପଂକ୍ତ ପୂର୍ବରୁ "କ ବ୍ରହ୍ମାଦ ଜ୍ୟୋତ କ ନର୍ମାଣ ନଶିଅଛୁ" (୨୭) 'କ' ଆ ବାବୁ କନ୍ୟାରେ । ବଉନଶରଦ ପୌର୍ଣ୍ଣମୀର ଚନ୍ଦ୍ର, (୨୮)'ଖ' ଦରହାସ ଭାବ କ ? (୨୯) 'କ' ଯୋଗୀଜନମାନଙ୍କୁ (୩୦) 'କ' ଉପାଟିବାକୁ (୩୧) 'କ' ବଗ୍‌ଧମୁଗ୍‌ଧ (୩୨) 'ଖ' କଟାକ୍ଷରେ (୩୩) 'କ' କାମ ହେଉଛୁ ସଙ୍ଗ ।

Digitized by srujanika@gmail.com

ନିର୍ବାଣ ମୁକ୍ତି ଗ୍ରୁଣ୍ଡ ପାରଇ (୧) ତାହା ମୁଖକମଳ ଦେଖିଲେ (୨) । ତୃଷ୍ଣାସ୍ୱା ଅବସ୍ଥା ହୋଇପାରଇ ତାହାର ସ୍ତନ ଶଙ୍କର (୩) ଦେଖିଲେ । ବିଧାତା ଦେଖିଲେ ଜଡ଼ ଭାବେ କରିବ ପ୍ରଳାପ (୪) ମନ୍ମଥ ରତିସଙ୍ଗ ଛାଡ଼ିବାକୁ (୫) ଚେଷ୍ଟେ କରୁଅଛୁ ସକଳ (୬) ଚନ୍ଦ୍ର ଦରଶନ ମାତ୍ରକେ କରଣେ ଫୁଟିଲ ଯହୁଁ (୭) କଷ୍ଟେ କଷ୍ଟେ ପ୍ରାଣ ରଖିଅଛୁ ତହୁଁ (୮) ରୋହିଣୀର ଅଙ୍ଗ ସଙ୍ଗ ବିରଙ୍ଗ ପାଇଲା (୯) ସ୍ପର୍ଶ ନ କରିବ ମାତ୍ରକେ ନିମଗ୍ନ ହୋଇ ଜଡ଼ ଆତ୍ମା (୧୦) (୧୧) ଗଗନେ ଉଡ଼ିଲା । ଭୋଗକରି ନ ପାରି ସେହି ମୁଖ (୧୨) କାଳିକି ? କଳଙ୍କ ବୋଲି ତାହା ବୋଲନ୍ତି ଅଦ୍ୟାପି (୧୩) । ଅଟଳେଷ ଜ୍ଞାନ ବୁଦ୍ଧି ମୋହିବାକୁ ଯେ ହୋଇଅଛୁ ଜନ୍ମ, ବୃହସ୍ପତି ଦେଖିଲେ ହେବେ ମଦନେ ବିଭ୍ରମ । ସ୍ତନମୂଗଳ କ (୧୪) ଜଳିଲତା ଫଳ ଦାସ୍ୟେ ପ୍ରକାଶ । ଇନ୍ଦ୍ର ଦେଖିଲେ ସ୍ୱର୍ଗ ଭୋଗ ଛାଡ଼ି ସେହିକ୍ଷଣି ହୋଇବ ଦାସ । ସ୍ତ୍ରୀ ନିନ୍ଦେକ ବସ୍ତୁ କ ପଳାଇଲା ଭୂମଣ୍ଡଳ ତେଜି । ନାଗସ୍ତଣ ପଦ୍ମ ନେତ୍ର ଦୃକ ଲକ୍ଷ୍ମୀ ଅଛନ୍ତି କଣ୍ଠରୁକେ ଦୁଇ ହାତେ ବୃକ୍ଷ (୧୫) ସଜଳ ସ୍ତ୍ରୀ ରତ୍ନ କ ସୃଷ୍ଟିରେ ରୂଣ୍ଡୀଭୂତ ହୋଇଲା । ଐଶ୍ୱର୍ଯ୍ୟମାନନ୍ତ ଯେ ମୋହଦଣ୍ଡ୍ରାରେ ମୋହିଲା । କାନ୍ତେଶସ୍ତ ଯାହା ଅତ୍ୟନ୍ତ ଯତ୍ନେ ଜାତ କଲା । ସ୍ତ୍ରୀସ୍ତ ବିପଦ୍ମନ୍ତ ତେଜି ଦାସ ପ୍ରାପ୍ୟେକ ହୋଇ କନ୍ଦର୍ପ ନିତମ୍ବ ମଣ୍ଡଳକୁ ଆଶ୍ରେ କରି ରହିଲା । କୁବେର ପଦ୍ମନିଧି ତେଜି ପାରଇଁ ଅଧିଂ ମୃଗ (୧୬) ଦେଖିଲେ । ତ୍ର୍ୟମ୍ବକ ତେଜି ସର୍ପ ଭୂମିଗତ ହୁଅନ୍ତେ (୧୭) ନିଶି ନୋହି ଦିବସ ହୋଇଥିଲେ । ତ (୧୮) ସେ ଝୀତାରସ ନଦ ବା ଲାବଣ୍ୟ ବାରିରେ ପୂରିଇଲା (୧୯) ।

---

(୧) 'କ' ତେଜିପାରି । (୨) 'ଦ' ଦେଖିଲେ 'ଖ' କମଳ ନାହିଁ, (୩) 'ଖ' ସ୍ତନ ସୁଗ୍ମ (୪) 'ଖ' କରିବ ହୋଇବ (କ) ବିଧାତା ଜଡ଼ଭାବେ ଦେଖିଲେ କରିବ ପ୍ରଣମ୍ୟ । (୫) 'କ' ତେଜିବାକୁ (୬) 'କ' ନିଚଯ୍ୟେ ସଙ୍କଳ୍ପ କଲା ଯୋଗୁ (୭) 'କ' ନାହିଁ । (୮) 'କ' କଷ୍ଟକଷ୍ଟ ହୋଇ ପ୍ରାଣ ପାଇଲାକ ତହୁଁ । (୯) 'କ' ରୋହିଣୀ ଅଙ୍ଗସଙ୍ଗ ଚନ୍ଦ୍ର ବିରଙ୍ଗ ପାଇଲା, (୧୦) 'ଜ' ସ୍ମରଣ କରିବା ମାତ୍ରକେ ଗଗନେ ନିର୍ମଳ ହୋଇ ଉଡ଼ିଲା (୧୧) 'କ' ନାହିଁ । (୧୨) (ବନ୍ଧ) ସେ ହି କାଳି କି ? (୧୩) (ଖ) କନ୍ତୁ 'କ'ରେ ଲୁପ୍ତ କରି ନ ପାରି ସହୁଁ ମୁଖ କାଳିକି, କଳଙ୍କ ବୋଲି ତା ଏବେ ବୋଲିଲେଖି । (୧୪) (କ) ନାହିଁ । (୧୫) (ବନ୍ଧ) କଣ୍ଠରୁକେ ବେକ ହସ୍ତେ ଅଛନ୍ତି ବୃକ୍ଷ । (୧୬) (ବନ୍ଧ) ମୃଗଲ । (୧୭) (ବନ୍ଧ) ହୁଅନ୍ତା । (୧୮) (ବନ୍ଧ) ତ' ନାହିଁ । (୧୯) (କ) ବୁଡ଼ାଇଲା ।

Digitized by srujanika@gmail.com

ଫ ପୁର ସୁନ୍ଦରୀମାନଙ୍କର ହିଁ (୧) ଆଦର ସରିଲା । ଦିଗପାଳମାନେ ଦେଖି ହୋଇଗଲେ ଜଡ଼ । ଜୀବେ ଅଜୀବେ ଜଣିଲେ ବଡ଼ (୨) । ତ (୩) ଏବଂଭୂତ ପ୍ରକାରେ (୪) ସେ ଜଗତ ପ୍ରକୃତ ଅମ୍ବିକା ଲାବଣ୍ୟ ସମ୍ଭୃତ୍ତ୍ରଂ ଲକ୍ଷ୍ମୀ ଉଦ୍ଧରି ଆଣିଲା କ ଅତ୍ୟନ୍ତ ଯତ୍ନେ ଅନୁପାମ ମଦ ସନ୍ଦୀପିକା କନ୍ୟକା ? (୫) । ତ ସେ କନ୍ୟା ଜଗତ ମାତାର ଆଜ୍ଞାପାଇ ସିଦ୍ଧଙ୍କର ଜ୍ଞାନ ସମୁଦ୍ରେ ମଜ୍ଜିଲ । ମନ୍ମଥ ହସ୍ତିକ ମନ୍ମଥ (୬) ପାଶେ ଆକର୍ଷି ଆଣିମାକୁ ଅତ୍ୟନ୍ତ ହରଷ ହୋଇ ସେ ସମାଧି ବୃତ୍ତି ମହାତ୍ମା ମଣ୍ଡଳର ମଧ୍ୟେ ମିଳିଲା । ରତ୍ନ ଅଳଙ୍କାର ଯୁକ୍ତ ହୋଇ ଯେ ଗବଗ୍ଣ କରିବା ପାଇଁ । ସେ ମୁକ୍ତପନ୍ଥ (୭) ନିରୋଧିବାକୁ କନ୍ୟାର ଅପାଙ୍ଗ (୮) ସଙ୍ଗତେ ମନସିଜ ସହାୟ ହୋଇଅଛୁ । ପଞ୍ଚଶର ଯୁକ୍ତେ (୯) କାମଦେବ ସଙ୍ଗତେ, ବସନ୍ତ (୧୦) ଅଇଲା । ମିତ୍ରକୁ (୧୧) ସପକ୍ଷ ହୋଇବାକୁ କରି ଆକାଶେ ନିର୍ମଳ ହୋଇ ଚନ୍ଦ୍ରମା ଉଇଁଲା । ତ (୧୨) ମଧୁ ଯାମିନୀ ହୋଇଲା ମଳୟ ପବନ ମନ୍ଦ ମନ୍ଦ ହୋଇ ବହିଲା । ଯୁବାଜନମାନଙ୍କର ମନକୁ ପୁନଃ ପୁନଃ କରି ଦହିଲା । ତ (୧୩) ସେ ମନସିଜ ଦର୍ଶନେ, ରମ୍ୟ ଅରଣ୍ୟେ ସମସ୍ତ ଜନ୍ତୁମାନଙ୍କୁ ବାଧା ଲାଗିଲା । ସେ ସଙ୍ଗେ ବହିରନ୍ତା ବିଦ୍ୟାଧରୀମାନଙ୍କର ଲୋଭନୀସ୍ୱମାନ ତାହାଙ୍କ (୧୪) ଇଚ୍ଛାଏ ବଳିଲା । ଶୁଷ୍କ ପାଦପମାନେ କଅଁଳିଲେ (୧୫) । ପଲ୍ଲବ ହୋଇଲେ (୧୬) । ମହାଗଜ ମାନଙ୍କର ହସ୍ତ ଚାଳନ (୧୭) ଅଯୋଗ୍ୟ ହସ୍ତିନମାନେ ସହିଲେ (୧୮) । ଦିବ୍ୟାଙ୍ଗନା ମାନଙ୍କର ସ୍ତନ ବସନରେ (୧୯) ମଳୟ ପବନମାନେ ଶରଣ ପଶିଲେ । ଲଜ୍ଜାଏଂ ଗଳିଲେ । କୋକିଳମାନଙ୍କର କୁହୁ କୁହୁ ଶବ୍ଦେ ବଳିଲେ । ଅଧିକେ ସାରୀ (୨୦) ପକ୍ଷୀଏ ଭାଷିଲେ । ଭ୍ରମରକନ୍ତ ପଦ୍ମେ ଲେଉଟି (୨୧) ଚୁମ୍ବିବାକୁ ସଲଜ୍ଜେ ମନ୍ଦ ମନ୍ଦ ହୋଇ ହସିଲେ । ତ (୨୨) ସେ ଅରଣ୍ୟେ ସମସ୍ତ ଜନ୍ତୁମାନେହେଂ ଉନ୍ମତ୍ତ ଦଶିଲେ । ପୁରୁଷେ ଅଙ୍ଗନାମାନଙ୍କର ଭୁଜପଞ୍ଜରେ ଶରଣ ପଶିଲେ ।

ତ ଏବଂଭୂତ ପ୍ରକାରେ, ରୁଦ୍ର କ୍ରୀଡ଼ାବନରେ ଜୀବେ ଅଜୀବେ କାମାନ୍ଧକାରେ ମଜ୍ଜିଲେ ସନ୍ତୁଂ ଆକର୍ଣ୍ଣ ପରିଯନ୍ତେ (୨୩) ପଞ୍ଚବାଣ (୨୪) ପୂରେଇ ମନ୍ମଥ ବିନ୍ଧିଲା ସନ୍ତୁଂ (୨୫)

---

୧-(ଖ) ମାନଙ୍କୁ ଆଦର ୨-(କ) ଅଜୀବ ଜୀବମାନଙ୍କରେ ଲାଗିଲା ଜଡ଼ ।
୩-(ବହି) 'ତ' ନାହିଁ 'ରୁଦ୍ର···ତନ୍ତୁଁ' ଏଠାରେ ଅନାବଶ୍ୟକ । ପରେ ଅଛୁ ।
୪-(ବହି) ଜଗତମାତାର ଯତନେ ସୃଜିଲା ସେ ଅନୁପମାମଦ ସନ୍ଦୀପନୀ କନ୍ୟା ।
( ଏଠାରେ ଥିବା ଜଗତମାତାର ପାଠ ଅସ୍ପଷ୍ଟ) । (୫) ବହି ନାହିଁ ।
୬-(କ) ମୁକ୍ତପଥ, ୭-(ଖ) ଅପାଙ୍ଗ, ୮-ପୁଷ୍ପଶର ଯୁଗତେ (କ), ୯- ବସନ୍ତ ଋତୁ (କ),
୧୦-ମୈତ୍ରକୁ (କ), ୧୧-ସମକ୍ଷ (ଖ), ୧୨-'ତ' ନାହିଁ (କ) ୧୩-'ତ' ନାହିଁ (କ)
୧୪-(କ) ବିଦ୍ୟାଧରୀମାନଙ୍କର ଭର୍ତ୍ତାକୁ ଲୋଭନୀୟ ଇଚ୍ଛାଏ ବଳିଲା । (୧୫) ଶୁଷ୍କ ପାଦପ କଅଁଳିଲା (କ), ୧୬-ପଲ୍ଲବିତ ହୋଇଲା (କ), ୧୭-ରମଣ (କ), ୧୮-'କ'ରେ ଅଧିକା-ଭ୍ରମରେ ପଦ୍ମରେ ରହିଲେ, ୧୯-ସଂକଟେ (କ), ୨୦-ସାରସିକା (କ),
୨୧-'ଖ' ପୋଥିରେ ଏ ବାକ୍ୟଟି ନାହିଁ ୨୨-ମନ୍ଦମନ୍ଦ ହୋଇ ଭ୍ରମରେ ପୁଷ୍ପ ଲେଣ୍ଡିରେ ଚୁମ୍ବିବାରେ (କ) । ୨୩-(ଖ) ପର୍ଯ୍ୟନ୍ତେ । ୨୪-(ଖ) ପଞ୍ଚମବାଣ । ୨୫-କ କ ତନ୍ତୁଂ ।

Digitized by srujanika@gmail.com

(୧) ସେ ପାଞ୍ଚ (୨) ଶରକୁ ଶାଣିଆଇ ବଦାଇ (୩) ଅଷ୍ଟାନ, ସନ୍ଧାନ, ମୋକ୍ଷ ମଣ୍ଡଳକରି ପ୍ରତିଜ୍ଞାକଲା ତହୁଂ । ପ୍ରତିଜ୍ଞା କରଇ ଧାଇ ହାଇ ହାଇ । ଆଜ ଜାଣିମା (୪) ଯିଏଙ୍କର ଗର୍ବ, ମୋତେ ପୂର୍ବେ ଜିଣିଲ ସବ ବସ୍ଥିରଛନ୍ତି (୫) ସର୍ବ । ବଶି ଆଶ୍ଚର୍ଯ୍ୟ ଏ ସମାନ କର୍ମକଲେ । ସାତ୍ତ୍ୱିକ ଶ୍ରଦ୍ଧାକୁ ଯେଣ ଶାନ୍ତ ହୋଇ ବସ୍ତୁ ଭକ୍ତି କ ଆଶ୍ରେ କରିଗଲେ । ତାହାଙ୍କର ପ୍ରସନ୍ନେ ନିତ୍ୟାନିତ୍ୟ ଦର୍ଶନେ ଅନ୍ତଃକରଣ ଚତୁଷ୍ଟୟ କଲେ ଶୁଦ୍ଧି । ପୁଣି ଯମ ନିୟମାଦି ବଳେ ମୋତେ ଜିଣି ନିର୍ମଳ କଲେ ମନ ବୃତ୍ତି (୬) । ଶୁଦ୍ଧ ଅନ୍ତଃକରଣେ ବବେକ ଉତ୍ପନ୍ନହିଁ କଲେ (୭) । ହରିହର ଅଣିମାଦି ଐଶ୍ୱର୍ଯ୍ୟଙ୍କୁ କୁହୁକ (୮) ବୋଲି ବୋଇଲେ । ତ ଏ ଯୋଗୀଆଏ ସୁଖସୁଧାନିଧି ସ୍ତ୍ରୀରତ୍ନମାନଙ୍କୁ ନରକ ବୋଲି ବାଂଛନ୍ତି (୯) । ପ୍ରତ୍ୟକ୍ଷ ଦୃଷ୍ଟି ପ୍ରପାତକୁ ମିଥ୍ୟା ବୋଲି ଭାଷନ୍ତି । ଶାନ୍ତ ଦାନ୍ତ ଆଦି (୧୦) ସାଧନ ହୋଇଲେହେଁ ଏମାନଙ୍କର କୈବଲ୍ୟଜ୍ଞାନେ ଲୟେ, ଆୟେଷତ୍ତ (୧୧) ଭାଇ ରାଜ୍ୟ ଗୁଣ୍ଡ ପଳାଇଲୁ ଏ ପାପିଷ୍ଠ ଦୁରାତ୍ମାମାନଙ୍କ ଭୟେ । ଏମାନେତ ମୋହର ଦୁଃସାଧ୍ୟ ବୈରି, ଆଜ ଜାଣିମାନା ଏମାନନ୍ତ କେ ପାରଇ ଉଦ୍ଧରି । (୧୨) ତ ଏତେ ବସ୍ଥିର, ସେ ମକରଧ୍ୱଜ ନିଶରେ ହାଥ ଭରି, ପୁଷ୍ପଧନୁ ଧରି, ଗୁଣ ଟଂକାର କରି, ପାର୍ବଣାଙ୍କୁ ସୁମରି, ପୂର୍ବକଥା ବସ୍ମରି (୧୩), ମୋହ ଉତ୍କଟ ପ୍ରତିଜ୍ଞା କରି (୧୪), ବୋଇଲା ଚଞ୍ଚଳ ଦୃଷ୍ଟି ଅପାଙ୍ଗ କୋଣେ ଦହିବ ଆଜ ସିଦ୍ଧଙ୍କୁ ଖଣ୍ଡ ଖଣ୍ଡ କରି (୧୫) । ତ ସେ ମକରଧ୍ୱଜ ଅତ୍ୟନ୍ତମଦେ, ମାୟାକନ୍ୟାର ପ୍ରସାଦେ ଚତୁର୍ଭୁଜ ଶରକୁ ଜିଣି ପାରିବ ବୋଲି ନିଶ୍ଚେ କଲା ଅପ୍ରମାଦେ (୧୬) । ଏମନ୍ତ ସମୟରେ ଚନ୍ଦ୍ର ଜ୍ୟୋତ୍ସ୍ନା ବଳିଲା (୧୭) । ବସନ୍ତ ଋତୁ ଚଳିଲା । ସେ ତ୍ରୈଲୋକ୍ୟମୋହିନୀ କନ୍ୟା ସମାଦି ଲୟେ ସିଦ୍ଧ ମଣ୍ଡଳର ମଧ୍ୟେ ମିଳିଲା । ତ କେମନ୍ତ ପ୍ରାୟେ ହୋଇ ? (ଉତ୍ପ୍ରେକ୍ଷା) ସ୍ଥିରମନ ବହିଙ୍ଗମସମୂହର ମଧ୍ୟେ ମନ୍ମଥ ପତାକା ଉଡ଼ାଇଲା । (୧୮) ? କି ଧୈର୍ଯ୍ୟ ପର୍ବତମାନଙ୍କୁ ଲବଣ୍ୟ ବାରି (୧୯) ବୁଡ଼ାଇଲା !! କି କୈବଲ୍ୟ ଜ୍ଞାନ ମୁକ୍ତିକି ଆସି (୨୦) ଅଣିମାଦି ଅବିଦ୍ୟା ଢାଙ୍କିଲା ! କି ବୋଧ ଉଦୟ ଚନ୍ଦ୍ର ଜ୍ୟୋତ୍ସ୍ନାମାନଙ୍କୁ ମୋହ ମେଘପଟଳ ଢାଙ୍କିଲା । କିଶାନ୍ତ ରସ କମଳ ପୁଷ୍ପେକୁ ତ ନୂତନ ବସନ୍ତ ବହିଲା (୨୧) ! କି ପୁନରପି ବ୍ରହ୍ମପାଶ ବୃତ୍ତିକି ସ୍ତ୍ରୀ ସୁଖେ ବାନ୍ଧିଲା ! ଯୋଗାଭ୍ୟାସ ଅଗ୍ନି କି ଅଧରାମୃତ ବାରିକି ଲିଭାଇଲା ! ତ ସେ ଅବିଦ୍ୟା ମୃତ୍ୟୁ ସଞ୍ଜୀବନୀକରଣୀ କନ୍ୟାର

---

୧-(ଖ) ପଞ୍ଚମ । ୨-(ବହି) ବଦାଇ, ୩-(କ) ଜାଣିବାନା, ୪-କରିଅଛନ୍ତି । ୫-(କ) ଦମନିୟମ ବଳପରି ଏମାନେ ନିର୍ମଳ କରିଅଛନ୍ତି ମନବୃତ୍ତି, ୬-କ ଶୁଦ୍ଧ ଅନ୍ତଃକରଣ ବବେକ ଦୃଷ୍ଟି ହୋଇଲେ । ୭-(ଖ) ଐଶ୍ୱର୍ଯ୍ୟଙ୍କୁ ମୋଡ଼ାଏ କୁହୁକ । ୮-(କ) ଭାବନ୍ତି, ୯-(କ) ବୃତ୍ତି, ୧୦-(ଖ) ଗୁଡ଼, ୧୧-(କ) ରକ୍ଷାକରି । ୧୨-(କ) ବସୋରି, ୧୩-(ଖ) ମେରୁର ପୃଷ୍ଠେ, ୧୪-(କ) ଚଞ୍ଚଳ ବୃଷାଳ ନୟନେ ଛେଦିବ ଆଜ ଖଣ୍ଡ ଖଣ୍ଡ କରି । ୧୫-(କ) ନିୟମ ପ୍ରମାଦେ । ୧୬-(ଖ) ମିଳିଲା, ୧୭-(କ) ସ୍ଥିରମନ ବହିଙ୍ଗରେ ମନ୍ମଥ ପତଙ୍ଗ ଉଡ଼ାଇଲା । ୧୮-(ଖ)ନିଧି, ୧୯-(କ) ପରମାନନ୍ଦମାନଙ୍କୁ, ୨୦-(କ) କମଳକୁ ଭ୍ରୂଲତା ସର୍ପିଣୀ ଖାଇଲା । ୨୧-(କ) କ୍ଷେତ୍ରକୁ ସପକ୍ଷ ହୋଇବା

Digitized by srujanika@gmail.com

ନୂପୁର ବଳୟ କଙ୍କଣଙ୍କର କ୍ୱଣ, କଟି ମେଖଳାର ରଣ୍ଡ଼, ଝିଙ୍କାର ଭୃଙ୍ଗ କୋକିଳଙ୍କର ତୃଷ୍ଣା ପାଡ଼, ଏଥକୁ ସର୍ମ ନୃତ୍ୟ ଯୁକ୍ତେ ଅଛୁ ବଜାନ୍ତ ଗୁରୁ ବେଢ଼ି । ମିଶ ଶବ୍ଦ ନ୍ୟାୟରୁ କରି ଧରିଅଛୁ ଚନ୍ଦ୍ର କରଣମାନଙ୍କରେ ଜଡ଼ । ଏଥକୁ ଅକାଳେ ପଡ଼ିଅଛୁ ସେ ଅନଙ୍ଗ ଘୋର ଧାଡ଼ (୧) । ତ ସିଦ୍ଧମାନଙ୍କର ସମାଧି ଭାଙ୍ଗିଲା । ତୁରୀୟ ଅବସ୍ଥା ଆସି ଜାଗ୍ରତରେ ଲାଗିଲା । ମନ୍ମଥ ଚକ୍ଷୁ-ଦ୍ୱାରେ ବାଇ (୨) ଲଗା ଲାଗିଲା । ବିଷୟରସେ ରସିବାକୁ ମନ ବୃତ୍ତି ଆଜ୍ଞା ମାଗିଲା ।

ଈଶ୍ୱରହିଁ ବଡ଼ ଚମତ୍କାର ପାଇଲେ । ପାର୍ବତୀଙ୍କି ଆଣି ଆଲିଙ୍ଗନ କରି ହରଷେ ବୋଇଲେ । ହେ ସଖେ ! ଦଗ୍ଧ (୩) ହୋଇଲା ଅନଙ୍ଗଙ୍କୁ (୪) କି ମୋହନ ପାଣିରେ କାଥିଇଲୁ । ହେ ଅମ୍ବୁଜାକ୍ଷି ! କି ନବତନ (୫) କରି ଏବେ ଅନଙ୍ଗ ସୃଷ୍ଟିଏ ଉଆଇଲୁ । ଆମ୍ଭର ମନ ସନ୍ଧି ନୋହିଲା ନିଶ୍ଚଳ, ଏହିକ୍ଷଣି ଜାଣିମା ଏ ସିଦ୍ଧଙ୍କର (୬) କି ହୋର କେତେ ଅଛି ବଳ । ତ ଏମନ୍ତ ବୋଲନ୍ତେ ଅଦୃଷ୍ଟପୂର୍ବ ଅଦ୍ଭୁତ ମୋହିନୀ କନ୍ୟାଙ୍କୁ ଦେଖି ଆଶ୍ଚର୍ଯ୍ୟ ପାଇଲେ ସିଦ୍ଧ ରୁଦ୍ରଗଣମାନେ ସମାଧି ଉପେକ୍ଷି । ଇନ୍ଦ୍ରିୟ ପ୍ରବଳ ଦୁର୍ଣ୍ଣୟ (୭) ଦେଖି, ଅର୍ଦ୍ଧ-ଉନ୍ମିଳିତ ଲୋଚନେ ନିରେଖି, ସମାଧି ବୃତ୍ତି ଉପେକ୍ଷି, ବିପର୍ଯ୍ୟତ ସମସ୍ତ (୮) ଦେଖି, ଉଚ୍ଛନ୍ନ ହୋଇ, ମହାଭୟ ପାଇ, ପ୍ରଳାପ ଶକ୍ତ ଜ୍ଞାନେ (୯) ନିରାଲମ୍ବ ଧ୍ୟାନେ କେ ପଳାଇଲା, କେ ଉପଳ ଅବସ୍ଥାରେ ରହିଲା, କେ ମୃତ୍ୟୁ ଶବ ପ୍ରାୟ ହୋଇ ରହିଲା, ଆହା ସେ ସିଦ୍ଧ ବୃତ୍ତି ସମୂହ ଗୋଷ୍ଠିର ବାବୁ ଉଦ୍‌ବେଗରେ (୧୦) କେ ଶବ ସ୍ୱରୂପେ ରହୁଅଛନ୍ତି, କେ ସମାଧି ରୂପେ ରହୁ ଅଛନ୍ତି, କେ ଗଗନେ ଗଗନ ହୋଉଅଛନ୍ତି, କେ ଅଭୟ ପଦ ଧାଉ ଅଛନ୍ତି, କେ ପରମ ଜ୍ୟୋତିରେ ମିଶୁ ଅଛନ୍ତି, କେ ଚଦାନନ୍ଦେ ପ୍ରକାଶୁ ଅଛନ୍ତି, କେ ଅବଧୂତ ହୋଇ ଧାଉଂ ଅଛନ୍ତି, କେ ଚିତ୍ତ ଆକାଶେ ସମ୍ଭାଉ ଅଛନ୍ତି, କେ ତରତର ହୋଇ ଆସୁଅଛନ୍ତି । କେ ନିର୍ଗୁଣ ହୋଇ ପ୍ରକାଶୁ ଅଛନ୍ତି, କେ ଅନ୍ତର୍ଦ୍ଧାନ ହୋଇ ଖସୁଅଛନ୍ତି । କେ ପରମାନନ୍ଦେ ରସୁଅଛନ୍ତି । କେ ନିର୍ବିକଳ୍ପ ଅଭ୍ୟାସୁ ଅଛନ୍ତି (୧୧) । କେ ଅଜୀବ ଭାବେ ପ୍ରକାଶୁ ଅଛନ୍ତି । କେ ବିଷୟ ବୃତ୍ତି ବିନାଶୁ ଅଛନ୍ତି । କେ କନ୍ୟା ସ୍ୱରୂପେ ପଶୁଅଛନ୍ତି । କେ ମନ ଭାବୁକ ଆସୁ ଅଛନ୍ତି (୧୨) । କେ ଜ୍ଞାନ ହରଷେ ଭୁଲୁସୁ ଅଛନ୍ତି । କେ ସୀମନ୍ତିନୀ ବୋଲି ବିଳସୁ ଅଛନ୍ତି । କେ ତନୁମନ ବୃତ୍ତିକି ଯାଉଅଛନ୍ତି । କେ ଅଣଗ୍ରାର ପ୍ରାୟ ଦଣ୍ଡୁଅଛନ୍ତି କେ ନଟ ବୋଲି ଉପହାସୁଅଛନ୍ତି । କେ ବହୁରୂପୀ ବୋଲି ଦରହସୁଅଛନ୍ତି । କେ ରଜ୍ଜୁ ସର୍ପ ବୋଲି ଆଭାସୁଂ ଅଛନ୍ତି (୧୩) । କେ ଶକ୍ତି ବୋଲି ଜାଣିଲେ, କେ ମୃଗତୃଷ୍ଣା ପ୍ରାୟ ମଣିଲେ, କେ ଆତ୍ମାରେ ରମିଲେ, କେ ନିତ୍ୟାନିତ୍ୟ କଣିଲେ, କେ

---

୧-(କ) କ୍ଷେତକୁ ସପକ୍ଷ ହୋଇବା ନିମନ୍ତେ ଚନ୍ଦ୍ର ଧରିଅଛୁ କରେ କରଣ ଜଡ଼ । ଏମନ୍ତ ସମୟେ ପଡ଼ିଲା ସିଦ୍ଧ ରୁଦ୍ରଗଣମାନଙ୍କୁ ଘୋର ଧାଡ଼ି । ୨-(କ) ଯାଇ, ୩-(କ) ଭସ (ବହ୍ନି) ଦହନ, ୪-(କ) ଶରୀର । ୫-(କ) ନବ ତନୁ, ୬ (ଖ) ଏମାନଙ୍କର, ୭-(କ) ଦୁର୍ଣ୍ଣୟ, ୮-(କ) ଭାବ ପ୍ରବଳ ଦୁର୍ଣ୍ଣୟ ୯-(କ) ପ୍ରକାମଶକ୍ତ ଜ୍ଞାନେ । ୧୦-(କ) ଅସିଦ୍ଧ ବୃତ୍ତି ସାଧକ ସମୂହଂ ଗୋଷ୍ଠାର ବାବୁ ଉଦ୍‌ବେଗ ଅବସ୍ଥାରେ । ୧୧-(କ) ଅଭ୍ୟାସୁ ଅଛୁ, ୧୨-(ଖ) ତନୁ ଅଭାବକୁ ୧୩-(କ) ଦାହିଁ ।

Digitized by srujanika@gmail.com

ମନ ବୁଦ୍ଧି ଯେଣୁ ଚୈତନ୍ୟର ତାହାଂକ ବୋଲି ଗମିଲେ, କେ ଶବ ଭୂମି ତଣଲେ, କେ ବ୍ରହ୍ମାଣ୍ଡଯାକେ ପୂଣଲେ, କେ ଘନ ଅବସ୍ଥାକୁ ଜଣିଲେ (୧) । କେ ଶଣ ବ୍ଷାଣ ପ୍ରାପ୍ତେକ (୨) ମଣିଲେ । କେ ବଗୃଣଲେ ହୋ, ମହା ପ୍ରଳୟ ନ ଜଣେ (୩) ଯେବଣ ସ୍ଥାନ, ତହିଁ କ କଣ ପାଣବ ଏ ସ୍ତ୍ରୀ ଆଶ୍ରୟ କାମ । କେ ବଗୃଣଲ ହୋ, ମୋହର ତାହୁଂ ବନା ବସ୍ତୁ ନାହୁଂ, ଏ ମାୟା କନ୍ୟା ହୁଂ ତ (୪) ଅଟଇ ମୁହୁଂ । କେ ବୋଇଲ ହୋ, ମୋହଜା ରୂପେ ଆତ୍ମା ଝସଇ, ଶୁକ୍ତ ଯେସ୍ନେ ଭ୍ରାନ୍ତରେ ରଜତ ପ୍ରାପ୍ତେ ଦଶଇ । କେବଣ ମହାତ୍ମା ପରମ ବୁଦ୍ଧିରେ ବୋଇଲ, ଇନ୍ଦ୍ର ବୋଲେ ଆସି ଇନ୍ଦ୍ରଜାଲ ହୋଇଲ । କେ ବୋଇଲ, ଗନ୍ଧର୍ବ ନଦରେ ଏବା କେତେବେଳେ ଥାଇ । କେ ବୋଇଲ ହୋ, ମଦୁଆ କନ୍ଦର୍ପ ଆଜନ୍ମହୁଂ ବାଇ । କେ ବୋଇଲ ହୋ, ବ୍ରହ୍ମାଦ ପଦହିଁ ଯହୁଂ ଦଶଇ ଭ୍ରମ ତୋହର କର୍ମାର ଏଥି ବ୍ୟର୍ଥେ ଶ୍ରମ । ତ ସେ ତାପଶସ୍ୟ ନାଶନ ମହା ପ୍ରଭାବ ବ୍ରହ୍ମଜ୍ଞାନ ପ୍ରସାଦେ, ସକଳ ସିଦ୍ଧ ରୁଦ୍ରଗଣମୋନେ ରକ୍ଷା ଗଲେ ଅପ୍ରମାଦେ । ତହୁଂ ଅଭିନବ ଚୈତନ୍ୟ ନାମେ ରୁଦ୍ର ଗଣେକ ଥିଲ । କୋମଳ କଣ୍ଠେକ (୫) ଜ୍ଞାନରେ × ଆରୁକ୍ଷ (୬) ଯୋଗରେ, ସେ ଗୃହିଁ ଦେଇ ପଡ଼ିଲ ଏକା ଘୋର ଅନଙ୍ଗ ଧାଡ଼ିରେ, ସେ ମାୟା କନ୍ୟାକୁ ଦେଖିଲ । ସ୍ଥିର କର ତାହାର ଲାବଣ୍ୟ ସୁଧାନଧି ମୁଖ (୭) ନରେଖି ଦେଖିଲ । ତା ଅବଳ (୮) ଚକ୍ଷୁ ବଳିଲ । ସ୍ଥିର ଚକ୍ଷୁ ଚଳିଲ । ହୃଦୟ ସଳିଲ । ଚେତନା (୯) ବୁଡ଼ିଲ । ଶରୀର ଚମକିଲ । ବୁଦ୍ଧି ଝମକିଲ । ପ୍ରେମଲତା (୧୦) ପୁଲକିଲ । କାମ ଝମକିଲ । ସନ୍ୟାସ (୧୧) ବଳିଲ । ସ୍ୱେଦବନ୍ଦୁ ଗଳିଲ । ଶ୍ୱାସ ଚଳିଲ । ଗଣ୍ଡସ୍ଥଳ ଉଲସିଲ, ଭ୍ରୂଲତା ବିକାଶିଲ । ଶୃଙ୍ଗାରରସେ ରସିଲ । ଜ୍ଞାନ (୧୨) ମୁଦ୍ରା ଖସିଲ । ସମାଧି ନସିଲ । ଉତ୍କଣ୍ଠା ବଢ଼ିଲ । ବିକାର ମିଶିଲ । ଖେଦ ଜଳେ ପଶିଲ । ପାଦ ପାଣି ବସିଲ । ମନ କମ୍ପିଲ । ବେଦଜଳ ମାଡ଼ିଲ । ଯୋଗାଭ୍ୟାସ ଛାଡ଼ିଲ । ଉର୍ଦ୍ଧ୍ୱବନ୍ଧ ଛୁଟିଲ (୧୩) । ଖେଚରୀ ସ୍ଥାନ ଫିଟିଲ । ପ୍ରେମ ଲତିକା ବଢ଼ିଲ । ରସଜଳଧିରେ (୧୪) ମିଶିଲ (୧୫) । ତ ଏମନ୍ତ ସେ

---

୧-(କ) ଜାଣିଲେ, ୨-(ଖ)କେଶଣ ବ୍ଷା ପ୍ରାପ୍ତେ, ୩-(କ) ଜାଣେ, ୪-(କ) ଏ, ୫-(କ) କୋମଳ କଣ୍ଠେକ ଜ୍ଞାନେ, (ଖ) କଣ୍ଟକ, ୬-(କ) ଆଶଯ (ଖ) ଆରୁକ୍ଷ ୭-(ବହୁ) ମୁଖ ନାହିଁ ୮-(ବହୁ) ତାହାର ଅଚଳ ୯ (ବହୁ) ଚଇତନ, ୧୦-(ଖ) ପ୍ରେମ ଲତା ସୁଢକା ୧୧-(ଖ) ସବ୍ୟ.ସ ୧୨-(ବହୁ) ଜ୍ଞାନ ୧୩-(କ) ଓ (ବହୁ) ଅଧିକା, ରତ ରଙ୍ଗ ସୁମରିଲ, କନ୍ୟାରସେ ଭଜିଲ । ବନ୍ଧତା ବେଗ ବାଛିଲ, ଭବ ସାଗରେ ଝାସିଲ । ୧୪-(ବହୁ) ଜଳଧି, ତ ୧୫-(ବହୁ) ମଜ୍ଜିଲ । (କ) ରେ ନୁହେଁ । (ଖ) ରେ ନାହିଁ । (କ) ର ଅଧିକା- ଜାନୁ କମ୍ପିଲ, ନାଭି ଟାଙ୍କୋଶଲ, ଅମୃତ ଧାର ଗଡ଼ିଲ, ଛେଦ ଖେଦ ବଢ଼ିଲ, ଯୋଗ ଅଭ୍ୟାସ ଛାଡ଼ିଲ, ଏମନ୍ତ ସ୍ୱରୂପ ରୁଦ୍ରଗଣରେ ଦେଖି ସେ ମାୟା କନ୍ୟା ଅଭିନବ ଚଇତନ ମୁଖ ଗୃହୁଂ (ଯାଗ ଅଭ୍ୟାସ ଛାଡ଼ିଲ ପୁନରବୃତ୍ତି)

Digitized by srujanika@gmail.com

ମୋହିନୀ କନ୍ୟା ସଙ୍ଗେ ମନ୍ଦ ମନ୍ଦ ହୋଇ ହସିଲା । ତ ସେ ମାୟାକନ୍ୟାର ଜନ୍ମ ସାର୍ଥକ ହୋଇଲା (୧) । ପାର୍ବତୀଙ୍କର ଶର୍ମ ଘର୍ମ (୨) ହିଂ ବ୍ୟର୍ଥ ନୋହିଲା । କାମଦେବର ତରଳା ବଳିଲା (୩) । ପୁଷ୍ପବାଣ ଶସ୍ତ୍ର ନେଇ ସେ ରୁଦ୍ରଗଣ ହୃଦୟରେ ଦଳିଲା । ତ ସେ ମନ୍ମଥ ବିଜୟଲକ୍ଷ୍ମୀଙ୍କି ପାଇ, ଅତ୍ୟନ୍ତ ହରଷ ହୋଇ, ଜ୍ଞାନସୃଷ୍ଟି ଦୃଟାଇ, ନେହ-ପଦ୍ମ ଫୁଟାଇ, ମତ୍ତଗର୍ବ ପୁରୁଷକାରେ କୁସୁମଧନୁ ଟାଣିଲା । ତ ହର ହର ପାର୍ବତୀର (୪) ପ୍ରସାଦେ ଅପରାଜୟ ଶତ୍ରୁକୁ ଅନାୟାସେ ଜଣିଲା । ଆହା ହନ୍ତ ସେ ଅଭିନବ ଚୈତନ୍ୟ ନାମେ ସିଦ୍ଧ ରୁଦ୍ରଗଣ ଗୋଷ୍ଠିର (୫) ବାଗୁ ବଡ଼ମ୍ବୁଣ ଅବସ୍ଥାରେ, କଣ୍ଟଳ କୁରଙ୍ଗ ନୟନ ତାହାର ମନ ମଥ ପାଶେ ପଡ଼ିଲା । ଶିବ ଶିବ ଊର୍ଦ୍ଧ୍ୱଗତ ସୁସୁମ୍ନା ନାଡ଼ି ଅଧୋଗତକ ଗଡ଼ିଲା (୬) । ତ ଅବନ୍ଧନ ମତ୍ତ (୭) ମାତଙ୍ଗ ମନ ଲାବଣ୍ୟ ପଙ୍କେ ଲାଖିଲା । ହର ହର ପରମ୍ପରା (୮) ଗଲା । ମନ ଭୃଙ୍ଗି ଅନଙ୍ଗ ରଙ୍ଗେ ଭାଙ୍ଗିଲା । ନିତ୍ୟାନିତ୍ୟ ବସ୍ତୁ ବିଗ୍ଭର ତନ ଫକଟେ ରହିଲା । ବ୍ରହ୍ମରନ୍ଧ୍ର ଭେଦିଲା । ପବନହିଂ ଇଡ଼ା ନାଳେ ବହିଲା । ଷଡ଼ ଗୁଣ (୯) ସରଧାକୁ କ ମୋହିନୀ ଦ୍ୟାଘ୍ରୀ ଖେଦିଲା । କ ଧଇର୍ଯ୍ୟ ନାମ ଗିରିବରକୁ ଅପାଙ୍ଗ ବଜ୍ର (୧୦) ସୂଚୀ ଭେଦିଲା । ମହାତ୍ମା ପ୍ରଭବ ଲଜ୍ୟାକୁ ଉପହସିତ କୁନ୍ତ ମାଇଲା । ଶାନ୍ତରସ କମଳ ପୁଷ୍ପକୁ କ ଭ୍ରୂଲତା ସର୍ପିଣୀ ଖାଇଲା । କୈବଲ୍ୟ ପରମାନନ୍ଦକୁ କ ରତିସୁଖେ ନିବାରିଲା (୧୧) । କ ଯୋଗ ଅଭ୍ୟାସ ଅଗ୍ନିକି ଅଧରାମୃତ ବାରି ଲିଭାଇଲା । ଆହା ସେ ସିଦ୍ଧ-ରୁଦ୍ରଗଣ ଗୋଟା, ଶୋଚ୍ୟ ହୋଇ ଅଛୁ ତାହାର ପଞ୍ଚବାଣେ ଫୁଟା । ସେ ଖେଦ (୧୨) ଜଳଧିରେ ବୁଡ଼ିଅଛୁ । ତାହାର ଜ୍ଞାନ ଉଦୟ ଭୃଙ୍ଗି ବୁଡ଼ିଅଛୁ । ମନ୍ମଥ କୋପେ ପଡ଼ିଅଛୁ । ଚୈତନ୍ୟ ବୃକ୍ଷ ଛିଡ଼ିଅଛୁ । ହୃଦୟରେ ଅପାଙ୍ଗବାଣ ଗଡ଼ିଅଛୁ । ମୋହନ ପାଶି ଭିଡ଼ିଅଛୁ । ତା ଇନ୍ଦ୍ରିୟମାନ ଷଡ଼ି ଅଛୁ । ଭେଦ ଖେଦ ଦ୍ୱନ୍ଦେ ବଢ଼ିଅଛୁ । ତା ପଦ୍ମ ଆସନ ଲେଉଟିଅଛୁ (୧୩) । ତା ସୁନ୍ଦର ମୁଖରୁ ସ୍ୱେଦ ଟୋପି ଟୋପି (୧୪) ହୋଇ ଗଳୁଅଛୁ । ମନ୍ଦ ମନ୍ଦ ପବନେ ଭ୍ରମଳ ଯେତେ ତେତେ ପ୍ରାପ୍ତକ ହୋଇ ଅଧର ଥିରୁ ଥିରୁ ହୋଇ କମ୍ପୁଅଛୁ (୧୫) । ଜୃମ୍ଭଣେ ଅଙ୍ଗଭଙ୍ଗ ହୋଉଅଛୁ । ସାତ୍ତ୍ୱିକ ଭାବରେ ଦେହ ହୋଇଛୁ (୧୬) ଚମକିଲା ଚମକିଲା (୧୭) । ଝଙ୍କିତ (୧୮) ଜଡ଼େ ଚକ୍ଷୁ ହୋଇଅଛୁ ଚାଙ୍କିଲା ଚାଙ୍କିଲା । ଏମନ୍ତ ବ୍ୟବସ୍ଥା ଦେଖି ଈଶ୍ୱର ତ ହାକୁ (୧୯) ବଚନ ବୋଲୁଅଛନ୍ତି ଅତ୍ୟନ୍ତ କୋମଳ ସୁସ୍ୱର କରି (୨୦) । ହେ

---

(୧)-କ-ନାହିଁ । (୨)-ବନ୍ଧ-ଶ୍ରମଧାର (୩)-'ଖ' ରେ ଅଛୁ 'କ' ରେ ନାହିଁ । (୪)-'କ' ମାହେଶ୍ୱଶ୍ୱର, (୫)-'ଖ' ପୋଟାର, (୬)-'ଖ' ପଡ଼ିଲା, (୭)-'ବନ୍ଧ' ବନ୍ଧନ ମୁକ୍ତ (୮)-'ଖ' ପାରୁମ୍ପର, (୯)-'ଖ' ସତ୍ୟଗୁଣ, ବନ୍ଧ—ଷଡ଼ ଗୁଣ ଫଗୋଷ୍ଠି (୧୦)-'କ' ବାଣ (୧୧)-ବନ୍ଧ—ନିଭାଇଲା (୧୨)-ବନ୍ଧ—ଭାବ, (୧୩)-'ଖ'ରେ ନାହିଁ, (୧୪)-'କ' ବିନ୍ଦୁ ବିନ୍ଦୁ (୧୫)-'କ' ନୟନ କମ୍ପିଲା କମ୍ପିଲା ହୋଇ ଅଧର ଥିରୁ ଥିରୁ ହୋଇ ଚଳୁଅଛୁ, (୧୬)-'ଖ' ନାହିଁ, (୧୭)-'ଖ' ଚମକିଲା ଚମକିଲା ସାତ୍ତ୍ୱିକ ଶିତ୍କାର । (୧୮) ଅଙ୍କିତ, (୧୯)-'ଖ'-ରେ ନାହିଁ, (୨୦)-'ଖ' ନାହିଁ,

Digitized by srujanika@gmail.com

ବସ୍ତ୍ର ! ହେ ଅଭିନବ ଚୈତନ୍ୟ ! ସିଦ୍ଧ ନୋହିଲା ତୋହର ଭୋଗ ଆସକ୍ତ ମନ । ସେ ଯେବଣ ମନ୍ମଥ ମୋତେ କଲା କାତର, ତୋତେ ଜିଣିମାର ତାର କେତେ ମାତର । ଏବେ ତୁ ଉତ୍ତମ ନରେନ୍ଦ୍ର କୋଳେ ଜନ୍ମ ହେତୁ ଯାଇଂ । ଆସମୁଦ୍ରାନ୍ତ ପୃଥ୍ୱି ଭୋଗ କରିବୁ ତହିଂ । ଯୋଗୀ ଯେହ୍ନେ ନିର୍ବିକଳ୍ପ ବୁଦ୍ଧି, ତୋହର କଲ୍ୟାଣ କଲେ ନିଷ୍ଟେ ହୋଅଇ ସାଧି । ତୁ ହ୍ଵାଦେ ବାଞ୍ଛା କଲୁ ଯେମନ୍ତ, ଯୋଗଭ୍ରଷ୍ଟର ଫଳଇ ତେମନ୍ତ । ଏହି କନ୍ୟାକୁ ପାଇବୁ ତହିଂ ଶଙ୍କର ଗହଣ ବ୍ୟତିରକେ ମୃତ୍ୟୁମଣ୍ଡଳେ ଆନେ ଭୋଗ୍ୟ ନାହିଂ । ଜାଣୁ ସାଧୁ ଯେବେ ପତନ ହୋଇଯାଏ, କେ ମ୍ଳେଚ୍ଛଙ୍କ କେ ନୃପଗୃହ ହୁଏ (୧) । ଏବେ ଯାରୁ ସକଳ ବେଦନା ସହି, ଅନଙ୍ଗ ପଦ୍ମାକର ରାଜାର ପାଟବଂଶୀ ଶଶୀ ପ୍ରଭା ନାମେ ରାଣୀ ତାହାର ଗର୍ଭେ ରହି । ସେ ଅଭିନବ ଚୈତନ୍ୟ ନାମେ ରୁଦ୍ରଗଣ ଏମନ୍ତ ଶୁଣିଲା ଯହିଂ ଈଶ୍ଵରଙ୍କ ଅମୋଘ ବଚନ, ଝାଟକାରେ ବସିଲା ତାହାର ଦେହେ ଚଇତନ । ଜନ୍ମ ମରଣ କଥା ସୁମରିଲା । ବିଷୟୀ ବିଷମ ଘୋର ନରକ ବିଯୋରିଲା । ମନ ବୁଦ୍ଧି ଶର୍ଙ୍କିଲା (୨) । ଶଙ୍କର ବାତେ କଦଳୀ ପତର ପ୍ରାୟେକ ହୋଇ ମହାଭୟେ ପାଇ କମ୍ପିଲା । କାମାନ୍ଧକାର ଛୁଟିଲା । ଜନ୍ମର ଦୁଃଖ ଚେତୋଇ ବୋଇଲା ମୋତେ ନିଷ୍ଟେ ଅବିଦ୍ୟା ବ୍ୟାଘ୍ରିଣୀ ପୀଡ଼ିଲା । ଜନ୍ମ ହୋ ହୋ ବୋଲିବା ମାଏକେ କି କାଳ ଦେବତା ଘୋଟିଲା । ମୁଖ ବିବର୍ଣ୍ଣ ଦିଶିଲା । ତୁଣ୍ଡ ଶୁଖିଲା । ସାହାସ ଉଡ଼ିଲା । ଚିନ୍ତା ଜ୍ଵର ପୀଡ଼ିଲା । ଲୋତକ ପଡ଼ିଲା । ବାଣୀ ଭଲିଲା ।

ସେ ଆକୁଳ ଚିତ୍ତେ (୩) ଚନ୍ଦ୍ରଶେଖର ଶ୍ରୀମୁଖରେ ଉକ୍ତ ହୋଇ ମହା-ଉଚ୍ଛନ୍ନ (୪) ପାଇ, କରପଦ୍ମ ଯୋଡ଼ି, ବେଗ ଚେଖି ଗୁଣ୍ଡି (୫) ଅବନୀରେ ପଡ଼ି, (୬) କାକୁସ୍ଥ ହୋଇ ବୋଇଲା, ହେ ନାଥ ତୋହର ପାଦ ପଦ୍ମକୁ (୭) ଆଶ୍ରେ କରି ମୁଂ ଭ୍ରମି ହୋଇଲି ଯଦ୍ୟପି, ମାୟା ମୋହ ପାପିଷ୍ଟଙ୍କୁ ପରିକର୍ମୀ (୮) କରି ମୋତେ ଘୋର ନରକକୁ ଦେଉଅଛ ସମର୍ପି । ହେ ଦେବ ଦେବେଶ (୯) ଯେବଣ ସେ ଦାରୁଣ ବଚନ ମୋତେ ଦେଲ ଅଜ୍ଞା, ତାହା ତ୍ରୈଲୋକ୍ୟ ବ୍ରହ୍ମାଣ୍ଡେ (୧୦) କେ କରିପାରେ ଅବଜ୍ଞା । ତ ଜନ୍ମାଦି ଷୋଡ଼ଶ ବିକାର ତୁମ୍ଭ ଶ୍ରୀମୁଖରେ କହିଲ । ଅତ୍ୟନ୍ତ କାକୁସ୍ଥ ହୋଇ ବୋଇଲା ହେ ନାଥ ! ମୁଂ ତାହା କେମନ୍ତ କରି ସହିବି । ହେ ନାଥ ! ତୁ ତ ସର୍ବଜ୍ଞ ସର୍ବେଶ୍ଵର, ସର୍ବାପ୍ତ, (୧୧) ସର୍ବମୟ, ସର୍ବସ୍ଵରୂପ, ସର୍ବଦ୍ରଷ୍ଟା, ସର୍ବଆତ୍ମା, ସର୍ବହନ୍ତା (୧୨) ସର୍ବହର୍ତ୍ତା, ସର୍ବକର୍ତ୍ତା (୧୩) ସର୍ବାନ୍ତର୍ଯାମୀ, ତଥାପି ମୁହିଂ ଅପରାଧୀ ହୋଇ କହୁଅଛୁ ସ୍ଵାମୀ । ହେ ନାଥ ! ତ ସେ ଜନନୀ ଜଠରେ ମଳାଖଣ୍ଡ ପୃଷ୍ଠରେ ମୂତ୍ରନଦୀର

---

(୧)-'ଖ' ଜାଣୁ········ହୁଏ ପର୍ଯ୍ୟନ୍ତ ନାହିଁ । (୨)-'କ' ଝମକିଲା । ୩-(କ) ଜନ୍ମ ମରଣ ଭୀତେ ୪-(କ) ଭୟ, ୫-(କ) ନାହିଁ, ୬-(କ) ଗଡ଼ି । ପରବର୍ତ୍ତୀ ବିଷୟ କରପଦ୍ମ ଯୋଡ଼ି ପୁନରାବୃତ୍ତି, ୭-(କ) ପଦାରବିନ୍ଦାକୁ, ୮-(ଖ) ପରା, ୯-(ଖ) ନାହିଁ, ୧୦-(କ) ଚତୁର୍ଦ୍ଦଶ ଭୁବନେ ୧୧-(କ) ନାହିଁ, ୧୨-(କ) ନାହିଁ, ୧୩-(କ) ଏହାପରେ କ ଅଧିକା ସର୍ବସ୍ଥାୟୀ, ସର୍ବସାକ୍ଷୀ ରୂପ, ସର୍ବଜୀବ ଜୀବନ, ବ୍ୟାପକ ।

Digitized by srujanika@gmail.com

ତଟରେ ପିଳୋଦ୍ଭର ସଙ୍କଟରେ ନାଡ଼ି ଚର୍ମ ପୁଟରେ (୧) ତ୍ରିକୋଣାଗ୍ନି ପୁଟେ ଚର୍ମାଦି ମେଦ ପୁଟେ ଘନ ଢହୁଡ଼ିର ସଙ୍କଟେ (୨) ଜାଲ ପଟ ସେବ୍‌ନା କରି (୩) କମଠର ପ୍ରାୟେ ଅଙ୍ଗ ସଙ୍କୋଚଉ ଥିବ (୪) ତହୁଁ ମହା ବିଷମ ସଙ୍କଟରେ । ଶିବ ଶିବ, ତହୁଁ କୃମିମାନେ ଚଳୁଥିବେ (୫) କର୍ଣ୍ଣ ନାସାଦ୍ୱାରେ ଗଡ଼ୁଥିବେ, ଅନନ୍ତ ନାଡ଼ିମାନେ ଛନ୍ଦିଥିବେ, (୬) କର ଚରଣାଦି ସନ୍ଧିରେ ଜଡ଼ି ବାନ୍ଧିଥିବେ, ଶଙ୍ଖନାଳେ ଘୁରୁଥିବେ, ପୁଣି ନଡ଼ା (୭) ମାନଙ୍କର ଜଡ଼ିବାରେ, ଜନନୀ ଉଠିବା ବସିବାରେ, ପ୍ରକଟ ବିକଟ ହାଡ଼ ମାନଙ୍କର ତାପ ସହିବାରେ, ଜଠରାଗ୍ନି ଜଳିବାରେ, ବାତ ପିତ୍ତ ଶ୍ଳେଷ୍ମ ବ୍ୟାଧି ପଡ଼ିବାରେ, ରୁଧିରମାନଙ୍କ ସଡ଼ିବାରେ, ଦୁଷ୍ଟ ଆହାରମାନଙ୍କ ଜଡ଼ିବରେ, ନର୍କର ତାପ ସହିବାରେ, (୮) ଲଳମାନଙ୍କ ଖସିବାରେ, କଣ୍ଟକ ଗ୍ରାସମାନଙ୍କର ଜଳିବାରେ, ସପ୍ତଧାତୁ ପଚିବାରେ, ନାଡ଼ିମାନ ବୁଲିବାରେ, ପ୍ରାଣାଦି ପବନ ବନ୍ଧିବାରେ, ତାପତ୍ରୟ ସହିବାରେ, କାଳାଙ୍କର ଉପତରେ, ଚର୍ମ ପୁଟିକାରେ ରହିବାରେ, (୯) କେମନ୍ତ କରି ସେ ତାପମାନ ଅଙ୍ଗ ସହୁଥିବ । ତହିଁରେ ମୁହୁଁ ମୁହୁଁ ହୋଇ ଯାଉଥିବ ମୂର୍ଚ୍ଛା । ହେ ନାଥ ! ସେ ଭୟଙ୍କର ନରକକୁ ମୋତେ ଦେଉଅଛ ଠେଲି (୧୦) ଜନ୍ମ ବେଳର କଷ୍ଟ କହିଲେ ହେଂ ନ ସରଇ । ହରି ହରି, କେବଳ ସୁମରିବା ମାତ୍ରକେ ହେଂ ଜୀବନ ଯାଇ ପାରଇ । ତ ମାତାର ପ୍ରସବ କାଳେ କୁମ୍ଭୀ ନରକର ନଳେ, (୧୧) ପବନଙ୍କର ବଳେ, ପୂତି ଗନ୍ଧ ରୁଧିରଙ୍କର ପିଚ୍ଛିଳେ, ଜୀବନର ବିକଳେ, କୁତ୍ସିତ ଲଳସ୍ରବ ଦାଟେ, ହାଡ଼ଙ୍କର ସଙ୍କଟେ, ଅତ୍ୟନ୍ତ ଆକୁଳେ, ପରମ ଆସୁରର ବଳେ, ମୁଣ୍ଡ ପବନେ ଖସୁଥିଲେ । ପୁଣି ମୋହି ହୋଇ କରି ପଡ଼ି ସ୍ଥାନେ ସ୍ଥାନେ ଦୟୁଥିଲେ । ମୃତ୍ୟୁ ଦେବତା (୧୨) ଥିବ ଜଗନ୍ତରେ ଆକର୍ଷି । କାଳ ଦେବତା (୧୩) ଟାଣୁଥିବ ଗଳାରେ ଲଗାଇ ଅଜ୍ଞାନ ମୋହ ଫାଶି ଦଶପବନ ଊର୍ଦ୍ଧ୍ୱଗତି ହୋଇ ପଶୁଥିବେ । ବ୍ୟାଧି ସର୍ପିଣୀମାନେ ବିକଟ ଦ୍ରଂଷ୍ଟ୍ରା ଦେଖାଇ (୧୪) ହସୁଥିବେ । କଣ୍ଠାଗତ ପ୍ରାଣେ ଧର୍ମ ଧର୍ମ ସୁମରନ୍ତେ ରୁଧିର ଗନ୍ଧ ସଙ୍କୀର୍ଣ୍ଣ (୧୫) ବିଷମ ଦାଢ଼ ସଖିଣୀ ବିପେ କଷ୍ଟେ କଷ୍ଟେ ପ୍ରାଣ ପାଇ ଖସିବାର ବିକଳେ (୧୬) ମହାସର୍ପ ଯେମନ୍ତ ବାହାର ହୋଇ ଅତ୍ୟନ୍ତ ସଙ୍କଟ ବଡ଼େ । ହେ ପରମେଶ୍ୱର ! ଯେତେବେଳେ ପୃଥ୍ୱୀରେ ପଡ଼ିବ । କୋଽହଂ କୋଽହଂ କରି ଧୂନିଏ କରିବ । ଅଜ୍ଞାନ ସମୁଦ୍ରେ ମଜ୍ଜିବ । ପୁଣ୍ୟମସ୍ତ ବୃଦ୍ଧି ତେଜିବ । ଆପଣାକୁ ଆପଣେ ହେଜିବ । ସ୍ତନ ଲଳାପାନେ ମଜ୍ଜିବ (୧୭) ।

---

୧-(ଙ)'ଟ' ର ସ୍ଥାନରେ 'ଟେ' କ' ପୋଥିରେ ନାଡ଼ି ଚର୍ମଙ୍କର କୋଟରେ ୨-(କ) 'କ' ପୋଥିରେ ସଙ୍କଟରେ, ୩-(କ) (ବନ୍ଧ) ନାହିଁ । (୪)-ସଙ୍କଟୁ ଥିବ, ୫-(ଖ), ଚରୁଥିବେ, ୬-ଛନ୍ଦିଥିବେ ପରେ (କ) ଅଧିକା ଅଙ୍ଗ ଶ୍ରେଷ୍ଠମାଳ । ୭-(ଖ) ଚଜ, ୮-(ବନ୍ଧ) ତାପତ୍ରୟ, (ଘ) ଜ୍ୱରଙ୍କର ତାପ, ୯-(କ) ଜଡ଼ିବାରେ, ବସିବାରେ ପ୍ରଭୃତର 'ରେ' ସ୍ଥାନରେ 'ଏ' । ୧୦-(ଖ) ସିଧ, ୧୧-(କ) କୁଣ୍ଡ ନର୍କାଦି ନାଳେ ୧୨-(ଖ) ମୃତ୍ୟୁ । ୧୩-(ଘ) କାଳକଣ୍ଠରେ, ୧୪-(ଙ) କଟ ବିକଟ ଦନ୍ତ ଦେଖାଇ, ୧୫-(ଖ) ରୁଧିରଗନ୍ଧ ୧୬-(କ) ଅଧିକା କଷ୍ଟେ କଷ୍ଟେ ପ୍ରାଣପାଇ ପଡ଼ିବ ତଳେ, ୧୭-(କ) ଭଜିବ ।

Digitized by srujanika@gmail.com

ବପୁ ହୋଇଥିବ ମଳେ ମଳିନ । ଜାଗ୍ରତ ସ୍ୱପ୍ନ ସୁସୁପ୍ତିରେ ହୋଇଥିବ ବଳିନ । ହେ ଜଗତ ଅମ୍ବା (୧) ସଦାଶିବ ! ମତେ ଈଶ୍ୱର ଭାବ ଛଡ଼ାଇ କରୁଅଛ ଜୀବ । ଆଦ୍ୟନ୍ତ ମଧ୍ୟ ସବ ହିଂ କଠୋର (୨) । ହରହର, ପ୍ରଭୁମାନଙ୍କର ହୃଦୟ ହିଂ ସେ ଏଡ଼େ ନିଷ୍ଠୁର । ହେ ନାଥ ! ତଦନ୍ତରେ କୁମାର ବୟସେ, ଅକାରଣ ଶିଶୁରଙ୍ଗ କ୍ରୀଡ଼ା ରସେ, ଶରୀର ଆବସେ, ଅବିଦ୍ୟା (୩) ଅଭ୍ୟାସେ, ପିତା ମାତା ସହିତେ, ଗୁରୁଜନମାନଙ୍କୁ ଭୟ ପାଉଥିବ ବିଶେଷେ । ହେ ନାଥ ! ତଦନ୍ତରେ କିଶୋର ବୟସରେ (୪) ଅହଂମିତ (୫) ବୃଦ୍ଧି ହୋଇବ । ଆଧ୍ୟାତ୍ମିକ, ଆଧି ଭୌତିକ, ଆଧି ଦୈବିକ ତାପତ୍ରୟ ଅଗ୍ନିରେ ଶରୀର ଦହିବ । ମନର ଶୋକ, ମୋହ; ପ୍ରାଣର କ୍ଷୁଧା, ପିପାସା; ଦେହର, ଜରା ମୃତ୍ୟୁ ଏ ଷଡ଼ ଊର୍ମି ବେଢ଼ିବ । ହମସ୍ତ ସମସ୍ତ ଅବସ୍ଥାମାନ (୬) ସ୍ଥାବର ପ୍ରାୟେକ ହୋଇ ଏ• ଶରୀର ସହିବ, ବାତସ୍ତମ୍ଭିତ ଘାରିବ, ଧଇର୍ଯ୍ୟ ସରିବ, କ୍ଷୋଭ ବଳିବ, ତୃଷ୍ଣା ଦଳିବ, ବ୍ୟାଧି ଆକର୍ଷିବ, ହିଂସା ବସିବ, ଆଶା ଦଶିବ, ତ୍ରିଗୁଣ ଛନ୍ଦିବ, ଜନ୍ମମରଣ ରୁନ୍ଧିବ, କର୍ମ ବାନ୍ଧିବ, ଅବିଦ୍ୟା ରୁନ୍ଧିବ, ମୋହ ବଢ଼ିବ, ବିବେକ ଉଡ଼ିବ, ଚନ୍ଦ୍ରାଜ୍ଜରେ ବୁଡ଼ିବ, ମାୟା ମୋହିବ, ଛନ୍ନ ଦଶିବ, ଅଜ୍ଞାନ ଘୋଟିବ, ଷଡ଼ଊର୍ମି ବେଢ଼ିବ, ବିଭ୍ରମ ବଳାକ୍କାର କରିବ, ନଶ୍ୱର ଦେହ ମୁଂ ବୋଲି (୭), ମୁକ୍ତି ପଥକୁ ନ ନେବ, ଜ୍ଞାନ ଉଡ଼ିବ, ଶାନ୍ତି ଗୁଡ଼ିବ, ସେନେହ ପୀଡ଼ିବ, ସମସ୍ତ ଫୁଲିବ, ଚିତ୍ତ ଭୁଲିବ, କନ୍ଦର୍ପ ମାରିବ, ଅଜ୍ଞାନ ଜଡ଼ିବ, ଶତଭ୍ରମ ବଢ଼ିବ (୮), ସ୍ନେହ ବଢ଼ିବ, ଲୋଭ ପୀଡ଼ିବ, ମନ ଗଳିବ, ଚିତ୍ତ ଭଳିବ (୯); ଅବିଦ୍ୟା ଭ୍ରମ ବଳକ୍କାରେ ମୁଂ ଦେହକୁ (୧୦) ନେବ, ଚିତ୍ତ ଚଞ୍ଚଳେ, ବୁଦ୍ଧିର କଳ୍ପନା, ନିଦ୍ରାର ସ୍ୱପନ, ଅବିଦ୍ୟାର ଅଭ୍ୟାସ, ସେ ସତ ବୋଲି ମୋତେ ହୋଇଥିବ ପ୍ରକାଶ । ଏ ଦେହ ନଶ୍ୱରେ ମୁଂ ବୋଲି ମନ ବୁଦ୍ଧି ଘେନିବ । ବ୍ୟାଧିର ପରୀକ୍ଷ୍ୟା ଔଷଧକୁ ସୁଖ ଭୋଗ ବୋଲି ମନ ବୁଦ୍ଧି ଘେନିବ । ତ କେବଣ କେବଣ ପ୍ରକାରେ ତୃଷା ବ୍ୟାଧିକୁ ଲୋଡ଼ିବ, ପଣା ପେୟାଦି ରସ । କ୍ଷୁଧା ବ୍ୟାଧି ଶାନ୍ତ କରଇ ଔଷଧ ପ୍ରକାରେ ଅନ୍ନବ୍ୟଞ୍ଜନାଦି ବିବିଧ ଗ୍ରାସ । କ୍ଷୁଧା ତୃଷା ନଥାଇଂ (୧୧) ଯେବେ, ଅନ୍ନ ପାଣି କିଏ (୧୨) ଲୋଡ଼ଇ (୧୩) ତେବେ । ଗ୍ରୀଷ୍ମ ଋତୁରେ ଯେବେ ଶରୀର ପୋଡ଼ଇ । ସେ ତାପ ବ୍ୟାଧିକି ଔଷଦ (୧୪) ଚନ୍ଦନ ଲୋଡଇ । ହେମନ୍ତ ଋତୁରେ ଯେତେ ଶୀତ ବାଧା (୧୫) କରଇ । ଦେହରେ ଚନ୍ଦନକୁ (୧୬) ଆଦର ସରଇ । କାମ ବ୍ୟାଧି ଯେବେ ହୋଇ (୧୭) ପ୍ରବଳ । ସ୍ତ୍ରୀ ଭୋଗେ ଶାନ୍ତ (୧୮) ହୋଇ ସେ ମନ୍ମଥ ଅନଳ। ନିଦ୍ରା ବ୍ୟାଧିକତ ଶଯ୍ୟା ପ୍ରତିକାର ।

---

୧-ଜଗତ କର୍ତ୍ତା । ୨-(କ) ଆଦ୍ୟ ମଧ୍ୟ ପ୍ରାନ୍ତ ସମସ୍ତହିଁ କଠୋର । ୩-(ଖ) ବିଦ୍ୟାର, ୪-(କ) ଯୁବ ବୟସେ । ୫-ଅହଂମତ, ୬-ପାର ପରଂ କରି । ୭-(ଖ) ନାହିଁ, ୮-କହିରେ ବିବେକ ଉଡ଼ିବ ଦୁଇଥର ଅଛି । ୯-କନ୍ଦର୍ପ ମାରିବ ଠାରୁ ଚିତ୍ତ ଭଳିବ ପର୍ଯ୍ୟନ୍ତ 'ଖ' ରେ ନାହିଁ । ୧୦-(କ) ମୁକ୍ତି ପନ୍ଥାକୁ ନେବ, ୧୧-ନଥିବ 'କ', ୧୨-'କ' କିଂପା, କମ୍ପା, ୧୩-ଲୋଡ଼ିବ, ୧୪-(କ) ଲୋକ ଚନ୍ଦନ ଅଉଷଧ, ୧୫-(ଖ) ବ୍ୟାଧି । ୧୬- 'ଖ' ଚନ୍ଦ୍ରକୁ ୧୭-ହୋଥଇ ୧୮-ଶାନ୍ତ

Digitized by srujanika@gmail.com

ଇଢ଼ ସୁସୁଖ (୧) କଣ୍ଡୁ ଅଗ୍ନିକ (୨) ଦେଖାଇବା ଆକାର । ଏ ଶରୀର ଅଟଇ ବ୍ରଣ ବ୍ୟାଧିର ଆକାର (୩) । ଅନ୍ନ ଔଷଧ ଲେପ୍ୟ ଏହାକୁ ପ୍ରତିକାର । ଔଷଧ ନିମିତ୍ତ ଜଳପାନ କରି । ଜୀର୍ଣ୍ଣ ପଟ୍ଟ ବନ୍ଧନ ନ୍ୟାୟେ ବସ୍ତ୍ର ପରିଧାନ କରି । ଜନ୍ମ ମରଣ ଜରା ଏ ଶରୀର ଆଦି ଧର୍ମ । ତୋହର ପାଦ ବ୍ୟତିରେକେ ନୋହିଲା କର୍ମ । ଅନାତ୍ମାମୟେ ଶରୀରକୁ ଆତ୍ମା ପ୍ରାୟେ (୪) ଯତ୍ନଂ କରିଅଛୁ (୫) ମତି । ତହ୍ନଂ ବ୍ୟାଧିମାନଙ୍କର ପ୍ରତିଷ୍ଠା ଔଷଧିକୁ ଭୋଗ ପ୍ରାୟେ ମଣି ହୋଇଥାଇ (୬) ଉପତି ।

ହେ ନାଥ ! ଯୁବାବୟସର ଅବସ୍ଥା ଦୁଃଖିତ କହିଲେ ହେଂ ନ ସରଇ । ଅସ୍ଥିମାଂସ ନିର୍ମିତ ସ୍ତ୍ରୀ ରୂପକୁ ଦେଖିଲେ ତରଇ (୭) । ଲାଳ ପୂରିତ ଅଧର ଅମୃତ ପ୍ରାୟେ ମଣିପିଅଇ, ଚର୍ମ ପୁଟିକାରେ (୮) ରକ୍ତ ମେଦ ପୂରେଇଲା ସ୍ତନ ପାଇଲେ ହେଂ ଜାଅଇ । ଚଳ ଚଳ (୯) ପାଣି ଫୋଟକାର ଦୃଷ୍ଟି ଚକ୍ଷୁ (୧୦) ଅପାଙ୍ଗ ଦେଖିଲେ ହେଂ (୧୧) ଜରଇ । ଅମେଧ ରୁଧିର ପୂଜ ଦୁର୍ଗନ୍ଧ ପନ୍ଥରେ (୧୨) କୃମିର ପ୍ରାୟେକ (୧୩) ହୋଇ, ମହାମୋହ (୧୪) ବଳରେ ଚୁମ୍ବନ ଦେଇ, ନିପୁଣଲା ପ୍ରାୟେ ହୋଇ, ହରଷେ ରମଣ କରଇ (୧୫) । ଏମନ୍ତ ବସ୍ତୁ ଯେଉଁ ଅନାତ୍ମ ଅନିତ ଶରୀରକୁ ଆବୋରି, ଏ ବିବିଧ ଦୁଃଖମାନ ପାଉଥାଇ, ମୃଗ ତୃଷ୍ଣା ଜଳେ ପଡ଼ି । ଶିବଶିବ, ଏ ଦେହରେ ଯେବେ ଜଗତ କର୍ତ୍ତା ବିଧାତା ଭ୍ରାନ୍ତିରେ ଚର୍ମ ମାଛିକ ଢାଙ୍କିବାକୁ ବିସ୍ମୃତେ ପଶୋରନ୍ତ (୧୬) । ରୁଧିରମାନେ ଗଳୁଥାନ୍ତେ, କୃମିମାନେ ଚଳୁଥାନ୍ତେ, ଅସ୍ଥିମାନେ ଦିଶୁଥାନ୍ତେ, ଜାଲମାନେ ନ ଶୁଆନ୍ତେ, ମକ୍ଷିମାନେ ବସୁଥାନ୍ତେ, ମାଂସମାନେ ଶୁଖୁଥାନ୍ତେ, ବସାମାନେ ତରଳିଯାନ୍ତେ, କାକମାନେ ବସୁଥାନ୍ତେ (୧୭) ଶୃଗାଳମାନେ ଧାଉଁଥାନ୍ତେ, ଗୃଧ୍ରମାନେ ଖାଉଥାନ୍ତେ, ଶ୍ୱାନମାନେ ବେଢ଼ିଥାନ୍ତେ, ମାଛିମାନେ ଦଂଶୁଥାନ୍ତେ (୧୮) ଏମନ୍ତ କରି ଯେ (୧୯) ଆମିଷ ଯୋହା (୨୦) ଜନ୍ତୁମାନେ ନିରନ୍ତରେ ଗୋଡ଼ାଇ ଧରୁଥାନ୍ତେ । କେ ଅବା କାହାକୁ ନିବାରି ପାରନ୍ତେ (୨୧) । ତେଣୁ (୨୨) ଏ ଅନିତ୍ୟ ଶରୀର । ସମସ୍ତ ବିପତ୍ତିମାନଙ୍କର ଏ ଅଟଇ ଘର । ମେଦ ଅସ୍ଥି ନିର୍ବାଣ ଅତ୍ୟନ୍ତ ଜଡ଼ । ଶରୀର ବନ୍ଧ କେବା ହୋଇବ ବଡ଼, ବ୍ୟାଧିମାନଙ୍କର ତ ଏ (୨୩)

---

(୧) 'କ' ସୁଖଭୋଗ (୨) କଣ୍ଡୁ ସମୟରେ ଅଗ୍ନିକ (୩) 'ଖ' ସାକାର (୪) 'କ' ବୋଲି (୫) 'କ' ଥିବି । (୬) 'କ' ହେଉଥିବ । (୭) 'କ' ଅତ୍ୟନ୍ତ ହରଷେ ରମଣ କରଇ । (୮) 'କ' ଫୁଟିକାରେ (୯) 'କ' ଚଳହଳ ଚକ୍ଷୁ (୧୦) 'କ' ନାହିଁ (୧୧) 'କ' ଦେଖାଇଲେ (୧୨) 'କ' ପଥ (୧୩) 'କ' ପ୍ରାୟକ (୧୪) 'କ' ମହାମୋହ (୧୫) 'କ' ଦୁଇଥର ଅଛୁ । (୧୬) 'କ' ଏ ମୂର୍ତ୍ତିମନ୍ତ ଜଡ଼ ଶରୀରକୁ ଆବୋରିତ ହୋଇ ଯେବେ ଏ ଚର୍ମମାଛି ନ ଥାନ୍ତି । (୧୭) ମାଂସମାନେ ଶୁଖୁଥାନ୍ତେ ଠାରୁ କାକମାନେ ବସୁଥାନ୍ତେ 'ଖ' ନାହିଁ । (୧୮) 'ଖ' ଜଡ଼ୁଥାନ୍ତେ, (୧୯) 'ଖ' ନାହିଁ (୨୦) 'କ' ସ୍ପୃହା, (୨୧) 'କ' ପାରନ୍ତେଟି, (୨୨) 'କ' ଏମନ୍ତ ହୋଇ (୨୩) 'କ' ଏତ

Digitized by srujanika@gmail.com

ଝର୍ଗିବ ସଦନ । ଝରନ୍ତରେ ଲଖ କଣ ମରୁଥାଇ ମଦନ (୧), ଅନବରତେ (୨) ନବଦ୍ୱାରେ ସ୍ରବୁଥ ଇ ନରକ । ବାହ୍ୟ (୩) ଅଭ୍ୟନ୍ତରେ ବସ୍ତୁଶଲେ କେହ୍ନ ଜୁହ୍ନଇ ସରକ, ଏ ଗୁଣ (୪) ବନ୍ଧନ ଦଉଡ଼ି ଜଡ଼ (୫) ଶରୀରକୁ ଦୁଃଯହ୍ନ ଦୁଃଖ ଯେତେକ, ଅହ୍ନଂକାର ପ୍ରାପ୍ତେକ ହୋଇ (୬) ଯୁବାବସ୍ଥା ରେ ମୁଂ ଗାଇବ, (୭) ତେତେକ ।

ହେ ନଥ ! ଏବେର ଅନ୍ତରେ ଯେ ହୋଇବ ଜ୍ୱର । (୮) ଏ ଶରୀର ଦର୍ଶିବ ନଷ୍ଟ ବିଦ୍ୟାର ତରଙ୍ଗ ପତ୍ର । ଭ୍ରମରକୁ ଝନ୍ଦଇ (୯) ଯେବଣ ଯେ କେଶ (୧୦) । ଯେ ଘନ ଗ୍ରୀକାଚ(୧୧) ଶ୍ୱେତ ଗୃମର ପ୍ରାପ୍ତକ (୧୨) ହୋଇବ ପ୍ରକାଶ (୧୩) । ମୀଲୋତ୍ପଳ ପ୍ରାପ୍ତେକ ଯେ (୧୪) ଯେବଣ ଯେ ଚକ୍ଷୁ । ଯେ ମର୍କଟ (୧୫) ବକୃତ (୧୬) ନସ୍ୟନ ପ୍ରାଏ ହୋଇବ ତେଲ୍ଲଂ ତେଲ୍ଲଂ । ଶୁଙ୍କ ସୁବର୍ଣ୍ଣ ପ୍ରାପ୍ତେକ ଯେବଣ ଶରୀର କାନ୍ତ । ଯେ ସୁକ୍ଷ୍ମ ଶବର ପ୍ରାପ୍ତେ ଦର୍ଶିବ ଦେହ୍ନର ଭ୍ରାନ୍ତ (୧୭) । ସିଂହ୍ନ ବଙ୍କମ ପ୍ରାପ୍ତେକ ଯେବଣ ମଧ୍ୟ । ଯେ ଲଙ୍ଗଳ କାଠର ପ୍ରାପ୍ତେ ଦର୍ଶିବ (୧୮) କୁବୁଜା । ତୁଣ୍ଡରୁ ଝରନ୍ତେର ଗଳୁଥିବ ଲଲ । ବକ୍ଷସ୍ଥଳ ମାଡ଼ି ବସିଥିବ କାଳ (୧୯) । ହାଡ଼ମାଳ କଙ୍କାଳ ଯେ ଦେହ୍ନ ଦଶଇ । ଯପୋଡ଼େ ଆସି ବଲି ପଳିତ (୨୦) ମିଶଇ । ନସ୍ୟନ ଗଳଇ ତଳକୁ କରଇ ତୁଣ୍ଡ । ବାତେ ପାଦପ ପ୍ରାପ୍ତେ ହୋଇ ହଲୁଥାଇ ତୁଣ୍ଡ (୨୧) । ନାଭି ଲେଉଟାଇ, ବଳ ତୁଟଇ, ଉଠିଲେ ଫୁଟଇ, ଚରଣ ଲେଟଇ (୨୨) ହସିଲେ କାଶଇ, ଭେଡ଼ାକେ ବସଇ, ଲଉଡ଼ି ଧଣ ଥର ଥର ହୋଇ ଉଠଇ । ଇନ୍ଦ୍ରୁ ସ୍ତ୍ରୀମାନେ ଭିତରକୁ ପଶନ୍ତି । ତରୁଣ ଲେକମାନେ ଦେଖିଲେ ହେଂ ହସନ୍ତି !

ହେ ନାଥ ! ହେର ଇଚ୍ଛା ସରଇ । ସପ୍ତଧାତୁ ମରଇ । ସଦ୍‌ବୁଦ୍ଧି ହରଇ । ବିହ୍ୱଳ (୨୩) କରଇ । ପ୍ରପଞ୍ଚ ଦଶଇ । କେଶ ଖସଇ । ସ୍ଥାନ (୨୪) ପଶଇ, ଧର୍ଯ୍ୟ ନାଶଇ (୨୫) । ଶିର ଯାକୋଡ଼ଇ (୨୬) ରୋମ ଟାଙ୍କୋରଇ । ହୃଦସ୍ଥ ଚହଂକଇ (୨୭) ଜାନୁକମ୍ପଇ (୨୮) ଝଶ୍ୱାସ ଧକଇ । ଝଦ୍ରା ଯାଇଥିଲେ,ସ୍ୱପ୍ନ ଅବସ୍ଥାରେ ପ୍ରଳାପ କହ୍ନଇ (୨୯) । କୋମଳ ଆହ୍ନାର ହ୍ନି ନ ଜରଇ(୩୦) । ଅଗ୍ନି କ୍ଷୀନ୍ନ (୩୧) । ଦୂର ଶଦ ନ ଶୁଭଇ ଶ୍ରୁତିକ୍ଲାନ, ଯୁବାସ୍ତ୍ରି ଶମାନେ ଦେଖିଲେ ହେଂହସନ୍ତି(୩୨)କର୍ଣ୍ଣମୂଳ ପଣି ଯାମି(୩୩) ଦାନ୍ତ ପଡ଼ଯାଇ(୩୪)

---

(୧) ମାରୁଥାଏ ମେଦ ଅସ୍ଥି ସମୂହର ମଧ୍ୟେ ଅନୁବ୍ରତେ ପ୍ରତାପ କଣ ମାରଇ ମଦନ, (୨) ‘କ’ ଅନୁବ୍ରତେ, (୩) ‘କ’ ବାହ୍ନଯ୍ୟା, (୪) ‘କ’ ଝିଗୁଣ (୫) ‘କ’ ଜଡ଼, (୬) ‘କ’ ମଣି । (୭) ‘କ’ ପାଇବନା । (୮) ‘କ’ ଜସ୍ର (୯) ‘ଚ’ ଦୂଷଣ କରଇ (୧୦) ‘କ’ ସୁକେଶ (୧୧) ‘ଖ’ ନାହିଁ (୧୨) ‘କ’ ପ୍ରାପ୍ତ (୧୩) ‘କ’ ଦର୍ଶିବ ଯକାଶ (୧୪) ‘କ’ ମୀଲୋତ୍ପଳକୁ ଝନ୍ଦଇ (୧୫) ‘କ’ ମର୍କଟର (୧୬) ‘କ’ ବକୃତ (୧୭)‘ କ’ ଶୁଷ୍କ ଶୁଶୁମ୍ନର ପ୍ରାପ୍ତେକ ହେ ଇବ କାନ୍ତ । (୧୮) ‘କ’ ହୋଇବ (୧୯) ‘କ’ ମାଡ଼ିଥିବ କାଳ (୨୦) ‘କ’ ବଳିତ ଗଳିତ, (୨୧) ‘କ’ ମୁଣ୍ଡ, (୨୨) ‘କ’ ନାହିଁ (୨୩) ‘କ’ ବିଉଲ, (୨୪) ‘କ’ ଥାନ, (୨୫) ‘କ’ ଧଇର୍ଯ୍ୟ ସରଇ । (୨୬) ‘କ’ ଯଙ୍କୋଚଇ, (୨୭) ‘କ’ ଚମକଇ, (୨୮) ‘କ’ କମ୍ପାଇ, (୨୯) ‘କ’ ପ୍ଲବକହିଁ ଚମକଇ, ପ୍ରଳାପ କରଇ । (୩୦) ‘କ’ ଜରନ୍ତି (୩୧) ‘କ’ ଅଗ୍ନି କ୍ଷୀଣ (୩୨) ‘କ’ ରେ ନାହିଁ (୩୩) ‘କ’ ପଶିଯାଇ (୩୪)‘ଖ’ପଶିଯାଇ ।

Digitized by srujanika@gmail.com

ଅମୃତ ସମାନ ଗ୍ରାସ ପାଞ୍ଚୁଲ ଆଛ ଖାଇ, ଅଶୁଚମନ୍ତ (୧) ହୋଇ ମଳେ (୨) ମଳନ । ଆସୁର ଧର୍ମ ଯାଇ ଶରୀର ଛିନ୍ନ । ଦୂର ଶବଦ ନ ଶୁଭଇ ଶ୍ରୁତି ଗଳଇ । ହା ଧିକ ଧିକ, କେଉଣସି ଭଙ୍ଗୁର (୩) ଅବସ୍ଥାରେ । ଯେ ମଣିରତ୍ନ ମୁକୁତା ଗୁନ୍ଥ (୪) ପାରଇ ନଶାକାଳେ । ତାକୁ ଶ୍ୱେତ ବୃଷଭ ନ ଦଶଇ ଦବଯ (୫) ଦୁଇ ପ୍ରହର ବେଳେ । ଲୋକ ନ ପୁଚ୍ଛଇ । ଯେବଣ ପଣ୍ଡିତ ନରନ୍ତରେ (୬) ସ୍ତବ (୭) ଗାଏଇ (୮) ତାହାର ନାମ ଧଇଲେ ତାହାଙ୍କୁ (୯) ଅମୃତ ଭଷ ପ୍ରାପ୍ତ ନୋହଇ । ତ ବାବୁ କଷ୍ଟରେ (୧୦) ବୁଦ୍ଧି ସୁଦ୍ଧି, ଦାନ, ଧ୍ୟାନ, ଧର୍ଯ୍ୟ (୧୧) ଶଉର୍ଯ୍ୟ (୧୨), ବସୁର ଆସୁର, ଶାନ୍ତ କାନ୍ତ, ସୁର ସୁନ୍ଦର, ଧୀରବୀର, ଲଜ (୧୩) ଉପାସ୍ୟେ (୧୪), ଉଦ୍‌ଯୋଗ (୧୫) ଉତ୍ସାହ, ଧର୍ମ କର୍ମ (୧୬) ମୁଖ୍ୟ (୧୭) କରି ସମସ୍ତ ହିଁ (୧୮) ପାଇ (୧୯) । ଏକା କେବଳ ତରୁଣ ହୋଇଥିବାକୁ ତୃଷ୍ଣାହିଁ ସେ (୨୦) ଆଛ । ହେ ସ୍ୱାମୀ ବାବୁ ଅନ୍ୟାସୁରେ (୨୧) ଏ ଜନ୍ମ ଗୋଟାର ବାଳ (୨୨) ସ୍ତବ ଯାଇ ଅଜ୍ଞାନ ମତେ । ତରୁଣସ୍ତବ ଯାଇ ବନତା ଭୋଗ (୨୩) ଆସକତେ (୨୪) । ବୃଦ୍ଧ ହୋଇଲେ ବ୍ୟାଧି ଯାରଇ । କୋଟକାସ୍ତ (୨୫) କୃମିର ପ୍ରାପ୍ତେକ ଆପଣା ପାଣରେ ପଡ଼ି ଆପଣେ ହେଁ (୨୬) ମରଇ । ପ୍ରାତଃକାଳ ମଳମୂତ୍ର ମୋଚନାଦରେ ଯାଇ ମଧ୍ୟାହ୍ନ କାଳେ (୨୭) କ୍ଷୁଧା ପିପାସେ ଖାଇ । ସାୟଂ କାଳ ତ ମଦନେ ମନ୍ଥ ଗ୍ରାସ କାଳ ତ (୨୮) ମୃତ୍ୟୁ ପିଣ୍ଡର ପ୍ରାପ୍ତେ (୨୯) ହୋଇ ତତ୍‌କାଳ ନିଦ୍ରାରେ ଗତ । ଆର୍‌କାହିଁ ପରମାନନ୍ଦର ପଦ୍ମପାଦ (୩୦) ହୋଇବ ପ୍ରାପତ ।

ଏମନ୍ତେ ସେ ଅଭୁନବ ଚୈତନନାମେ (୩୧) ରୁଦ୍ରଗଣ ବୃଦ୍ଧା ଅବସ୍ଥା ଜନ୍ମ ମରଣ ଦୁଃଖ ସୁମରବା ମାତ୍ରକେ ଅବନୀରେ ପଡ଼ିଲ ମୂର୍ଚ୍ଛାଗତ ହୋଇ । ତ ସେହିକ୍ଷଣେ (୩୨) ଚେତନା ପାଇଲ । କ କାଳ ଝିମାଇଲ । ଗଦଗଦ ହୋଇ ଶୋକେ ବୋଇଲ । ଏ ଜନ୍ମ ମରଣ ନରକ ସମୁଦ୍ରୁଁ ତ (୩୩) ବାସନା ବନ୍ଧର ବଳେ ତରିବାକୁ ନ ହୋଇଲ । ହେ

---

(୧) 'ଖ' ଅଶୁଚବନ୍ତ, 'ଖ' ଅମୁତାଦ ଲେହ ପାଇ, ଲେହଇ ନାହିଁ । (୨) 'କ' ମନ୍ଦେ । (୩) 'କ' ଏଭଙ୍ଗ ବଡ଼ମୂର୍ଖ (୪) 'କ' ଗୁନ୍ଥଇ, (୫) 'କ' ଦନ (୬) 'କ' ନରନ୍ତରେ ଅହର୍ନିଶ, (୭) 'କ' ସ୍ତବଇ, (୮) 'କ' ନାହିଁ, (୯) 'କ' ଏହାଙ୍କୁ (୧୦) 'କ' ଏ କଷ୍ଟ ଦଶାରେ, (୧୧) 'କ' ଧଇର୍ଯ୍ୟ (୧୨) 'ଖ' ଶଉର୍ଯ୍ୟ (୧୩) 'ଖ' ଲ୍ୱାଏ, (୧୪) 'କ' ଉପାସ୍ତ (୧୫) 'କ' ଉଦ୍‌ବେଗ, (୧୬) 'କ' ଧର୍ମକର୍ମାଦ, (୧୭) 'କ' ନାହିଁ (୧୮) 'କ' ସମସ୍ତ (୧୯) 'କ' ଯାଇ । (୨୦) 'କ' ଏକା କେବଳ ତୃଷ୍ଣାମାତ୍ରକ ତରୁଣ ହୋଇ ଥିବାକୁ ଥାଇ । (୨୧) 'କ' ହର ହର ଅନତ୍ୟରେ,(୨୨) 'କ' ବାଳୁତ, (୨୩) 'କ' ଫଗତେ, (୨୪) 'କ' ଆସକ୍ତ, (୨୫) 'କ' କୁସିଆର, (୨୬) 'କ' ଆପଣାହିଁ, (୨୭) 'କ' କାଳତ, (୨୮) 'କ' କାଳେତ (୨୯) 'କ' ପ୍ରାପ୍ତେକ (୩୦) 'କ' ପଦାରବନ୍ଦ, (୩୧) 'କ' ଚୈତନାମେ, (୩୨) 'କ' ସେହିକ୍ଷଣି (୩୩) 'ଖ' ଜନ୍ମମରଣ ନାହିଁ ।

Digitized by srujanika@gmail.com

ପରମେଶ୍ୱର ଝଣ୍ଡେନ୍ଦୁ ମଉଳ । ମୃତ୍ୟୁ ଦଶାର କଷ୍ଟ (୧) କହିବ ବୋଲି ପାଦପଦ୍ମେ ଦେଲ ତାହାର ନିଜ ମୌଳି (୨) । ସେ ଅଭିନବ ଚୈତନ୍ୟ ସୁମରଇ ହର (୩) । ତାହାର ମୁଖ କମଳ ଅଛି ଲୁଳି । ଗଣ୍ଡମୂଳୁଁ ସ୍ୱେଦଗଳି । ବଦନେ ପଡ଼ିଅଛି (୪) ଧୂଳି, ନୟନୁ ନୀର ଗଳି, ବେଦନା ହୃଦରେ (୫) ଜଳି । ଶରୀର ମଣୁଅଛି ସଳି । କାମଦେବଙ୍କୁ ଦେଉଅଛି ଗାଳି । ଥାରତେ ହେଉଅଛି ବିହ୍ୱଳି (୬) । ବିକଳେ ଅତ୍ୟନ୍ତ ଆକୁଳି, ଜୀବ ଯାଉଅଛି ଟଳି, କରପଦ୍ମ ଅଛି ଯୋଡ଼ି, ସାଷ୍ଟାଙ୍ଗେ (୭) ପ୍ରଣାମେ ପଡ଼ି । ମରଣ ଦୁଃଖ କହୁଅଛି ବାକୁଛି ହୋଇ ଅବନୀ ରେ (୮) ପଡ଼ି ।

ହେ ସ୍ୱାମୀ ! (୯) ଏ ଶରୀର (୧୦) ଜାଗ୍ରତ ମୋହନିଦ୍ରୁ (୧୧) କିଛୁ ଦିବସ ଥାଉଁ, ବଚନ ଭ୍ରଷ୍ଟ ହୋଇଛି (୧୨) କଥା କହୁଁ କହୁଁ । ଚେତନା ବୁଡ଼ଇ, ପ୍ରକୃତି ଆନ ଜ୍ଞାନ ବୁଡ଼ି ବିବର୍ଣ୍ଣ ଦିଶଇ ନୟନାଦି ସ୍ଥାନ । ଛିନ୍ନଯାମ(୧୩) ତାପ ପ୍ରାପ (୧୪), ଆଧିବ୍ୟାଧି, ଉର୍ମିଦାହ, ଜ୍ୱରଜଡ଼, ଶ୍ୱାସକାଶ, ପ୍ରଳାପତାପ, ଭ୍ରମଘାମ, ମୋହଶ୍ରମ, ଭେଦଭ୍ରାନ୍ତ (୧୫), ତୃଷାତର୍ଷା (୧୬) ଅଙ୍ଗଭଙ୍ଗ, ଶୀତପୀତ, କମ୍ପଧମ୍ପ (୧୭), ଜୀର୍ଣ୍ଣଶୀର୍ଣ୍ଣ, ଜନ୍ମ କର୍ମ ଅବର୍ଣ୍ଣାଦି (୧୮) ଇତ୍ୟାଦି କରି ସମସ୍ତ ଦୋଷ ଆସି ଆଶ୍ରେ କରନ୍ତି । ଦୁଷ୍ଟମାନଙ୍କ (୧୯) ଆହାରଙ୍କର ସମନ୍ଧରୁ ପ୍ରଥମେ (୨୦) ମହାବ୍ୟାଧିମାନେ ନାଭିମଣ୍ଡଳରୁ (୨୧) ସଞ୍ଚରନ୍ତି । ତେଣୁ ପବନମାନେ ହୁଅନ୍ତି ଅତ୍ୟନ୍ତ ସ୍ଥିର । ଶ୍ଳେଷ୍ମା ବ୍ୟାଧି ସମ୍ପୂର୍ଣ୍ଣ ହୋଇ ବ୍ୟାପଇ ଶରୀର । ତେଣୁ ପାଣିର ଉପରୁଁ ଅଗ୍ନି ପଳାଇ । ସୁଷୁମ୍ନା ନାଡ଼ୀକି ବୋଲି ପବନ ବଳାଇ ।

ମନପବନ ଅଗ୍ନି ଏ ତିନହେଁ ଏକ ମୁଖେ ପଦ୍ମସୂତ୍ର (୨୨) ସୁଷୁମ୍ନା ବାଟେ ପଶୁଥାନ୍ତି ଦୁଃଖେ ଦୁଃଖେ । ଅମୃତ କଳାମାନେ (୨୩) ପୋଡ଼ୁଥାନ୍ତି । ଷୋଡ଼ଶ ଉମ୍ବରୁ ଫେଡ଼ୁଥାନ୍ତି (୨୪) ସେ ଉମ୍ବରୁ ଖଣ୍ଡିଏ ଖଣ୍ଡିଏ ଫିଟୁଫିଟୁ ବ୍ୟାକୁଳ ଯେତେ, ଶତେ ନାଗର ଜ୍ୱାଳାନୋହିବଟି ତେତେ, ପ୍ରାଣ ପବନ କଣ୍ଠ ଦେଶକୁ ଧାଇଁ । ହାକୁଟି ଥାଇ ହୋଇ ଉଠଇ ଧାଇଁ । ଏକ ଏକ ଧାଇଁ ହୃଦସ୍ଥ ପଦ୍ମ ରୁନ୍ଧନ୍ତି । କି ତୀକ୍ଷ୍ଣ ବୁନ୍ତ ଯେହ୍ନ (୨୫) ଶରୀର ମନ୍ଥନ୍ତି । ବିଷମ ଶ୍ୱାସ ପ୍ରବଳେ (୨୬) କାଠିମାନେ ଭଙ୍ଗନ୍ତି (୨୭) । ନାଡ଼ିମାନେ ଗୁଡ଼ିଆଇ ହୋଇ ମୂର୍ଦ୍ଧନୀ ତରଳାନ୍ତି (୨୮) । ସେ ନାଡ଼ୀମାନଙ୍କର ବୁଲନ୍ତେ ସପ୍ତଧାତୁ ମରଇ । ଅନ୍ତ (୨୯)

---

(୧) 'କ' କଥା (୨) 'କ' ନେଇ ପଦାରବିନ୍ଦେ ସମର୍ପିଲ୍ଲ ମଉଳି, (୩) 'କ' ହର ହର, (୪) 'କ' ପଡ଼ିଛି(୫) 'କ' ହୃଦସ୍ଥରେ, (୬) 'କ' ବିଭଳି, (୭) 'କ' ସାଷ୍ଟାଙ୍ଗ, (୮)'କ' ଅବନୀ ପରେ, (୯) 'କ' ନାଥ, (୧୦) 'କ' ଗମ୍ଭୀର, (୧୧) 'କ' ମୁହୂର୍ତ୍ତି, (୧୨) 'କ' ହୋଇ, (୧୩) 'କ' ଛିନ୍ନଛାମ, (୧୪) 'କ' ପାପତାପ ଅଧିକା ଅଛି, (୧୫) 'କ' ଭେଦଖେଦ, (୧୬) 'କ' ତୃଷାକୃଶା, (୧୭) 'ଖ' କମ୍ପଧଙ୍ଗ, (୧୮) 'କ' ଅବର୍ଣ୍ଣାଦି ନାହିଁ, (୧୯) 'କ' ଦୁଷ୍ଟ (୨୦) 'କ' ପ୍ରଥମରେ, (୨୧) 'କ' ନାଭି-କମଳରେ, (୨୨) 'କ' ପଦ୍ମସୂତ୍ରେ (୨୩) 'କ' କଳାମାନ, (୨୪) 'କ' ଫିଟୁଥାନ୍ତି । (୨୫) 'କ' ଯେହ୍ନଣ (୨୬) 'କ' ପ୍ରବଳରେ (୨୭) 'କ' ଭାଜୁଥାନ୍ତି (୨୮) 'କ' ମୂର୍ଚ୍ଛନରେ ଲାଗୁଥାନ୍ତି, (୨୯) 'କ' ହସ୍ତୀ ।

Digitized by srujanika@gmail.com

ଭିତରେ ପଶି ଯେସନ୍ତେ ସିଂହ ବିଦାରଇ । ଶ୍ଳେଷ୍ମା ବ୍ୟାଧି କଣ୍ଠ ଦେଶରେ ବସି, ପରମ-ହଂସ (୧) ପର୍ଯ୍ୟନ୍ତେ ଆଇ ଗ୍ରାସି (୨) । ପବନ ବାଟମାନଙ୍କରେ ଜଳ ପୂରନ୍ତେ, ବ୍ୟାନ (୩) ପବନ ଊର୍ଦ୍ଧ୍ୱକୁ ଉଠଇ ଭ୍ରମନ୍ତେ । ବାଟ ନ ପାଇ ସନ୍ତୁ ପବନ ଆକୁଳ । ହର ହର, ମୂର୍ଚ୍ଛା (୪) ପଂଚିବା (୫) ପ୍ରାଣେ ଉଦ୍ଧିର (୬) ବ୍ୟାକୁଳ । ବାତପିତ୍ତ ଶ୍ଳେଷ୍ମା ଯେ ହୃଦସ୍ଥରେ ଜଡ଼ଇ (୭), ଯେ ଶରୀର ପ୍ରଳୟ ଜଳ ବ୍ୟାପୀ ପବନକୁ ଘଉଡ଼ଇ (୮) । ଯେ ଜୀବନ ପଳାଇ ଥାଇ (୯) ଏକା ମେରୁଦଣ୍ଡକୁ (୧୦) ଆଶ୍ରେ କରି । ତାହା ବୈଦ୍ୟ ବୈତାଳିକ ଇଛାମତେ ବୋଲନ୍ତି, ଛାଡ଼ିଅଛି ନାଡ଼ୀ (୧୧) ।

ଚଳେ ଚଳେ ପବନ ଛାଡ଼ିବାର ବେଳେ, ବ୍ରହ୍ମଅଗ୍ନିରେ ପଶିଲ ପ୍ରାଣେ ଜ୍ୱାଳା ସେ କାଳେ । ପ୍ରଳୟ ଅଗ୍ନି (୧୨) ସଙ୍ଗତେ, ପ୍ରାଣାଦି ପବନ (୧୩) ସମେତେ, ମନ ବୁଦ୍ଧି ଅହଙ୍କାର ଚଲେ, ବ୍ରହ୍ମରନ୍ଧ୍ର ବାଟେ, ଅତ୍ୟନ୍ତ ସଙ୍କଟେ, (୧୪) ଊର୍ଦ୍ଧ୍ୱଗତ ହୋଇ ପଶୁଥାନ୍ତି (୧୫) ।

ରକ୍ତଧାତୁମାନଙ୍କୁ ଶୋଷୁଥାନ୍ତି (୧୬) । ଡମ୍ବରୁମାନେ ଯେତେବେଳେ ଭେଦନ୍ତି (୧୭), ରସ ପଦ୍ମମାନେ (୧୮) ସେତେବେଳେ ତେଜନ୍ତି । ତଦନ୍ତରେ ଅଗ୍ନି ଯାଇ ଭ୍ରମର ଗୁମ୍ଫାରେ ପଶଇ । ତୁଣ୍ଡ ବିସ୍ତାର ଯେବେ, (୧୯) ଆଖି ଖୋସଇ (୨୦), ଘଟିକା ଦ୍ୱାରେ କବାଟ ପଡ଼ଇ । କଣ୍ଠ କପୋଳକୁ ଝାଳ ଚଳଇ । ସ୍ଥାନ ଆଦି ବନ୍ଧମାନ (୨୧) ଲେଉଟଇ । ହଂସ ଚୋଟରୁ ପାଣି ସରଇ । ତ ଭ୍ରମର ଗୁମ୍ଫାରୁ ଅଗ୍ନି ଚଳଇ । ତ୍ରିବେଣୀ ଘାଟରେ ପଡ଼ି ଝକଝକ ଜଳଇ । ଅଗ୍ନି ଉପରେ (୨୨) ଜୀବନ ଥାପଇ । ଶ୍ରୀ ହଟ୍ଟ ପାଟଣାରେ ଜୀବନ ପଳାଇ ପଶଇ । କେବଳ ଅନ୍ତର୍ଲୀନ ପ୍ରାଣଥାଇ କଣ୍ଠ ଦେଶର ସଙ୍ଗେ, ସାଡ଼ଙ୍ଗା (୨୩) କରିଥାଇ ସକଳ ଅଙ୍ଗେ । ଅଗ୍ନିଶିଖା ଯେବେ ଲାଗଇ ଶ୍ରୀହଟେ । ଜୀବନ ପଳାଉଥାଇ ସିସୁମୁନାର (୨୪) ବାଟେ । ଇଅଳା ପିଙ୍ଗଳା ଦୁଇ ଦ୍ୱାର ପଡ଼ଇ । ମଲା ବୋଲି ଲୋକ ତେତେବେଳେ ଲୋକଙ୍କୁ ଛାଡ଼ଇ । ଶିର ବୁଲଇ କମ୍ପାଇ ନୟନ । କାଉଁର (୨୫) ମଣ୍ଡଳେ ଯାଇ ଲାଗଇ ବନ୍ଧନ । ତେତେବେଳେ ଗନ୍ଧର୍ବ କଲା ଶରୀର (୨୬) ନଶଇ (୨୭) । ଯାତନା ଶରୀର ଆସି ଶୂନ୍ୟରେ (୨୮) ବସଇ । କୃତାନ୍ତର ଦୂତ ଧାଉଁକାରେ (୨୯) ମିଶଇ । କାଳଦଣ୍ଡ ପାଣି (୩୦)

(୧) 'କ' ବ୍ରହ୍ମ (୨) 'କ' ଆକୃତି (୩) 'କ' ପ୍ରାଣ (୪) 'କ' ମୂର୍ଚ୍ଛନା (୫) 'କ' ଫିଟିଲା (୬) 'କ' ଉଦ୍ଧିର (୭) 'କ' ଜଡ଼ (୮) 'କ' ପ୍ରଳୟ ପବନକୁ ଯେଣେ ଜୀବନକୁ ଘଉଡ଼ଇ, (୯) 'କ' ଯାଇ (୧୦) 'କ' ମେରୁଦଣ୍ଡାକୁ (୧୧) 'କ' ଏଥିକି ବଇଦ ଚକସ୍ରାଏ ବୋଲନ୍ତି ଛାଡ଼ିଅଛି ନାଡ଼ୀ । (୧୨) 'କ' ଅନଳ (୧୩) 'କ' ହବନ, (୧୪)'ଖ' ଅତ୍ୟନ୍ତ ସଙ୍କଟେ ନାହିଁ, (୧୫) 'ଖ' ପଶୁଥିବେ (୧୬) 'ଖ' ପୋଷୁଥିବେ (୧୭) 'କ'ଭେଦୁଥାନ୍ତି (୧୮) 'କ' ବୈଦ୍ୟମାନେ (୧୯) 'କ' ବିସ୍ତାର କରି (୨୦) 'କ' ଖୋଯାଇ (୨୧) 'ଖ' ବନ୍ଧମାନେ (୨୨) 'ଖ' ଅଗ୍ନି ଉପରେ (୨୩) 'କ' ଦାରଙ୍ଗା (୨୪) 'କ' ର ନାହିଁ (୨୫) 'ଖ' କାମସ୍ଥ (୨୬) 'କ' ପାର୍ଥିବ (୨୭) 'କ' ନାଶଇ (୨୮) 'କ' ଶୂନ୍ୟରେ (୨୯) 'ଖ' ଝାଉଁକାରେ (୩୦) 'କ' ପାଣି

Digitized by srujanika@gmail.com

ଲଗାଇ ଗ୍ରାସଇ (୧)। ପୁନଃପୁନଃ କରି ଦୁଃଖ ଦେଇ ପୀଡ଼ନ୍ତି । ପିଶାଚଗଣମାନେ ଆସି ଭୂଶତେ ବେଢ଼ନ୍ତି । ଧ୍ରୁବମଣ୍ଡଳେ ଯାଇ ଅଗ୍ନି ଲାଗଇ ଯେବେ, ପରମହଂସ ଉଡ଼ିବାକୁ ଲୋଡ଼ଇ ତେବେ । ନବଚନ୍ଦ ବୋଲି ପୋଡ଼ଇ ଅଗ୍ନି । ସଙ୍ଗତେ ଥାଇ ମନ ପବନ ବେନି (୨)। ସେ ତନେ ତନେ ଅଗ୍ନି ଲାଗିବାର ବେଳେ । ସେ ଦୁଃଖ ସହିବାକୁ ନାହିଁ କେ (୩) ତ୍ରୈଲୋକ୍ୟ ମଣ୍ଡଳେ । ତହୁଁ ଉତ୍ତାରେ ସେ ଜୀବନ ବେନେ ବେଗେ । ପଳାଇ ପଶଇ ସହସ୍ର ଦଳ କମଳ ଲାଗେ । ତହିଁ ତାପଲାଗଇ (୪) ଯେତେବେଳେ ପ୍ରଳୟ ପବନ (୫) ବଳେ । ସେଠାରୁ ଜୀବନ ପଳାଇ ଅତ୍ୟନ୍ତ ବ୍ୟାକୁଳେ ;

ତ ସେ କେହୁଣସି (୬) ଠାବରେ ଯହିଁ ନ ପାରଇ ରହି, ପୁନରପି ଚନ୍ଦ୍ର-ବିମ୍ବ ଭିତରେ ପଶଇ । ଅତ୍ୟନ୍ତ ଭୟ ପାଇ । ତହିଁ ଉପରେ ଆଉ ଯିବାକୁ ଠାବ ନାହିଁ । କାଳ ଗ୍ରାସିଲେ ଆଉ ଗ୍ରୁଡ଼ିଯିବ (୭) କାହିଁ । ସେଠାରୁ ଅଗ୍ନି ଉଠଇ (୮) ଯେବେ ଚମତ୍କାରେ, ପ୍ରାଣଚନ୍ଦ୍ରକୁ ଯାଇଁ ଛୁଅଇଁ ଧାଡ଼କାରେ (୯) । ଖସଇ ଇନ୍ଦୁ, ଝରଇ ବିନ୍ଦୁ (୧୦) ମରଇ ଜୀବ (୧୧) । ସୃଷ୍ଟି, ଶୂନ୍ୟ ଲିଙ୍ଗ ଶରୀର । ଏ ତିନି ପଦାର୍ଥର (୧୨) ନାନା ଅବସ୍ଥା ସଞ୍ଚରଇ । ଶୁଭାଶୁଭ କର୍ମବଳୁଁ କରି ଯଥୋଚିତ ଯୋନି ପାଇ । ଏଥୁ ପୁନରପି ଜନ୍ମ ପୁନରପି ମରଣ (୧୩) ପୁନରପି ଜନନୀ ଜଠରେ ଶୟନ । ଜରା ମରଣ । ଏ ତିନ ତ୍ରାସକ (୧୪) ହୋଇ କରୁଥିବ ଭ୍ରମଣ । ହେ ନାଥ ! ବୁଦ୍ଧିରଧନ୍ଦେ (୧୫), ତ୍ରିଗୁଣରେ ବନ୍ଧେ, (୧୬) ମନ୍ମଥର ଅନ୍ଧେ; ଅରି ଷଟଲଙ୍କର ବଳେ, ଜୀବାତ୍ମକର୍ମେ, ଜନ୍ମ ମରଣ ଭ୍ରମେ, ମମତା ପାଶେ, ଐଶ୍ବର୍ଯ୍ୟ ଆଶେ କ୍ରୀଡ଼ା ରସେ, ବନିତାର ବଶେ, ସଂକଳ୍ପ (୧୭) ଜାଳେ, ଦୁଷ୍ଟ ଚରିତ୍ର ବଳେ, ଅନ୍ତର୍ଗତର ଅଶୁଦ୍ଧେ, ଅନାସ୍ଥିତ ବନ୍ଧେ (୧୮) ବ୍ୟାପାର ଗୃହେ (୧୯), ତୃଷ୍ଣାର ସ୍ନେହେ, ଇନ୍ଦ୍ରିୟର (୨୦) ଲାଳନେ, ମନବୃତ୍ତିର (୨୧) ପାଳନେ, ପୁତ୍ର କଳତ୍ର ଧନଧାନ୍ୟେ, ଭ୍ରାନ୍ତିର ଅଜ୍ଞାନେ, ମାନାଭିମାନେ (୨୨), ଅବିଦ୍ୟା ମଳିନେ (୨୩), ମନ ବୁଦ୍ଧିର ଚଳନେ, ବାସନାର ମାର୍ଗେ, ଷଡ଼ଊର୍ମିର (୨୪) ସଙ୍ଗେ, ଅବସ୍ଥା ତ୍ରୟେ (୨୫), ବିଷୟ ଜଡ଼ (୨୬) ଆଶ୍ରୟେ (୨୭), ପୁତ୍ର କଳତ୍ରାଦି ଚିନ୍ତନେ, ଅହଙ୍କାର ଛନ୍ଦେ (୨୮), ପୁତ୍ର କଳତ୍ରାଦି ଧନ୍ଦେ,

---

(୧) 'କ' ଆଚ୍ଛାଦଇ (୨) 'ଖ' ଅଗ୍ନି (୩) 'ଖ' କେ ନାହିଁ । (୪) 'କ' ପ୍ରକାଶଇ (୫) 'କ' ପବନର (୬) 'କ' କେବଣ (୭) 'ଖ' ଛନ୍ଦେ ଯିବ (୮) 'କ' ଉଠଇ (୯) 'ଖ' ଝାଡ଼କାରେ (୧୦) (ଖ) ଅଧୋବିନ୍ଦୁ (୧୧) 'ଖ' ନାହିଁ (୧୨) 'କ' ପଦାର୍ଥ (୧୩) 'ଖ' ଭ୍ରମ (୧୪) 'କ' ତିନତ୍ରାସ (୧୫) 'କ' ରନ୍ଧ୍ରେ (୧୬) 'କ' ରେ ନାହିଁ (୧୭) 'ଖ' ସକଳ (୧୮) 'କ' ବୃତ୍ତିଏ (୧୯) 'ଖ' ରେ ନାହିଁ (୨୦) 'କ' ଇନ୍ଦ୍ରିୟମାନଙ୍କର (୨୧) 'କ' ମନବୃତ୍ତିଙ୍କର (୨୨) 'ଖ' ମନାକମାନେ (୨୩) 'ଖ' ଅବିଦ୍ୟାଧନ୍ଦେ । (୨୪) 'କ' ଷଡ଼ୁର୍ମିଙ୍କର (୨୫) 'ଖ' ଜୁଗତ୍ରୟେ (୨୬) 'ଖ' ଜଳ (୨୭) 'ଖ' ଆମତ୍ରୟେ (୨୮) 'କ' ଶରଣେ

Digitized by srujanika@gmail.com

ପୁରୁଷକାର ଅଗଜନେ, ଅହଙ୍କାର ଶରଣେ (୧), ବପଭି କାରଣ (୨) ଜଣ ନରକ ସମୁଦ୍ରେ ହେଠ ବୁଡ଼ (୩) ହେଉଥିବ । ସମସ୍ତ ଦୁଃଖମାନ ପାଉଥିବ (୪) । ସମସ୍ତ ଦୋଷମାନ (୫) ଅଦୋଷ ବୋଲି ସହୁଥିବ । ଯେମନ୍ତ ଆକାଶର (୬) ଅନ୍ତନାହିଁ, ଏ ଜନ୍ମ ମରଣ ଦୁଃଣ ହେ ପରମେଶ୍ୱର ସଶବ କାହିଁ ?

ହେ ନାଥ ! ତୋତେ (୭) ଆଶ୍ରେକର ନୋହିବ କମା ମୁକ୍ତି । ଏ କଥା ମହାପ୍ରଭୁଙ୍କର ହୋଇବ ଅଯୁକଥ (୮) । ସେ ଅଭିନବ ଚୈତନ୍ୟ ନାମେ ରୁଦ୍ରଗଣ ଏବଂ ଭୂତ ବଚନମାନ କହିଲି । ଅନେକ କାକୁସ୍ଥ ହୋଇଲି । କରପଦ ଯୋଡ଼ି ଜଗତ ଈଶ୍ୱର ଶ୍ରୀମୁଖକୁ ଗୃହିଁଲି । ପଞ୍ଚାଶ ବର୍ଣ୍ଣରେ ସ୍ତୁତି କରୁଅଛୁ । ଶିବ ସ୍ୱ ନମଃ. (୯) ଶିବ ଶିବ ଶିବ । ଜୟ ଜୟ କୁନ୍ଦ କୁମୁଦ କୁରଙ୍ଗଧର, (୧୦) ଦର୍ପୁ'ର (୧୧) ଧବଳ (୧୨), କମ୍ବୁ ସମକଣ୍ଠ । କୋକନଦ ମାଳା ଆଭରଣ । କର କଳିତ ବ୍ରହ୍ମ କପୋଲ୍ । କରପଦ ଯୋଡ଼ି (୧୩) କାକୋଦର କଙ୍କଣ (୧୪) କୁରଙ୍ଗ ଚର୍ମ କଟି (୧୫) ଶୋଭନ । କାଳାନଳ ନୟନ । କର୍ଣ୍ଣେ କୁଣ୍ଡଳ ମଣ୍ଡିତ । କୃଷ୍ଣବର୍ଣ୍ଣ ଭୁଜଙ୍ଗ ମକର (୧୬), କଣଧର (୧୭) କଳାନିଧିଧର । କଳାପ୍ରବୀଣ (୧୮) କଳକା ସେବିତ ଚରଣ ତଳ, କପିଳ କପିଳନନ (୧୯) କପିଳାସ କନ୍ଦର ନିବାସନ, କାମାଙ୍ଗ ନାଶନ, କୈବଲ୍ୟ ବରପ୍ରଦ, କୈବଲ୍ୟ ସ୍ୱରୂପ, କୁଧର ନନ୍ଦନୀ କୁଚ କୁମ୍ଭ କୁଙ୍କୁମ ଲେପନ (୨୦) । କର କମଳ କଳିତ (୨୧) କାମିନୀ କଦମ୍ବ ବନ୍ଦିତ, କୁଞ୍ଚିତା କୁଳ କଣ୍ଟକ, କାମାଙ୍ଗନା (୨୨) ହରଷ ଖଣ୍ଡନ (୨୩) କାଳନ୍ଦୀ କୁମୁଦ ବନ୍ଧୁ ମୁଖ ଚୁମ୍ବନ । କାର୍ତ୍ତିକେଶ୍ୱର ସେବିତ ଚରଣ ପଙ୍କଜ । କୁଣଧର କମଳା ପତି ବନ୍ଦିତ ଚରଣ । କଶ୍ୟପ କୁଳ କୁମୁଦ । କମଳ କଳାଧର । କଣ୍ଠିତ କୁଣ୍ଡଳ କୁଣ୍ଡଳ ଶୋଭିତ ଶିର । କୁରଙ୍ଗ କୁଠାର ଶୋଭିତ କର । କାମରୂପ ଧର । କାମପ୍ରଦ । କାମ କଳ୍ପଦ୍ରୁମ । କାମ ରୂପିଣୀ ପୀନ କଠିନ କୁଚ କଳଶ (୨୪) କଠୋର । କମଳକର ମର୍ଦ୍ଦିତ କଠୋର ହୃଦୟ । କରୁଣା କୂପାର କୁଣ୍ଡଳନୀ ଶକ୍ତି ଭେଦିତ । କାଳୀ ମୁଖ କକାରନ୍ତ୍ରେନ କଲ୍ପା କକଗଜିତ ପନ୍ତ୍ରା (୨୫) କଳିତ କମଳ କୋଷକର । କଳାନିଧି । କମଳ ନୟନ ଦିବ୍ୟ ସ୍ୱରୂପ । କୁଟିଳ

---

(୧) 'ଖ' ରେ ପୁଣ କଳଙ୍କାଦ ଠାରୁ ଅହଙ୍କାର ଶରଣେ ପର୍ଯ୍ୟନ୍ତ ନାହିଁ, (୨) 'ଖ' ମରଣ (୩) 'ଖ' ହେଠାମୁଣ୍ଡି (୪) 'ଖ' ସମସ୍ତ ଦୁଃଖ ପାଉଥିବ ନାହିଁ (୫) 'ଖ' ଦୋଷମାନ ନାହିଁ (୬) 'କ' ରେ ଆକାଶର ଯେମନ୍ତ (୭) । (୮) 'କ' ତୋହର ପାଦପଦ୍ମକୁ ଆଶ୍ରେ କଲ ମୁଁ ହୋଇବ ମୁକତ ଏ କଥା କ ମହାପ୍ରଭୁଙ୍କୁ ହୋଇବ ଯୁଗତ । (୯) 'ଖ' ଶିବାୟ ନମଃ ନାହିଁ (୧୦) 'କ' ଅଙ୍କିତ (୧୧) କର୍ପୁର 'ଖ' (୧୨) 'ଖ' କରକ କର ସମ ନାହିଁ (୧୩) 'କ'ରେ ନାହିଁ (୧୪) 'ଖ' କକଣୀ (୧୫) 'କ' କଲି, (୧୬) 'କ' ମକର କର, (୧୭) 'କ'ରେ ନାହିଁ (୧୮) 'କ' କଳା ଖର୍ବିତ (୧୯) 'କ' କପିଳାସନ । (୨୦) କୁଚ କୁମ୍ଭ ମନ୍ଦ ତ କର (୨୧) 'କ' କଳିତବର (୨୨) 'କ' କୋକାଙ୍ଗନା (୨୩) 'ଖ' ମଣ୍ଡଳ (୨୪) 'କ' ନରେଣ (୨୫) 'ଖ' ରେ ଅଧିକା କାଳୀ ମୁଖ ଠାରୁ ପନ୍ତ୍ରୀ ପର୍ଯ୍ୟନ୍ତ

Digitized by srujanika@gmail.com

ବର୍ଜିତ । କୁଟିଳ ଜଟାଜୁଟ ମଣ୍ଡିତ ଶିର । କାଞ୍ଚନ ଶୈଳ (୧) ବିଲସିତ । କାମାନ୍ଧ ରିପୁଗଣ (୨) ବିବର୍ଜିତ । କାମ୍ୟ (୩) କାମ୍ୟିକ ବିବର୍ଜିତ । କାମଧେନୁ କରୁଣା (୪) । କଳା କଳଙ୍କ କଳେବର । କମଠ ପୃଷ୍ଠ କଠୋର ଶୂଳଧର । କୁମାର (୫) ବରପ୍ରଦ । କୁମାର ଗଣ (୬) ପୂଜିତ । କାଳାନ୍ତକ । କାଳମୁଖ । କମଳାପତି ସେବିତ । କଳା (୭) ବିବର୍ଜିତ । କୃଷ୍ଣାମୂର୍ତ୍ତିକ ଦେବ (୮) ଜୟ ଜୟ ଶିବ ଶମ୍ଭୋ !

ଜୟ ଜୟ ଖଣ୍ଡ ଇନ୍ଦୁ ମୁକୁଟ (୯) ଖମଣ୍ଡଳ ଗତି (୧୦) । ଖଟ୍ୱାଙ୍ଗଧର (୧୧) ଖଣ୍ଡ ପରଶୁଧର । ଖାଦ ଖାତାତ ସୁହୃଦାକୃତ । ଖଗପତି ଆସନ ସୁହୃଦ । ଖଚରଧାରୀ । ଖସ୍ୱାନ୍ତକ । ଖଳିତ ନୟନ । ଖପର ଧାରିଣୀ ରମଣ (୧୨) ଖାନ୍ତକ ମୁଖ । ଖଗପତି ଆସନ ସୁହୃଦ (୧୩) ଜୟ ଜୟ ଶିବ ଶମ୍ଭୋ । ଜୟଜୟ ଗଗନ ଗତି (୧୪) । ଗଗନାନ୍ତକ । ଗଗନ ଶରୀର । ଗଗନ ତନୁ (୧୫) ସମ୍ଭୂତ । ଗଗନ ସମାନ (୧୬) ରୂପଧର । ଗଙ୍ଗାଶେଖର । ଗିରିଜାର୍ଦ୍ଧ ଶରୀର । ଗିରି ନିବାସନ (୧୭) । ଗୋବର ପ୍ରଦ । ଗୋଲହାଟ ମଣ୍ଡଳଗତ । ଗୋକର୍ଣ୍ଣ ଗଣ ଅଳକ (୧୮) ମଣ୍ଡନ । ଗୁଣାତୀତ ଗଣପତି ପିତର । ଗୁହାଶୟ । ଗରଳ କଣ୍ଠ । ଗୋଧର । ଗୋମୟ ଭସ୍ମଚୂର୍ଣ୍ଣ ଲେପିତ ଗାତ୍ର (୧୯) । ଗୋନାଥ । ଗୋପାଳକ (୨୦) । ଗାୟତ୍ରୀ ଗାୟନ ଗ୍ୟାନ (୨୧) ଚକ୍ଷୁ । ଗୋଆସନ । ଗୋ ଗଣ୍ଡସ୍ଥଳ କର ମଣ୍ଡିତ (୨୨) । ଗୋପ୍ୟ ଗୋପତି (୨୩) । ଗଙ୍ଗାପତି ଗମନ । ଗମ୍ଭୀର ଗମନ । ଜ୍ଞାନ ପରାୟଣ । ଜୟ ଜୟ ଘଣ୍ଟାରବ ଶବ୍ଦାନ୍ତକ ସୂକ୍ଷ୍ମ । ଘୋରାନନ ଘନ ଘୋଷଣ ପିନାକୀ (୨୪) ଘୃଣ କର୍ଷଣ । ଘୂର୍ଣ୍ଣିତ ନୟନ । ଘଞ୍ଚଦଳ ସହସ୍ର ଦଳେଶ (୨୫) ସଦନ । ଜୟ ଜୟ ନିର୍ମଳ ନିତ୍ୟ (୨୬) ନିବିଡ଼ ନିର୍ବିଶେଷ । ନିରାମୟ, ନିର୍ଗୁଣ ନିଶ୍ଚଳ ଇନ୍ଦ୍ରିୟ (୨୭) ଞଳିନ ନୟନ (୨୮) । ନାନ୍ତ ନିର୍ମଳ, ନିଷ୍ଟ୍ର ପଞ୍ଚ ଶରୀର । ନଗ ନଳିନ ନାଭି ବନ୍ଦିତ (୨୯) ଞରଜ ଚରଣ । ନାଗ (୩୦) କନ୍ୟାସ୍ତନ ମର୍ଦ୍ଦନ କର ପଙ୍କଜ । ନୀଳୋତ୍ପଳ ଦ୍ୟୁତି, ନୀଳକଣ୍ଠ, ନୀଳାଚଳ ପତି ଆସନ । ଜୟ ଜୟ ଚନ୍ଦ୍ରଚୂଡ଼ ଲଳିତ । ଚଞ୍ଚଳା ପତି ଚରଣ ପୂଜିତ । ଚାମୀକର ସମବ୍ରୁ ଗାତ୍ର । ଚଇତନ୍ୟ ସ୍ୱରୂପ । ଚେତସାଚମ୍ୟ (୩୧) । ଚିତ୍ତ ସାନନ୍ଦ ଲକ୍ଷଣ । ଚନ୍ଦ୍ରାତୀତ ସତ୍ୟ

---

(୧) କାଞ୍ଚନ ଚଳ (୨) 'ଖ' ବରଣ (୩) 'ଖ' ନାସ୍ତେ (୪) 'ଖ' 'ଜଳ କଳିତ' କଳେବର ନାହିଁ, 'କ' କାରୁଣ୍ୟ (୫) 'କ' କୁମାର (୬) 'କ' କ୍ଷଣ (୭) 'କ' କାଳ (୮) 'କ' ଦେବ ନାହିଁ (୯) 'ଖ' ନ୍ଦ (୧୦) 'କ' ଖଣ୍ଡ ମଣ୍ଡଳଗତି (୧୧) 'ଖ' କର (୧୨) ଖ' ଧାରଣ (୧୩) 'ଖ' ନାହିଁ (୧୪) 'ଖ' ଗତ, (୧୫) 'ଖ' ତନ୍ତୁ (୧୬) 'ଖ' ମନ୍ତ୍ରିତ (୧୭) 'ଖ' ନିବାସକ (୧୮) 'ଖ' [illegible] (୧୯) 'ଖ' ନାହିଁ (୨୦) 'ଖ' ଗୋପାଳନ (୨୧) 'କ' ଗ୍ୟାନ (୨୨) 'କ' ମଣ୍ଡିତ କର (୨୩) 'କ' ଗୋପ୍ୟ ଗୋପ (୨୪) 'କ' ଘନ ଘୋଷଣ ପିନାକ (୨୫) 'କ' ସହସ୍ରାର ବନ୍ଧ (୨୬) 'କ' ନିତ୍ୟାନନ୍ଦ (୨୭) 'କ' ନିରିନ୍ଦ୍ରିୟ (୨୮) 'କ' ନୀଳ ନଳିନ ନୟନ (୨୯) 'କ' ବନ୍ଦିତ (୩୦) 'କ' ନାଗ (୩୧) 'କ' ଚୈତନ୍ୟାସାମ୍ୟ ।

Digitized by srujanika@gmail.com

ସ୍ୱରୂପ । ଚଳାଞ୍ଚଳ (୧) ବିସ୍ତାର । ଚକ୍ରଧର ଚକ୍ରିତ (୨) ଚରଣ । ଚନ୍ଦ୍ର ବଦନୀ ଚୁମ୍ବନାଧର । ଚୂର୍ଣ୍ଣ କୁନ୍ତଳ ଲେଖନୀ କର । ଚକ୍ର ପଦ୍ମ ଲେଖା ବକ୍ଷଗତ କୁଚ କୁମ୍ଭୀ କୁମ୍ଭ ସମାଗମ । ଚୂତ ଶାୟକ ନାଶକର । ଚାପ-ଚକ୍ରିତ (୩) ଭ୍ରୂଲତା । ଚମଞ୍ଚ ଚକ୍ଷୁ ବାମାଲିଙ୍ଗିତା । ଚତୁର୍ଥ ଚନ୍ଦ୍ର ଶେଖର ନିତମ୍ବାଶ୍ରିତା । ଚତୁର୍ଦ୍ଦଶ ଲୋକ ପିତା । ଚନ୍ଦ୍ର ଚଣ୍ଡକରାଗ୍ନି ଅବଲୋକିତା । ଚତୁଃଷଷ୍ଟି ଯୋଗିନୀ ମୁଖ ଚୁମ୍ବିତା । ଚଣ୍ଡିକା ମୁଖଚନ୍ଦ୍ର ଚକ୍ରବାକ । ଜୟ ଜୟ ଛିଦ୍ରଧର (୪) ଅନନ୍ତ ଫଣି ଚନ୍ଦ୍ର ସମ ଧବଳ । ଛଳନ୍ତ ସକଳ ଚରାଚର । ଛନ୍ଦ ମାୟାତ୍ମକ ବିଶ୍ୱ ବିସର୍ଜନ (୫) ଛାୟାସମ ମାୟାଭ୍ରମ ଛରଣ (୬) ଜଗତ ।

ଜୟ ଜୟ ଜଗନ୍ନାଥ ଜଗତ ଶରଣ । ଜନମ ଜଠର ନିବାରଣ । ଯମଭଗ୍ନୀ ଯମୁନା ସମାନ । ଜଟାଜୁଟ ମଣ୍ଡନ । ଯଜ୍ଞ କନ୍ୟା ଶୋଭନ । ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଅବସ୍ଥାତ୍ରୟ ମୋକ୍ଷଣ । ଜଗତ ପରିପାଳନ । ଜଗତ ଜନ୍ତୁ ସମ । ଜଗତ ଜନରକ୍ଷଣ । ତ୍ରିଲୋକ୍ୟ କାରଣ । ଜଗତ ପଞ୍ଚନବ ଚେତନ । ଜାଜ୍ୱଲ୍ୟମାନ । ଜ୍ୱଳନସମ ପ୍ରଖର ତେଜ । ଜଙ୍ଗମ ଗଣେଶ୍ୱର । ଜନ୍ମପନ୍ଥ ଭୟ ନିବାରଣ । ଜମ୍ବୁଦ୍ୱୀପ ଜଗତ ପରି ପାଳନ । ଜଳଧି ନନ୍ଦନୀ ପତି ଜୀବନ । ଯଶଃ (୭) ଶାସନ । ଜଗତ ହର୍ତ୍ତା । ଜଗତ କର୍ତ୍ତା (୮) ।ଜଗତଜନ ପ୍ରଳୟ କାରଣ । ଜଡ଼ ତିମିର ନାଶନ (୯) । ଜୟ ଜୟ ଝଗଡ଼ ଭବ ନାଶନ । ଝସ କେତନ ଦହନ । ଝମଣ୍ଡଳ ଭକ୍ତଯୋଗ ଜନ । ଝାଡକାରେ ନିସ୍ତାରଣ । ଝରିତ ତ୍ରିପଥଗା ଶିର ଧାରଣ (୧୦) । ଜୟ ଜୟ ନରକ ଉଦ୍ଧାରଣ । ନିତ୍ୟ ସେବନ । ନିଶାକର ବଦନ । ନାମ ସୁମରଣ ପାପ ବିମୋଚନ । ନିଗମସ୍ଥ ଗୁଣ ଜ୍ଞାନ । ନନ୍ଦ ନନ୍ଦନ ପୂଜା ଗ୍ରହଣ । ନିଶ୍ଚିତ ସହଜାନନ୍ଦ । ନବ ପଞ୍ଚଜନ ଆତ୍ମନ ଜୀବନ । ନାଶ କର ତାପ ବିମୋଚନ ନିର୍ମଳ ଗୁଣ ଗାୟନ ପରାୟଣ । ନୃତ୍ୟାରୋପଣ (୧୧) । ନାଗାଭରଣ (୧୨) । ଜୟ ଜୟ ଟଳ ଟଳ ମହାବଳ । ମହାରସ ସ୍ତମ୍ଭନ କରଣ । ଟଳ ଟଳ ତ୍ରି ଜଗତ ପାଣ୍ଡବ ଆରୋପଣ । ଟୋପରଚନ । ଟିକ (୧୩) । ପାଣ୍ଡବ ରକ୍ଷଣ । ଜୟ ଜୟ ଠିକ ଅମରାଧି ଅମର । ଠଣପାଙ୍କଣ ପ୍ରାଣେଶ୍ୱର । ଠାବ ଠାବ ବିବର୍ଜିତ । ଠୂଳଶୂନ୍ୟ ରହିତ । ଠକ ଧୂର୍ତ୍ତ ଠାବ ଦେଶ ବ୍ରହ୍ମାଣ୍ଡ (୧୪) ଉଦର ସ୍ଥିତ । ଠିକ ଜଳଧିପତି ରୂପ କୂପେ ଠାବ । ଠୂଣୀକା କାମ ପ୍ରସିଦ୍ଧ (୧୫)

ଜୟ ଜୟ ଡମ୍ବରୁ ଆଡ଼ମ୍ବର । ଡରତ ଚତୁର୍ଦ୍ଦଶ ଭୁବନ । ଡମ୍ବାକାର ବ୍ରହ୍ମାଣ୍ଡ କରଣ । ଡାହପାଂନ୍ତ କମଳ ନିବାସ । ଡାଡ଼ମ୍ବ ଜଗତ ଭୂତ । ଡାକିନୀ ଗଣ ସେବିତ ଜୟ ଜୟ ଢମପଣ ଦର୍ପ ଗଞ୍ଜନ । ଢାଳେ ଦନୁଜଗଣ ନିସୂଦନ ।

---

(୧) 'କ' ଚଳାଚଳ (୨) 'ଖ' ଚକ୍ରୀ (୩) 'କ' ଗଳିତ (୪) 'କ' ଛତ୍ରଧର ଦ୍ୱମ (୫) 'ଖ' ସୁଷ୍ଟଜନ (୬) 'କ, ଛରଣ ।
(୭) 'କ' ଯଶଃ ଜନ (୮) 'କ' ରେ ନାହିଁ(୯) 'ଖ' ରେ ଅଛି (୧୦) 'କ' କରଣ (୧୧) 'କ' ନୃତ୍ୟାରୋପଣ (୧୨) 'ଖ' ଅଧିକା ନିଶ୍ଚିତ ସହଜାନନ୍ଦ (୧୩) 'ଖ' ଟାଙ୍କ (୧୪) ବ୍ରାହ୍ମଣ (୧୫) 'କ' କାଶ ପ୍ରସିଦ୍ଧ ।

Digitized by srujanika@gmail.com

ଛଳଛଳ (୧) ପଞ୍ଚ ବଦନ (୨) ଶୋଭନ । ଝଳ ଝଳିତ ନିର୍ମଳ ଗଙ୍ଗାକଲ୍ଲୋଳ ଧାର ଗ୍ରହଣ । ଜୟ ଜୟ ଅଣଅକ୍ଷର ଅବଧୂତ । ଅଣ ଅପ୍ରାଧି ଭୂତ ରକ୍ଷଣ । ଅଣିମାଦ୍ୟ ଐଶ୍ୱର୍ଯ୍ୟ ଦାୟକ । ଅଣବୃଣ କୋଟି ମେଦନୀ ନାୟକ । ଅଣ ଷୋଭିତ ସୁରଭି ସୁତ ବାହନ (୩) । ଅଣୁ ଅଗ୍ନି କୃତ (୪) ଅଣକ୍ଷ ପଞ୍ଚ କୁସୁମ ଶାୟକ । ଅଣଖେ ଅନ୍ଧକା ସୁର ନାଶକ । ଅଣଜାତ ସ୍ୱରୂପ । ଅଣାକୃତ ସ୍ୱରୂପ (୫) ଅଣବୃନ୍ଦ ପବନ କର୍ମ ଆହାର । ଅନଙ୍ଗ ଜୟଶର ଅନିର୍ବାରଣ ମୋକ୍ଷ କରଣ । ଜୟ ଜୟ ତ୍ରିଭୁବନ ନାୟକ ତ୍ରିଲୋଚନ । ତ୍ରିବିଧ ତାପ ବିମୋଚନ । ତ୍ରୈଲୋକ୍ୟେଶ୍ୱର । ତ୍ରିଶୂଳଧର । ତଳ ପ୍ରମାଣେ ପଞ୍ଚାଶ କୋଟି ମେଦିନୀ ବିସ୍ତାର ମୁକୁଟ ଶେଖର ସ୍ଥିତ । ବାସୁକୀ ନାଗ କଙ୍କଣ କରଣ ଭୁଜ (୬) ତ୍ରି ସନ୍ଧ୍ୟାନାଚ । ତ୍ରିକାଳଜ୍ଞ । ତ୍ରିକାଳ କୃତ (୭) ତ୍ରିକାଳ କୃତ ସାତ୍ୱିକ । ତ୍ରିଲପା ଶୋଭିତ । ତ୍ରିକାଳ ଜିତ । ତ୍ରିକାଳଧୃତ । ତୃତୀୟ କମଳିନୀ ଲୁନ୍ଧକ (୮) । ସ୍ତ୍ରୀ ଅର୍ଦ୍ଧାଙ୍ଗିକ । ତ୍ରିଭୁବନୈକଦ୍ୱାର ତ୍ରୈଲୋକ୍ୟ ନାୟକ (୯) । ତ୍ରିକୋଣାଗ୍ନି ସନ୍ଦୀପନ । ତ୍ରୈଲୋକ୍ୟ ଆମୂନ । ତ୍ରିଗୁଣମୟ । ତ୍ରିଗୁଣାତୀତ (୧୦) । ତ୍ରିଗୁଣାଧର । ତ୍ରୈଲୋକ୍ୟ ତ୍ରିକଳାନ୍ତକ (୧୧) । ତ୍ରିଲିଙ୍ଗାଶ୍ରୟ । ତ୍ରିଶିର ଭୁଜଙ୍ଗଧର । ତ୍ରିଲୋକ ଜନ ପୂଜିତ । ତ୍ରୈଲୋକ୍ୟ ସାଗରାଦି ତୃଣ ପର୍ଯ୍ୟନ୍ତେ ବ୍ୟାପକ । ତ୍ରିପୁରାନ୍ତକ । ତ୍ରିପୁର ଶତ୍ରୁ (୧୨) । ସୀମନ୍ତିନୀ ବୃନ୍ଦ ସିନ୍ଦୂର ସୀମନ୍ତମଣି ସନ୍ଧାୟୁଣ ମାନାଦ୍ୟ (୧୩) ନାଶନ ଉଦ୍ଧାମଧାମାଧିପ । ତ୍ରିମନ୍ଥନ (୧୪) ବିଧ୍ୱଂସନ । ତ୍ରିଲକ୍ଷ (୧୫) ତରୁଣ ସୁଧାକର ଶେଖର । ଜୟ ଜୟ ସ୍ଥୂଳ ଶୂନ୍ୟ ବିବର୍ଜିତ । ଥାବର ଜଙ୍ଗମ କୀଟପତଙ୍ଗାଦି ସମ୍ଭୂତ । ସ୍ଥଳକମଳ ସମ କୋମଳ ଶରୀର । ସ୍ଥାବରେନ୍ଦ୍ର ନନ୍ଦିନୀ ସ୍ତନଯୁଗ୍ମ ଆଳିଙ୍ଗନେ ଘୃଷିତ (୧୬) ନେତ୍ର ପଦ୍ମ । ସ୍ଥବିର ଯୋଗାଶ୍ରୟ । ସ୍ଥଳି, ଜଳ, ଅନଳ, ଗଗନ, ପବନ ମୟ । ସ୍ତମ୍ଭନ, ମୋହନ, ଗୁଟିକ (୧୭), ଅଞ୍ଜନ, ପାଦୁକ, ଲେପନ, ଅଷ୍ଟଧାତୁ କରଣ ।

ଜୟ ଜୟ ଦଣ୍ଡପାଣି ଦଣ୍ଡ ଉତ୍ପାଟକ (୧୮) । ଦୁଷ୍ଟ କରାଳ (୧୯) କାଳଗଣେ ବେଷ୍ଟିତ । ଦାରୁଣ ତମିର ଘନ ପଟଳ (୨୦) ଦାବାନଳ । ଦନ୍ତୀମୁଖ ସେବନ ଦଶ ପବନ ବ୍ରହ୍ମାରନ୍ଧ୍ର ରୋପଣ । ଦଶଦିଗାମ୍ବର । ଦଶମ (୨୧) ସମ୍ପୂର୍ଣ୍ଣ । ଦେବଗଣ ଦଳନ । ଦକ୍ଷାଧ୍ୱର ଧ୍ୱଂସନ । ଦଇତ ନିସୂଦନ । ଦେବ ଦେବେଶ୍ୱର । ଦେବକୀ ସୁତ ବନ୍ଦିତ । ଦରଶନେ (୨୨) ନିର୍ବାଣ ଦାୟକ । ଦଇତା ଦଇତ ବିବର୍ଜିତ । ଦୀର୍ଘ ସ୍ୱପାପହାରକ (୨୩) । ଦକ୍ଷ ଯଜ୍ଞାନ୍ତକ ଦୃଶ୍ୟାଦୃଶ୍ୟ ବିବର୍ଜିତ । ଦୁର୍ଦ୍ଦଣ୍ଡ ଭୁଜଦଣ୍ଡ ।

---

(୧) 'କ' ଝଳିତ (୨) 'କ' ପଞ୍ଚବଦନ (୩) 'ଖ' ସୁବାହକ (୪) 'କ' ନାହିଁ (୫) 'ଖ' ରେ ନାହିଁ (୬) 'କ' ରେ ବାସୁକୀ ଠାରୁ ଭୁଜ ପର୍ଯ୍ୟନ୍ତ ନାହିଁ (୭) 'ଖ' ରେ କୃତ ନାହିଁ (୮) 'କ' ରେ ଧନ (୯) 'କ' ନାଥ (୧୦) 'କ' ନାହିଁ (୧୧) 'କ' ନାହିଁ (୧୨) 'ଖ' ଉଗ୍ର (୧୩) 'କ' ନାହିଁ (୧୪)'କ' ତ୍ରିମଥନ (୧୫) 'କ' ନାହିଁ (୧୬) 'କ' ଘୂର୍ଣ୍ଣିତ (୧୭) 'କ' ଗୋଟିକ (୧୮) 'କ' ଉତ୍ପାଟନ (୧୯) ଦଂଷ୍ଟ୍ରାକରାଳ (୨୦) 'କ' ତମର ଘନ ପଟଳ (୨୧) 'କ' ଦଶସମ (୨୨) 'ଖ' ଦର୍ଶନ (୨୩)'କ'ସ୍ୱପ୍ନାପହାରକ

Digitized by srujanika@gmail.com

ଦୁର୍ଜସ୍ୱଦୈତ୍ୟଗଣ ନାଶନ । ଦୈତ୍ୟ ବଳ ଦର୍ପହରଣ (୧) । ଦବାକରଣ (୨) ଦହନ ଦବାକର ଶଶିନେଶ । ଦକ୍ଷାଧ୍ୱର ବଧ୍ୱଂସନ (୩) । ଦାସଜନ (୪) ଦୁଃଖ ହାରଣ ଦୁର୍ଲଭ ପୁରୁଷ । ଦାମୋଦର ପ୍ରିୟ । ଦୁଷ୍ଟ ଦୁର୍ବାସନା । ଦାମ ଛେଦନ । ଦଶଦଳ କମଳ (୫) କୋଷଗତ । ଦ୍ୱାଦଶାଦତ୍ୟ ତେଜ । ଦସ୍ୟାକ୍ରୁଁ ଚନ୍ଦ୍ର । ଦୈତ୍ୟେନ୍ଦ୍ର ବରପ୍ରଦ । ଦାରୁଣ ଶତ୍ରୁ ନସୂଦନ । ଦ୍ୱିଦଳ କମଳ ନବାସ । ଦ୍ୱାଦଶ ପଦ୍ମ ଦାମ ଶଙ୍କର । ଦରଷ୍ଟ୍ରୁ ଟ କମଳାସନ । ଦୁର୍ଗାମୁଖ ମଣ୍ଡଳ ମଣ୍ଡିତ ଗଣ୍ଡସ୍ଥଳ । କୁଣ୍ଡଳୀ କୁଣ୍ଡଳ । ଦଣ୍ଡକର ଖଣ୍ଡିତ କରଦଣ୍ଡ । ଦଣ୍ଡିତ ଦୈତ୍ୟ । ହୃଦସ୍ୱାକ୍ରିମଘବାନ (୬) । ଦାସବତ୍ସଳ । ଦନୁଜ କୁଳ ବଦାରଣ । ଦୁର୍ଗମ ତମିର କୂଳ ଦବସେଶ୍ୱର (୭) । ଦଶେଶ୍ୱର । ଦାଶଦ୍ର ତମିର ପଟଳ ମୋଚନେ ଚଣ୍ଡାଂଶୁ କରଣ । ଦସ୍ୟାନବାଚନ । ଦୁର୍ନସ୍ଥ ଖାର ବାକ୍ୟ ବାରଣ । ଦୀନ ନବାସନ । ଦୁର୍ଣ୍ଣିବାରଣ ଦାରଣ ।

ଜୟ ଜୟ ଧ୍ୟାନ ପୂର୍ଣ୍ଣ । ଧ୍ୟାନ ଧାରଣ । ଧ୍ୟାନ କାରଣ । ଧ୍ୟାନ ପର୍ବୂଷଣ । ଧ୍ୟାନ ପାରଗତ ଧ୍ୟାନାଦଗମ୍ୟ । ଧ୍ୟାନ ପିଧାନ । ଧ୍ୟାନ ନଧାନ । ଧ୍ୟାନ ଭୂତ । ଧ୍ୟାନାଶ୍ରିତ । ଧ୍ୟାନ କୃତ । ଧ୍ୟାନ ଧୃତ (୮) ଧ୍ୟାନ ସ୍ୱରୂପ । ଧ୍ୟାନ ବଲକ୍ଷଣ (୯) ଧ୍ୟାନମୟ । ଧ୍ୟାନ ଶଙ୍କର । ଧ୍ୟାନ ବ୍ୟାପକ । ଧ୍ୟାନାତ୍ମକ (୧୦) । ଧରଣୀଧର । ଧରଣୀ ଧର ବତ୍ସଳ (୧୧) ଧରଣୀ ଧୃତ ପଶପାଳକ (୧୨) । ଧରଣୀ ବର । ଧରଣୀ ଶଙ୍କର । ଧରଣୀଧର ନନ୍ଦନୀ ଅଧର ମଧୁ ଆସ୍ୱାଦନେ ଷଟ୍‌ପଦ (୧୩) । ଧୂର୍ତ୍ତ୍ୟାମୂକ (୧୪) । ଧୃତ୍ୟାଦ ମସ୍ତୁଷ୍ଟି ବ୍ୟାପକ । ଧୃତ ସ୍ୱରୂପ ଧରଣୀ ଧର ଧାରଣ । ଧୈର୍ଯ୍ୟମାନ । ଧୂମ ସଂକାଶ ପାଣ୍ଡୁର । ଧୂଳି ଧୂସର । ଧରାଧର (୧୫) ପତ ଶତ୍ରୁ ସୂଦନ । ଧୂମକେତୁ । ଧୀରଜନ ପାଳନ । ଧୈର୍ଯ୍ୟ ଧୀର (୧୬) ଧରଣୀ ଅଶେଷ ଜନ ପାଳନ । ଧୀରଧୀ ପ୍ରତବନ୍ଧତ । ଧୀରଧୀସଦନ । ଧୀରଧୀଗମ୍ୟ (୧୭) । ଧୀର ଧୀଶ୍ୱର (୧୮) । ଧୀରଧୀ ବୋଧ ସ୍ୱରୂପ । ଧୀରଧୀ ନର୍ମଳ କରଣ । ଧୀରଧୀ ପ୍ରଦୀପ । ଧୀରଧୀ ଚଳନ କୃତ । ଧୀରଧୀମୟ । ଧୀରଧୀ ନବାସ । ଧୀରଧୀ ସଚେତନ । (୧୯) କରଣ । ଧୀରଧୀ ଧ୍ୟାନ ଗମ୍ୟ । ଧବଳ ସ୍ୱରୂପ । ଧବଳ ବୃଷ (୨୦) ବାହନ । ଧବଳ ଗଙ୍ଗ ଶେଖର । ଧବଳ ଆକାଶ (୨୧) ଧବଳ (୨୨) ନଧାନ । ଧବଳ ପରମହଂସ । ଧ୍ୟାନ ଧାରଣ ସମାଗମ୍ୟ ଧ୍ୟାନାଧୀଶ (୨୩) ଧ୍ୟାନଧୀମଣ୍ଡଳ ମଣ୍ଡନ (୨୪) ।

---

(୧) 'କ' ନଗ୍ରକରଣ (୨) 'କ' ରେ ନାହିଁ (୩) 'ଖ' ରେ ନାହିଁ (୪) 'କ' ରେ ଦାସ ପଣ (୫) 'କ' ପବନ (୬) 'କ' ରେ ଦସ୍ୟାଦ୍ରହୃଦସ୍ୟ (୭) 'ଖ' ବଜସ୍ୱେଶ୍ୱର (୮) 'ଖ' ଧୃକ୍ (୯) 'କ' ଧ୍ୟାନ ଲକ୍ଷଣ (୧୦) 'କ' ଧ୍ୟାନାତ୍ମକ (୧୧) 'କ' ବସନ (୧୨) 'ଖ' ପର ପାଳନ (୧୩) 'କ' ଅଷ୍ଟ ପଦ (୧୪) 'ଖ' ରେ ଧରଣୀ ଆମ୍ବିକ । ଧରଣୀ ଆଦ ମହୀ ଭୂବ୍ୟାପକ । ଧରଣୀ ଧର ଧାରଣ ନାହିଁ, (୧୫) 'ଖ' ଧରାଧର (୧୬) ଧଇର୍ଯ୍ୟ ଧୀର (୧୭) 'କ' ନାଥ (୧୮) 'ଖ' ଶଙ୍କର (୧୯) 'ଡ' ସଂଙ୍କେତ, (୨୦) 'କ' ବୃକ୍ଷ, (୨୧) 'କ' ପ୍ରକାଶ, (୨୨) 'ଖ' କମଳ, (୨୩) 'ଖ' ଧ୍ୟାନପଇପ, (୨୪) 'କ' ରେ ନାହିଁ,

Digitized by srujanika@gmail.com

ଧୀର ଧୈର୍ଯ୍ୟ ଶୁଦ୍ଧ ଚଇତନ୍ୟ । ଧୃତାନ୍ଧକାର (୧) ବିଖଣ୍ଡନ । ଧଇର୍ଯ୍ୟ ସ୍ୱରୂପ । ଧୃତ ଧବଳଚନ୍ଦ୍ର ଲଳାଟ । ଧଇର୍ଯ୍ୟ ଶରୀର । ଧର୍ମ ସଂସ୍ଥାପନ (୨) । ଧର୍ମମୟ । ଧର୍ମଜ୍ଞ (୩) ଧର୍ମ ମୂର୍ତ୍ତି । ଧର୍ମ ସଂଜ୍ଞାବନ (୪) । ଧର୍ମ ପରାୟଣ । ଧ୍ରୁବ ମଣ୍ଡଳ ଧାରଣ । ଧର୍ମାଧର୍ମ ବିବର୍ଜିତ ।

ଜୟ ଜୟ ନବ ନୀରଦ ଦଳ ନୟନ । ନାନ୍ତନାଦନ ମଧ୍ୟ ନୟନ ମନ ବୁଦ୍ଧି ଅଗୋଚର (୫) । ନରପତି, ନାଗପତି, ନାକ ପତି, ନଳିନୀ ପତି, ନନ୍ଦ୍ୟାଦପତି (୬). ନୟନପତି, ନନ୍ଦନନ୍ଦନ ଗତି (୭), ନିଧିପତି, ନକ୍ଷତ୍ରପତି । ନିଶାଚର ପତି । ନିର୍ବାଣପତି । ନୀଳାଚଳ ପତି ଚନ୍ଦ୍ରିତ ପଦଦ୍ୱୟ । ନାଞ୍ଚରନ୍ତ ନିସୋଧନ (୮) । ନବଧା ପ୍ରକାର ଜଗତ କୃତ । ଜୟ ଜୟ ପରମ ପୁରୁଷ । ପରମ ପାରଙ୍ଗତ । ପ୍ରଳୟ ପର (୯) ପୁରୁଷ । ପରାପର ପୂଜିତ । ପ୍ରକାଶ ପରମାତ୍ମକ । ପରାପର (୧୦) ବିବର୍ଜିତ । ପରମ ଧାର୍ମିକ । ପରମ ଧାମ । ପରମ ଜ୍ୟୋତପର (୧୧) । ପରମେଶ୍ୱର । ପଞ୍ଚ ବ୍ୟାପାରକ । ପଞ୍ଚଶରୋ ପରମ (୧୨) ପୂର୍ଣ୍ଣାନନ୍ଦ ପରମ ପବିତ୍ର । ପୁରୁଷେଶ୍ୱର । ପରମ ନିର୍ବାଣ ଦାୟକ । ପ୍ରକୃତି ଈଶ୍ୱର । ପରମ ଆତ୍ମା ସ୍ୱରୂପ । ପରାପର । ପୂର୍ଣ୍ଣାକାଂକ୍ଷ ହୃଦୟ ପଙ୍କଜ ଚନ୍ଦ୍ରିତ । ପାତାଳ ଆକାଶ ବ୍ୟାପକ । ପାତାଳ ତଳ ନିବାସକ (୧୩) । ପଞ୍ଚବକ୍ତ୍ର । ପଞ୍ଚବାଣବିଧ୍ୱଂସକ । ପଞ୍ଚଭୂତାତ୍ମକ । ପରଂ (୧୪) ବ୍ରହ୍ମ । ପଞ୍ଚାନନ ପରମାଲିଙ୍ଗନ । ପରସୋଦର (୧୫) । ପଦ୍ମାକର । ପଦ୍ମନାଭ ପଦ୍ମମୁଖୀ ଶିବନ୍ଦୀ (୧୬) । ପଦ୍ମମୁଖୀ ପୂଜିକ ପୟୋଧର । ଜ୍ଞାନ କୃତ ପରମ ଶାନ୍ତ (୧୭) । ପରମ ତେଜ ସ୍ୱରୂପ । ପୟୋନିଧି ମନ୍ଥନ ପୀତ ବିଷ । ପାବନୀ (୧୮) ଗଙ୍ଗାଧର । ପୁରୁଷ ପ୍ରକୃତି ବିବର୍ଜିତ । ପୁରୁଷ ପ୍ରକୃତି ଶରୀର । ପ୍ରଣବାତ୍ମକ । ପ୍ରଣବେଶ୍ୱର । ପ୍ରଣମ୍ୟା ପ୍ରଣମ୍ୟ (୧୯) ବିବର୍ଜିତ । ପୂର୍ଣ୍ଣଭକ ଚର୍ମ ଆସନ । ପାର୍ବତୀ ପ୍ରାଣ । ପିଙ୍ଗଳାଙ୍ଗୀତ (୨୦) ପାନକୃତ । ପଞ୍ଚବିଂଶତି ତତ୍ତ୍ୱ ବିବର୍ଜିତ (୨୧) । ପୁଷ୍ପଗିରି (୨୨) ପବନାଶେପଣ । ପରମ ହଂସ । ପଞ୍ଚ ଇନ୍ଦ୍ରିର ନିବାରଣ (୨୩) । ପୂଜିତ ପଦ୍ମମାଳା ଭରଣ । ପନ୍ନଗ ବସନ । ପିଙ୍ଗଳ ନୟନ । ପଣ୍ଡୁସୁତ ପ୍ରିୟ ନିତ୍ୟ ଦରଶନ । ପ୍ରଣତ ପ୍ରସନ୍ନ (୨୪) । ପ୍ରକୃତୀଶ୍ୱର ଚଇତନ୍ୟ (୨୫) । ପଞ୍ଚାଶ ବର୍ଣ୍ଣଭେଦ ପଦ୍ମାଣ୍ଡ ଧ୍ୟାନ । ପଞ୍ଚଜନ୍ୟ ଶଙ୍ଖ ସମଗ୍ରୀବ । ପଣ୍ଡିତ ଗଣ ପୂଜିତ ।

---

(୧) 'ଖ' ଧୋତନ୍ଧକାର (୨) 'କ' ସଂସ୍ଥାପନ (୩) 'କ' ଧାର୍ମିକ (୪) 'ଖ' ସଂଜ୍ଞାବ (୫) 'ଖ' ନ ଗୋଚର (୬) 'କ' ନନ୍ଦପତି (୭) 'କ' ନନ୍ଦନ ବନୀତ (୮) 'କ' ନିସୂଦନ (୯) 'କ' ଅଗ୍ର (୧୦) 'କ' ପାରମ୍ପର (୧୧) 'ଖ' ରେ ପରମ ଧାମ ଠାରୁ ପର ପର୍ଯ୍ୟନ୍ତ ନାହିଁ (୧୨) 'ଖ' ରେ ନାହିଁ । (୧୩) 'କ' ନିବାସ (୧୪) 'କ' ପଞ୍ଚ (୧୫) 'କ' ପରଶୁଦର (୧୬) 'ଖ' ରେ ପାନକୃତ ନାହିଁ (୧୭) 'କ' ପରମ ଶାନ୍ତ (୧୮) 'ଖ' ରେ ନାହିଁ (୧୯) 'ଖ' ପ୍ରାଣାପ୍ରଣ (୨୦) 'ଖ'ପିଙ୍ଗଳାନ୍ତକ (୨୧) 'କ' ବିନର୍ଜିତ (୨୨) (ଖ) ପୁଣ୍ୟଗିରି (୨୩) 'ଖ' ରେ ନାହିଁ (୨୪) 'ଖ' ରେ ନାହିଁ (୨୫) 'କ' ପରମ ଚଇତନ, 'ଖ' ଉତ୍ପନ୍ନ ପବନ

Digitized by srujanika@gmail.com

ଜୟ ଜୟ ଫଣିପତି ବଳୟ । ଫଣିପତି କୁଣ୍ଡଳ । ଫଣିପତି ଉପବୀତ । ଫଣିପତି କଟିବସନ । ଫଣିପତି କମଳାସନ । ଫଣିପତି କରଧୃତ ଶୋଭନ । ଫଣିପତି ଶେଷମୁଖ ଅଶେଷ ଆଳୟ (୧) । ଫଣିପତି ନାଦ ପୂରିତ । ଫଳିତ ମୁନିଜନ ସହିତ (୨) ଚଇତନ୍ୟ । ଫଳିତ ଯୋଗି (୩) ଜନ ଧାନ ତରୁଫଳ । ଜୟ ଜୟ ବିବସିତ । ୦ ବିଶ୍ୱ ବିଡ଼ମ୍ବିତ । ବିଶୁଦ୍ଧ ବୁଦ୍ଧି ବୃନ୍ଦ ବନ୍ଦିତ (୪) ଚରଣ । ବିଶ୍ୱ ପ୍ରପଞ୍ଚ ବ୍ରହ୍ମାଣ୍ଡ କାରଣ । ବିଷଧର ବଳୟ । ବଳବରବାହୁ (୫) ବିଶାଳ । ବିବସିତ ମଣ୍ଡଳ ସଂସ୍ଥିତ । ବିବସିତ ସମ ଦୁର୍ନିରୀକ୍ଷ । ବ୍ରହ୍ମମୟ । ବାରଣାନନ ପୂଜିତ । ବିବୁଧ (୬) ବନ୍ଦିତ ଚରଣ । ବିଶ୍ୱ ପ୍ରଚଣ୍ଡ ବିହ୍ମାଣ୍ଡ କରଣ (୭) । ବ୍ରହ୍ମ ବ୍ରହ୍ମଜ୍ଞାନ (୮) ରୋପଣ । ବ୍ରହ୍ମାବିଷ୍ଣୁ ଚରଣେ ବନ୍ଦିତ । ବ୍ରହ୍ମାଣ୍ଡ ମଣ୍ଡିତ । ବ୍ରହ୍ମାଣ୍ଡ ମୂର୍ତ୍ତି । ବ୍ରହ୍ମାଣ୍ଡ କାରଣ (୯) । ବ୍ରହ୍ମ ସ୍ୱରୂପ । ବ୍ରହ୍ମ ମାତୃକାଦୀଶ୍ୱର । ବ୍ରହ୍ମ ମୂର୍ତ୍ତି । ବଶିଷ୍ଠାଦି ଋଷିଗଣ ପୂଜିତ । ବନମାଳା-ଭରଣ । ବିଜୟେନ୍ଦ୍ରୟ । ବିଶ୍ୱେଶ୍ୱର ବିଶ୍ୱସମ୍ଭୂତ ବାସ (୧୦) । ବଡ଼ବାନଳ (୧୧) ନୟନ । ବିଷମଶର ବିନାଶନ (୧୨) ବଳାହାର୍ଯ୍ୟ ଜନ ବନ୍ଦିତ (୧୩) । ବିଳାସିନୀଗଣ ବିପ୍ରାଣ (୧୪) । ବାସୁଦେବ ବୈରି ବିନାଶନ (୧୫) । ବସ୍ତ୍ରୋବୃନ୍ଦ ବନ୍ଦିତ । ବାତାଶନାବାତ ବେଗ । ବୃଷଭାସନ । ବିଷୟ (୧୬) ଗଦ ବିମୋଚନ । ବିଭ୍ରମ (୧୭) ମାୟା ଛେଦନ । ବାମଦେବ ଗଣାଧିପ । ବରୁଣ ବଲ୍ଲଭ ଜଟା ବିଳାସ (୧୮) । ବୁଧ ବୁଦ୍ଧି ପ୍ରକାଶ । ବିମଳ ବୁଦ୍ଧି ଗମ୍ୟ । ବାସନା ଜାଳ ବିଘ୍ନଘନ ବାତ (୧୯) । ବାଳ ବୃଦ୍ଧ ତରୁଣ ବିବର୍ଜିତ । ବଳି ପଳିତ (୨୦) ବିନାଶନ । ବଳବନ୍ତେଶ୍ୱର । ବନ୍ଧ ଗ୍ରନ୍ଥି ଛେଦନ (୨୧) ବସୁମତୀ ବର୍ଣ୍ଣିତ ରୂପ କୂଟ (୨୨) । ବ୍ରହ୍ମ (୨୩) ଗଣ ସୁହୃଦ । ବରଷ୍ଟ ମଣ୍ଡିତ । ବ୍ରହ୍ମାମଣ୍ଡଳ ମଣ୍ଡିତ । ବିକଟଗତି । ବ୍ରହ୍ମଇନ୍ଦ୍ର ଭେଦିତ । ବ୍ରହ୍ମ ପ୍ରଳୟ । ବ୍ରହ୍ମ ସ୍ୱରୂପ । ବୃନ୍ଦ ବୈରିଗଣ ବିଘ୍ନ ବିନାଶନ । ବିନାୟକ ବରଦାୟକ । ବୀଣା ଧ୍ୱନି ବାଦନ ପ୍ରିୟ ବିଜୟୀ ତ୍ରିଭୁବନ ଶତ୍ରୁଗଣବିନାଶକ (୨୪) ବିଷମ ରୂପ ସୁହୃଦୟ (୨୫) । ବସୁମତୀ ସୁତ ବୁଧ ବୃହସ୍ପତି ବାସବ ରିପୁ ଗୁରୁ ବିଧୁ ବିବସିତ ସୁତ ସହିତ ଗ୍ରହଗଣ ସେବିତ ଚରଣ ତଳ ।

---

(୧) 'କ' ଗାୟନ (୨) 'କ' ରେ ନାହିଁ (୩) 'ଖ' ମୁନି (୪) 'କ' ବସୁଧାଦି ବୃତ୍ତି ପୂଜିତ (୫) 'କ' ବଜ୍ରବାହୁ । (୬) 'କ' ବିବୁଧ ବୃନ୍ଦ (୭) 'କ' ରେ ନାହିଁ (୮) 'ଖ' ବ୍ରହ୍ମାଗ୍ନି (୯) 'କ' କରତା । (୧୦) 'କ' ଡାସ (୧୧) 'ଖ' ବଡ଼ବାଗ୍ନି (୧୨) 'ଖ' ଉଗମାଶର ନୀବାଶନ । (୧୩) 'ଖ' ଜଳ ବୁଦ୍ଧିତ । (୧୪) 'କ' ପ୍ରାଣ (୧୫) 'କ' ନବାସନ (୧୬) 'ଖ' ବିତର୍କ ପଦ (୧୭) 'ଖ' ଭ୍ରମ (୧୮) 'କ' ଜଟାଭିଳାଷ (୧୯) 'କ' ବାସବାବଶ ଘନ ବିଷମ ବାତ । (୨୦) 'ଖ' ପଳିତ (୨୧) 'କ' ବ୍ରହ୍ମଗ୍ରନ୍ଥି ହସ୍ତ ଭେଦନ (୨୨) 'କ' ରୂପ କୂପ (୨୩) 'କ' ବ୍ରାହ୍ମଣ (୨୪) 'କ' ରେ ନାହିଁ (୨୫) 'କ' ବିଷମ ଶର ସୁହୃଦ ।

Digitized by srujanika@gmail.com

ଜୟ ଜୟ ଭୂଧର ଶରଣ (୧) । ଭୂଧର ଭୂଷଣ । ଭୂଧର ନନ୍ଦନୀ ପ୍ରତିଗନ୍ଧ (୨) । ଭୂମଣ୍ଡଳ ମଣ୍ଡିତ । ଭ୍ରମମତ ମାୟା ଖଣ୍ଡିତ । ଭ୍ରମାତିତ (୩) ଭାର୍ଗବ ଋଷିଗଣ (୪) ବନ୍ଦିତ ଭାଲଲୋଚନ ବନ୍ଦିତ (୫) । ଭାଗୀରଥୀ ଶିର ଶୋଭିତ । ଭୂମି ମଣ୍ଡଳ ବିନାଶନ (୬) । ଭଗବତୀ ମୁଖାମ୍ବୁଜ ଚୁମ୍ବିତ ଭ୍ରମର (୭) । ଭାନୁ ମଣ୍ଡଳ ନୟନ । ଭାସ୍କର ସ୍ୱରୂପ । ଭୟଙ୍କର ଅସୁର ନିବାରଣ । ଭୀଷ୍ମରୂପ (୮) । ଭୂତଗଣ ବେଷ୍ଟିତ । ଭଦ୍ରେଶ୍ୱର । ଭଦ୍ରେଭ କୁମ୍ଭ ସମ ଭବାନୀ କୁଚ କୁମ୍ଭ ବିଭୂଷଣ । ଭଇରବ । ଭଇରବଗଣ ଈଶ୍ୱର । ଭାବାଭାବ ବିବର୍ଜିତ । ଭୁଜଙ୍ଗ ଶୋଭିତ (୯) ଶରୀର । ଭବଭବାନ୍ତକ । ଭବଭୟ (୧୦) ସ୍ଥିତି କାରଣ । ଭବଭାରଭର ବିନାଶନ । ଭଇରବ ଗଣେଶ୍ୱର । ଭରତ ଶରୀର (୧୧) । ଭାଗ୍ୟବନ୍ତ ଗଣ ସେବନ । ଭାଗ୍ୟାଭାଗ୍ୟ ବିବର୍ଜିତ । ଭୂତଗଣ ବିନାଶନ (୧୨) । ଭୁବ ମଣ୍ଡଳେ ଭୋକ୍ତା କର୍ମ । ଭକ୍ତ (୧୩) ସେବିତ (୧୪) ଭ୍ରମର କୁହର ନିବାସ । ଭୁବ ଅନ୍ତସାକ୍ଷ ପ୍ରତିତ । ଭଗବତଗଣ ସେବିତ । ଭବଲୋକେଶ୍ୱର । ଭୂମ୍ୟାଦି ପଞ୍ଚଭୂତାତ୍ମକ । ଭଗବତୀ ମୁଖାମ୍ବୁଜ ଭାସିତ (୧୫) । ଭୃଙ୍ଗପଂକ୍ତିସମ (୧୬) ଭ୍ରୂଲତା ଚୁମ୍ବନେ ଶୀତ୍କାର କୁଞ୍ଚିତ (୧୭) । ଭୋଗବତୀ ପୁର ଖ୍ୟାତ (୧୮) । ଭିକ୍ଷାନ୍ନ ଭୋଜନ । ଭ୍ରାନ୍ତି ବିବର୍ଜିତ । ଭୁବନେଶ୍ୱର । ଭୁବନ ତ୍ରୟ ପୂଜିତ । ଭୁବନ ତ୍ରୟ ସର୍ଜିତ । ଭୁବନ ତ୍ରୟ ଧାରଣ । ଭୁବନ ତ୍ରୟ କାରଣ । ଭୁବନ ତ୍ରୟାତ୍ମକ । ଭୁବନ ତ୍ରୟତ୍ରାଣ (୧୯) । ଭୁବନ ତ୍ରୟ ଅଣ୍ଡକୁଶଳ (୨୦) । ଭାବ ଗ୍ରହଣ । ଭାବଗମ୍ୟ । ଭାବାଭାବ ବିସ୍ଥାନ (୨୧) । ଭୂତାଧିପ । ଭୂତାବାସ । ଭୂତମୟ । ଭୂଧାରଣ (୨୨) ଭୂତଗଣ ଜୀବନ । ଭୂତାନ୍ତ କୃତ । ଭୂତାଭୂତ ବିବର୍ଜିତ । ଭୂତାନ୍ତ ତରଣ (୨୩) । ଭବିତବ୍ୟ (୨୪) ଭୂତଗଣ ତାରଣ । ଭୂତାତ୍ମା । ଭସ୍ମ ବିଲେପନ । ଭ୍ରମକ ମଣିମତ ଜଡ଼ ଚେତନା କାରଣ । ଭୂମଣ୍ଡଳ ଧର ମେଖଳ । ଭବ (୨୫) ଚରଣ ଶରଣ କୃଷ୍ଣ ଦାସ (୨୬) ।

ଜୟ ଜୟ ମାଧବ (୨୭) । ମାୟାଧର । ମାୟାକର । ମାୟା ଶରୀର । ମାୟାତୀତ । ମାୟାମୟ । ମାୟାସୃଜ । ମାୟାକୃତ । ମାୟାନାଶନ । ମାୟାମୟ ପ୍ରକୃତି ବିବର୍ଜିତ । ମମେତି ମମତାୟା ପାପ (୨୮) ବିବର୍ଜିତ । ମୁନିମନମାନସହଂସ । ମୌଳି ମନ୍ଦାକିନୀ ।

---

(୧) 'କ' ସଦନ (୨) 'କ' ପ୍ରତିଗସ୍ତ (୩) 'ଖ' ଭୂମ୍ୟାତୀତ (୪) 'କ' ଗଣ ନାହିଁ (୫) 'କ' ଉଦ୍ଦୀପିତ । (୬) 'କ' ଭବମଣ୍ଡଳ ନିବାସ (୭) 'କ' ମୁଖାମ୍ଭୋଜ କୃତ ଭ୍ରମ (୮) 'କ' ଭୀମରୂପ (୯) 'ଖ' ଶୋଭା (୧୦) 'କ' ଭବଭୟ ଲୟ (୧୧) 'ଖ' ରେ ଭଇରବ ଠାରୁ ଶରୀର ନାହିଁ । (୧୨) 'କ' ଭୃତ୍ୟଗଣ ଦୁଃଖ (୧୩) 'କ' ରେ ଭୋକ୍ତା କର୍ମ ଭକ୍ତା ନାହିଁ (୧୪) 'ଖ' ସେବିତ ନାହିଁ (୧୫) 'କ' ରେ ମୁଖାଭୁଜ ଉଦ୍ଭାସିତ । (୧୬) 'ଖ' ଭୃଗୁପତି ସମ (୧୭) 'କ' ଲୀଳାସ୍ଥିତ (୧୮) 'କ' ରକ୍ଷିତ (୧୯) 'କ' ତାରଣ (୨୦) 'କ' ଭଣ୍ଡବାରଣ (୨୧) 'କ' ଭାବଗମ୍ୟା ଭାବାଭାବ ସ୍ଥାନ । (୨୨) 'କ' ଭୂତ ଧାରଣ (୨୩) 'କ' ଭୂତାନ୍ତର (୨୪) 'କ' ଭବିତବ୍ୟ ହର (୨୫) 'ଖ' ଭୁବନ (୨୬) 'କ' ରେ ନାହିଁ (୨୭) 'ଖ' ରେ ମାୟାଧବ ନାହିଁ (୨୮) 'କ'ରେ ମମତା ପାଶ

Digitized by srujanika@gmail.com

ମାଳତୀ ମାଳାବୃତ ଶୋଭନ । ମହେଶ୍ୱର । ମହେନ୍ଦ୍ର (୧) ବନ୍ଦିତ ଚରଣ । ମହିଷାସୁର ମର୍ଦ୍ଦିନୀ ମଧୁରାଧର ଚୁମ୍ବିତ । ମନ ନୟନ ଅଗୋଚର । ମନ ନୟନ ସଞ୍ଚିତ । ମନ ନୟନ ମଧ୍ୟ ନିବାସ । ମନ ନୟନାଦି ସମ୍ଭୂତ । ମନ ନୟନାଦି ପ୍ରକାଶ । ମନ ନୟନାତ୍ମକ । ମନ ନୟନାଦି ବିଲକ୍ଷଣ । ମନ ନୟନାଦି ବିବର୍ଜିତ । ମାତଙ୍ଗ ତନୟା ସ୍ତନ (୨) ଅବଲିଙ୍ଗନ (୩) । ମାତଙ୍ଗ ଚର୍ମ ପରିଧାନ । ମହାଭୂତ ସ୍ୱରୂପ (୪) । ମହାକାୟ । ମହାକାୟ ବେଷ୍ଟିତ । ମଳୟାଚଳ ବିହାର । ମଦନ ସଦନ ବିବର୍ଜିତ । ମହାମୂର୍ତ୍ତି । ମହାଶ୍ରୁତି (୫) ମହାଧୃତି (୬) । ମହାମତି । ମହାବାହୁ । ମହେନ୍ଦ୍ର ବନ୍ଦିତ । ମନୋଭବ ମନ୍ଥନ (୭) । ମୃଡ଼ାନୀ ମୁଖ ମାଳତୀ ମଧୁକର ମଧୁରସ ପାନ । ମଙ୍ଗଳା ଗଣନାଥ । ମଙ୍ଗଳାଳୟ । ମଙ୍ଗଳା ମୁଖମଣ୍ଡଳ ଚୁମ୍ବିତ । ମାଣିକ୍ୟାଦି ଦିବ୍ୟହାର । ମୂଳସ୍ତମ୍ଭ । ମୁଗ୍ଧ ମନୋହାରି ଗଣ ମନ ନୟନାରବିନ୍ଦପୂଜିତ । ମୁଣ୍ଡମାଳାଭରଣ (୮) । ମୃଣ୍ଡନାଶିନୀ ଘନ ମଣ୍ଡଳ (୯) ମଣ୍ଡିତ । ମହାଦେବ । ମନ୍ତ୍ରାତ୍ମକ । ମନ୍ତ୍ର ସ୍ୱରୂପ । ମନ୍ତ୍ରଜ୍ଞ । ମନ୍ତ୍ରମୟା (୧୦) । ମନ୍ତ୍ରାମନ୍ତ୍ର ବିବର୍ଜିତ । ମନ୍ତ୍ରାଶୟ । ମନ୍ତ୍ରଗମ୍ୟ । ମହାଭୁକ (୧୧) । ମନ୍ତ୍ର ଶରୀର । ମନ୍ତ୍ରେଶ୍ୱର । ମିଥ୍ୟାମିଥ୍ୟ (୧୨) ବିବର୍ଜିତ । ମୃତ୍ୟୁଞ୍ଜୟ । ମୃତ୍ୟୁ ସ୍ୱରୂପ । ମୃତ୍ୟୁ ବିନାଶନ (୧୩) । ମୃତ୍ୟୁ ନିର୍ଜିତ । ମୃତ୍ୟୁ ବିବର୍ଜିତ । ମୁକ୍ତି ବନ୍ଧାଦି ବିବର୍ଜିତ । ମୁକ୍ତେଶ୍ୱର । ମଧୁସୂଦନ ବନ୍ଦିତ । ମଧୁପାନାସକ୍ତ । ମଧୁ ସହଚର ବିନାଶକ । ମହାଶୂନ୍ୟ । ମେଘସ୍ୱନ । ମହାଶ୍ରୁତି । ମହାମୂର୍ତ୍ତି । ମିଥ୍ୟାମିଥ୍ୟ ବିବର୍ଜିତ (୧୪) । ମହାନିଶାଧିପ । ମହାଧିପ ମହିମା ସାଗର । ମହାବୀର ମର୍ଦ୍ଦନ (୧୫) । ମାତା ପିତା ବିବର୍ଜିତ । ମୂଳାଧାରାଦି ଚକ୍ର ବିଭେଦନ (୧୬) । ମହାରବ (୧୭) ସ୍ୱରୂପ । ମହାମୁଦ୍ରା ନିବନ୍ଧ (୧୮) । ମଧୁମତୀ ମାୟାନିଧାନ । ମଣିପୂର କମଳ ବିନାଶ । ମୃଗୀନ୍ଦ୍ର ବନ୍ଦିତ । ମାୟା ସଂହାରକ । ମୋହୋ-ପକାର ମୃଗ ଲକ୍ଷଣ । ମୃଗତୃଷ୍ଣାବତ ଜଗତ ମାୟା ନିଧାନ । ମୃଗ ଧାରଣ । ମୃଗପତିଚର୍ମ କଟି ମଣ୍ଡନ (୧୯) ମୃଗନୟନୀ ତାଣ୍ଡବ ସୁହୃଦୟ । ମୀନ (୨୦) କେତନ ମନୋରମା (୨୧) କର । ମଣ୍ଡଳ ସୂକ୍ଷ୍ମ ବିନାଶକ । ମହାମାୟା ମନ ନୟନ (୨୨) ମରାଳ ମାନସରୋବର (୨୩) ମାତୃକେଶ୍ୱର । ମଣିଭଦ୍ରସେବିତ ନିରନ୍ତର । ମରାଳ ବାହନ ଅଧିଦୈବତ । ମାନିନୀ ନୟନ ମନ ମନୋହର । ମେରୁ ମନ୍ଦର ଜ୍ୱଳ ଅନଳ ସମ ଶରୀର । ମୁନି ମନ କଇରବ ଚନ୍ଦ୍ର ।

---

(୧) 'କ' ମହୀନ୍ଦ୍ର (୨) 'କ' ରେ ସ୍ତନ ନାହିଁ (୩) 'କ' ରେ ଆଲିଙ୍ଗନ (୪) 'ଖ' ରେ ନାହିଁ (୫) 'କ' ରେ ନାହିଁ (୬) 'ଖ' ରେ ନାହିଁ (୭) 'କ' ରେ ବନ୍ଦନ (୮) 'କ' ଭୂଷଣ (୯) 'କ' ଜଘନ ମଣ୍ଡଳ (୧୦) 'ଗ' ରେ ମନ୍ତ୍ର ସ୍ୱରୂପ ଅଧିକା (୧୧) 'ଖ' ରେ ନାହିଁ (୧୨) 'କ' ମିଥ୍ୟାମିଥ୍ୟ (୧୩) 'ଖ' ନିବାସ । (୧୪) 'କ'ରେ ଅଧିକା ଥର ଲେଖାଯାଇଛି (୧୫) 'କ' ରେ ବିମର୍ଦ୍ଦନ (୧୬) 'କ' ରେ ବିଶ୍ଳେଷକ (୧୭) 'କ' ମଙ୍କାର (୧୮) 'କ' ନିବନ୍ଧୀ (୧୯) 'କ' ରେ ବନ୍ଧନ (୨୦) 'କ' ମୃଗ (୨୧) 'କ' ରେ ମନୋରମା ଦୁଃଖାନ୍ତ କର । (୨୨) 'କ' ମନୋମୟ (୨୩) 'କ' ରେ ମାନସସରୋବର

Digitized by srujanika@gmail.com

ଜୟ ଜୟ ଜଗତନାଥ ଜୀବନ ସମ । ଯମ ନିୟମ ଆସନ ପ୍ରାଣାୟମ ପ୍ରତ୍ୟାହାର ଧ୍ୟାନ ଧାରଣା ସମାଧିପୂର୍ଣ୍ଣ । ଯୋଗିଜନମନ କୁମୁଦ ଯାମିନୀନାଥ । ଯଜନ ଯଜନାଦି କର୍ମ ରହିତ । ଯଜ୍ଞଭୃତ୍ । ଯଜ୍ଞେଶ୍ୱର । ଯଜ୍ଞ ପରାୟଣ । ଯଜ୍ଞନାଶନ । ଯଜ୍ଞବିବର୍ଜିତ । ଜନ୍ମାଦି ଦୁଃଖ ନାଶନ । ଜଗତପରାୟଣ । ଜଗଦୀଶ୍ୱର । ଜଗତା ଜଗତ ବିବର୍ଜିତ (୧) ଯମପାଶ ବିମୋଚନ । ଯୋଗାରୋପଣ । ଯୋଗପରାୟଣ । ଯୋଗେଶ୍ୱର । ଯୋଗଗମ୍ୟ । ଯୋଗପ୍ରିୟ । ଯୋଗାତୀତ । ଯୋଗାତ୍ମା । ଯୋଗମୟ । ଯୋଗନିରତ । ଯୋଗାଳୟ । ଯୋଗାତ୍ମିକ । ଯୋଗାଶ୍ରୟ । ଯୋଗିଗଣ (୨) ସେବିତ । ଯୋଗଗର୍ଭ । ଯୋଗାରୂଢ଼ । ଯୋଗ ସ୍ୱରୂପ । ଯୋଗାନ୍ତ କୃତ (୩) । ଯୋଗାଯୋଗ ବିବର୍ଜିତ । ଯୋଗପୁରୁଷ । ଯୋଗେଶ୍ୱର (୪) । ଯାତନା ଶଙ୍କର ଅନନ୍ତକୃତ୍ (୫) । ଯାଜ୍ଞବଲ୍କ୍ୟାଦି ଋଷି ପୂଜିତ । ଯଜ୍ଞ ବ୍ରହ୍ମ ଶମ୍ଭାଦି ବନ୍ଦିତ ପ୍ରିୟ ।

ଜୟ ଜୟ ରାମଚନ୍ଦ୍ର ବନ୍ଦିତ । ରାମ ରାମଧ୍ୟେୟ (୬) । ରମ୍ୟାନନ୍ଦ (୭) । ରମ୍ୟ କନ୍ଦର ନିବାସ । ରାଜୀବନୟନ (୮) । ରକ୍ତପଦାଭରଣ । ମହୋଦର (୯) । ବଦନ ଚୁମ୍ବନ । ମୋରମଣ (୧୦) ରଙ୍ଗନାଥ । ରଣମଣ୍ଡିତ (୧୧) । ରଜନୀକର ଶେଖର (୧୨) । ରଜନୀକର ହିମ ଶୁକ୍ଳ ଶଙ୍କର । ରଜନୀକର ସୁହୃଦ ବିନାଶନ । ରଜନୀକର ନୟନ ରଜନୀକର ମୂର୍ଦ୍ଧାମଧ୍ୟ (୧୩) ସଂସ୍ଥିତ । ରଜନୀକର ମୂର୍ଦ୍ଧା (୧୪) ବଲ୍ଲଭ । ରଜନୀକର ଶତ୍ରୁ ନିସୂଦନ । ରଜନୀ ଦିବସ ସନ୍ଧ୍ୟା ନିନୟନ । ରଜତ ପର୍ବତ ବିଳସିତ । ରୁଦ୍ର ସ୍ୱରୂପ (୧୫) । ରସଦଳ କମଳ ନିଧାନ । ରମଣୀଗଣ ସେବନ । ରକ୍ତପଦ୍ମ ସନ୍ଦେକ୍ଷଣ । ରାଜ୍ୟାଧିରାଜ ରାଜେଶ୍ୱର । (୧୬) ରାଜଗଣ ବନ୍ଦିତ । ରଢ ମୁଖ କମଳ ରଜନୀକର । ରଢରଙ୍ଗ ବିବର୍ଜିତ (୧୭) ରଢପରାୟଣ । ରଢ ରସ ବିଶେଷଣ । ରଢନାଥ ନିସୂଦନ । ରତ୍ନାକର ବନ୍ଦିତ ଚରଣ । ରତ୍ନାକରପତି ଶିର ଧର (୧୮) । ରତ୍ନାକର ନିବାସ । ରତ୍ନାକର ଜାତ (୧୯) । ରତ୍ନାକର ଶୋଭନ । ରତ୍ନାକର ଗ୍ରୁସ୍ୱା (୨୦) । ରତ୍ନାକର ସାକ୍ଷିକ (୨୧) ପ୍ରିୟ । ରତ୍ନାକର (୨୨) ଫେନ ସମ ଧବଳ (୨୩) । ରତ୍ନାକର ସମ୍ପୂର୍ଣ୍ଣ । ରତ୍ନାକର ଗର୍ଜନ (୨୪)

---

(୧) 'ଖ' ରେ ଜଗତପରାୟଣଠାରୁ ଦୁଃଖ ବିନାଶନ ପର୍ଯ୍ୟନ୍ତ ନାହିଁ ଏବଂ 'କ' ରେ ଜନ୍ମାଦି ଦୁଃଖବିନାଶନ ଅଧିକା ଲେଖାହୋଇଛି । (୨) 'କ'ରେ ଯୋଗିଜନ (୩) 'କ' ରେ ଯୋଗାନ୍ତକ କୃତ୍ (୪) 'କ' ରେ ଯାଚକେଶ୍ୱର (୫) 'କ'ରେ ଜାତଶଙ୍କର ଅନ୍ତକୃତ୍ । (୬) 'କ' ରେ ରାମାଧ୍ୟାନ (୭) 'କ' ରେ ରାମାନନ୍ଦ (୮) 'ଖ' ରେ ନାହିଁ (୯) 'କ' ମାହେଶ୍ୱର (୧୦) 'ଖ' ରେ ନାହିଁ (୧୧) 'କ' ରେ ପଣ୍ଡିତ (୧୨) 'କ' ବଦନ (୧୩) 'କ' ରେ ମଧ୍ୟ ନାହିଁ (୧୪) 'କ' ରେ ମୁଖୀ (୧୫) 'କ' ରେ ରୌଦ୍ର ସ୍ୱରୂପ (୧୬) 'ଖ' ରେ ରାଜରାଜେଶ୍ୱର ନାହିଁ (୧୭) 'ଖ' ବିନିବର୍ଜିତ (୧୮) 'କ' ରତ୍ନାକରୋପୃଷ୍ଠି ଶ୍ରୀଧର (୧୯) 'କ' ରେ ରଞ୍ଜିତ (୨୦) 'କ' ଷେତ୍ର ପୂଜିତ (୨୧) 'କ' ରେ ପାଇଁ (୨୨) 'କ' ରେ ରତ୍ନାକର ବନ୍ଦିତ ଚରଣ ଅଧିକା ଅଛି (୨୩) 'ଖ' ରେ ସମ ନାହିଁ (୨୪) 'କ' ଜଗତଜନ ପ୍ରଜନ ।

Digitized by srujanika@gmail.com

ବିଷଧର ମେଖଳ । ରଜନୀଚର ବରରମଣୀ (୧) ଗଣ ଚନ୍ଦ୍ର ଚାଟଙ୍କ (୨) ଲକ୍ଷ୍ମୀ ବିନାଶକ ରସନାଦ୍ଧ ଇନ୍ଦ୍ରିୟ ଦମିତ । ରୂପାରୂପ ବିବର୍ଜିତ ରଜନୀପ୍ରିୟ । ରଜନୀ ବିହାର । ରଜନୀଜିତ । ରଜନୀନାଥ । ରଜନୀ ଦିବସ ବିବର୍ଜିତ । ରସଙ୍କ ରସରଞ୍ଜନ (୩) । ରସାତ୍ମକ । ରସ ସମ୍ଭୂତ । ରସାବ୍ଧ ଆଶ୍ରମ । ରସମୟ । ରସଶରୀର । ରସନାଥ । ରସାକ୍ତ ସ୍ଥାମ୍ଭିତ କର (୪) । ରସାରସ ବିବର୍ଜିତ । ରକ୍ତ ସର୍ପ ମତ (୫) ମାସ୍ୱାଦନାଥ । ରଙ୍ଗ କୁସୁମ ପ୍ରିୟ । ରୋମ କୂପେ ବ୍ରହ୍ମାଣ୍ଡଧର । ରୂପଧୃକ୍ । ରୂପାତୀତ (୬) । ରଣିତ କଙ୍କଣ ଭୁଜ ଶୋଭିତ । ରବି ସହସ୍ର ସମ ପ୍ରକାଶ । ରାଗାଦ୍ଧ ଦୋଷ ବିବର୍ଜିତ । ରାଜୀବ ରାଜିତ ଶରୀର । ରସାତ୍ମକ । ରାତ୍ରି ଦିବସ ସଂଘାରଣ (୭) ରଢପଢ ବିଧ୍ୱଂସନ । ରଢପଢ ଶତ ନନ୍ଦିତ (୮) ବଦନ । ରୁକ୍ମିଣୀରମଣୀ ରମ୍ୟ ।

ଜୟ ଜୟ ଲାଙ୍ଗଳଧର । ଲକ୍ଷାଽଲକ୍ଷା ବିବର୍ଜିତ (୯) । ଲଭ୍ୟାଲଭ୍ୟ ବିବର୍ଜିତ (୧°) । ଲାଭ ଲାଭ ବିହୀନ । ଲଳିତ ଲଳନା ଦ୍ରବ ଶିର (୧୧) ଲିଙ୍ଗାତ୍ମକ । ଲାଙ୍ଗଳଧର । ଲିଙ୍ଗ ଶରୀର ବିବ୍ରତା ଲିଙ୍ଗଧର (୧୨) । ଲିଙ୍ଗରାଜ । ଲମ୍ପଟାଦ୍ଧ ଦୋଷ ରହିତ । ଲୋଷ୍ଟ୍ର କାଞ୍ଚନ (୧୩) ସମ । ଲେପରସାଦ୍ଧ ବିଦ୍ୟାପ୍ରଦ । ଲୟ ନେଜ ପରିପୂର୍ଣ୍ଣ (୧୪) । ଲୟ ଲୋଷଜିତ (୧୫) ଲୟାତ୍ମକ (୧୬) । ଜୟାଲୟ ବିବର୍ଜିତ । ଲୟ ନିଧାନ । ଲୟ ସ୍ୱରୂପ । ଲୋକାଲୋକ ପର୍ବତାଶ୍ରୟ । ଲୋକନାଥ । ଲୋକାତୀତ । ଲୋକ ଚତୁର୍ଦ୍ଦଶ ଈଶ୍ୱର । ଲୋକାଲୋକ ପୂର୍ଣ୍ଣ । ଲୋଚନ ମନଧାନ (୧୭) । ଲୋଲାର୍ପିତ ମାୟା ବିବର୍ଜିତ । ଲୟଙ୍କ । ଲଭ୍ୟାଗ୍ନିର । ଲମ୍ବୋଦର ଲୟଗମ୍ୟ । ଲବ୍ଧବୋଧ ସ୍ୱରୂପ । ଲୋମକୂପେ ସ୍ଥିତ ସ୍ୱେଦ କାରୁଣ୍ୟ ଜଳ (୧୮) । ଲୋମଶାଦ୍ଧ ଋଷି ବନ୍ଦିତ ।

ଜୟ ଜୟ ବନ୍ଧୂକାଧର । ବନ୍ଧ ମୁକ୍ତ ବିବର୍ଜିତ । ବଙ୍କାନାଳ କୋବିଦ । ବ୍ରହ୍ମରନ୍ଧ୍ର ବିନବାସନ । ବାଳେନ୍ଦୁ ମୁକୁଟ ମଣ୍ଡିତ (୧୯) ଶିର । ବାକ୍‌ପାଣି ପାଦ ପାୟୁପସ୍ଥ ଇନ୍ଦ୍ରିୟ ବିବର୍ଜିତ । ବାରିରାଶି ଉଦର । ବାସବ ଭୁଜ । ବସୁମତୀ ନିତମ୍ବ । ବସୁଧା (୨°) ଚରଣ । ବ୍ରହ୍ମବଦନ । ବିବସ୍ୱତ ନୟନ । ବାଗୀଶ୍ୱରୀ ବଚନ । ବିଶ୍ୱଶରୀର । ବିଶ୍ୱେଶ୍ୱର ବଦନ । ବାରିଜ ବନ ବିବସ୍ୱାନ (୨୧) । ବିଷମଦୁଃଖ (୨୨) ନାଶନ । ବେଦଜସ୍ୱୀ ସ୍ତୁତ ବନ୍ଦିତ । ବ୍ରହ୍ମା ବନ୍ଦିତ ଚରଣ (୨୩)

---

(୧) 'କ' ଘୀଭମଣୀ (୨) 'କ' ହ୍ୱାଟକ କଙ୍କଣ (୩) 'କ' ରସରଞ୍ଜନ (୪) 'କ' ରସ ସ୍ଥାମ୍ଭିତ (୫) 'କ' ଗତ (୬) 'କ' ରୂପାକାନ୍ତ (୭) 'କ' ସଂସ୍କରଣ (୮) 'କ' ବିନନ୍ଦିତ (୯) 'କ' ରେ ନାହିଁ (୧°) 'ଖ' ରେ ନାହିଁ (୧୧) 'ତ' ଅର୍ଥ ଶରୀର (୧୨) 'ଖ' ରେ ନାହିଁ (୧୩) 'କ' କାଞ୍ଚନାଦ୍ଧ (୧୪) ଲକ୍ଷ ଲୋକ ପରିପୂର୍ଣ୍ଣ (୧୫) 'କ' ନେତ୍ରାତୀତ (୧୬) 'ଖ' ଲକ୍ଷ୍ୟାତ୍ମକ (୧୭) 'କ' ନିଧାନ (୧୮) ଲୋକାଲୋକ ପର୍ବତାଶ୍ରୟ ଠାରୁ କାରୁଣ୍ୟ ଦଳ ପର୍ଯ୍ୟନ୍ତ 'ଖ' ରେ ନାହିଁ (୧୯) 'କ' ବାଳଇନ୍ଦୁ ମୁକୁଟ ଶିର । ମଣିଶିର 'ଖ' (୨°) 'କ' ବସୁନ୍ଧରା (୨୧) 'ଖ' ରେ ନାହିଁ (୨୨) 'କ' ବୃଦ୍ଧି (୨୩) 'ଖ' ରେ ବେଦଜସ୍ୱୀଠାରୁ ଚରଣ ପର୍ଯ୍ୟନ୍ତ ନାହିଁ।

Digitized by srujanika@gmail.com

ଜୟ ଜୟ ଶଶଧର ଶେଖର (୧) ସ ରଙ୍କର — । ଶମ ଦମାଦି ନିରତ । ଶରଦଚନ୍ଦ୍ର ସହସ୍ର କାନ୍ତି । ଶରଦଚନ୍ଦ୍ର ସମ ବଦନ । ଶାରଙ୍ଗ ଚର୍ମ ବସନ । ଶାରଙ୍ଗ ନୟନୀ ବଦନ ଚୁମ୍ବନ । ଶାଶ୍ୱତ ଶାନ୍ତ ସ୍ୱରୂପ । ଶଙ୍ଖ ପଦ୍ମ ନିଧିଦାୟକ (୨) । ଶଙ୍ଖଚକ୍ରଧର ହୃଦୟ ନିବାସ ।

ଜୟ ଜୟ ଶିବ ଶମ୍ଭୋ । ଜୟ ଜୟ ଶ୍ରୀହଟ୍ଟ ପାଟଣା (୩) ବିହାର । ଶଶାଙ୍କ ଶେଖର । ଶୁଦ୍ଧ ଚୈତନ୍ୟ ସ୍ୱରୂପ । ଶୁଦ୍ଧାନ୍ତକରଣ । ଶୂଳଧର । ସର୍ପ ମଣ୍ଡଳ (୪) । ଶଶିମଣ୍ଡଳ ମଣ୍ଡିତ କୁନ୍ତଳ । ଶାତ କୁମ୍ଭକଟି ମେଖଳ । ଶାକମ୍ବୁସ୍ୱ ଶ୍ୟାମଳ ସମ (୫) ଶରୀର ଆଲିଙ୍ଗିତ । ଶଙ୍କର ଶିବ ଶିଶି ବନ୍ଦିତ (୬) । ଶ୍ରୀ ସ୍ୱାଲିଙ୍ଗନ । ଶ୍ରୀବନ୍ଦିତ । ଶ୍ରୀକଣ୍ଠାଣ । ଶ୍ରୀପଦ । ଶ୍ରୀକଣ୍ଠ (୭) ଶ୍ରୀଶ୍ୱର । ଶ୍ରୀରଙ୍ଗ ନିଧାନ ସଂସ୍ଥିତ । ଶ୍ରୀକାଳଗଣ ବେଷ୍ଟିତ । ଶ୍ରୀପଦ୍ମ (୮) ପାରଗ ସହସ୍ର କାନ୍ତି ଶକ୍ତିଧର । ଶକ୍ତି ମଧ୍ୟଗତ । ଶକ୍ତିକର (୯) ଶକ୍ତି ଆତ୍ମକ । ଶ୍ରୀପର୍ବତ (୧୦) ଶୃଙ୍ଗ ନିବାସ । ଶଢାନ୍ୱିତ । ଶୀଳ ସମ୍ପନ୍ନ । ଶାରଦା ଶ୍ରେୟ । ଶକ୍ତ୍ୟାଶ୍ରୟ, ଶଙ୍ଖ, ଲକ୍ଷଣ, ସୁଖୀ ସ୍ୱର୍ଣ୍ଣ ଚନ୍ଦନ (୧୧) । ଶୀତ ପୀତ ହରିତ ଲୋହିତ ବିବର୍ଜିତ । ଶ୍ରୀରାମଚନ୍ଦ୍ର ସେବିତ । ଶଙ୍ଖ କୁଣ୍ଡଳ ମଣ୍ଡିତ ଗଣ୍ଡସ୍ଥଳ । ସମଦରଶନ । ସମସ୍ୱରୂପ । ଶୀତଳାଶ୍ରୟ (୧୨) । ଶଙ୍ଖ ନାଳ ନିଧାନ । ସମଗାସ୍ୱନ ନିରତ । ଶାକିନୀଗଣ ପୂଜିତ । ଶଶୀ ବିଷାଣ ବିତ ମାଲ୍ୟାକର । ଶୂନ୍ୟ ବନ୍ଦିତ । ଶୂନ୍ୟେଶ୍ୱର । ଶୂନ୍ୟସ୍ତମ୍ଭନ କରଣ । ଶୁକ୍ଳ ଶରୀର । ଶୁକ୍ଳାମ୍ବରଧର । ଶେଷଅନ୍ତକର କାରଣ । ସର୍ବମୟ । (୧୩)

ଜୟ ଜୟ ସତ୍ୟଯୁଗ ଐଶ୍ୱର୍ଯ୍ୟ ନିଧାନ । ଷଟ୍‌କର୍ମ ନିରତ (୧୪) । ଷଟ୍‌ଶାସ୍ତ୍ର ବନ୍ଦିତ । ଷଟ୍ କମଳ ଦଳ ନିବାସ । ଶତଷଷ୍ଟି କୋଟି ଅପସ୍ୱରାଗଣ ପୂଜିତ । ଷୋଡ଼ଶ ଦଳ କମଳ ନିଧାନ । ଷଟ୍‌ବର୍ଗ ବିବର୍ଜିତ । ଷୋଡ଼ଶ କଳାଧର । ଷଟ୍ ଶାସ୍ତ୍ର ବନ୍ଦିତ । ଶତ ଶାସ୍ତ୍ରଜ୍ଞ । ଷଟ୍ ଶାସ୍ତ୍ରକୃତ । ଷଟ୍ ଶାସ୍ତ୍ରମୂର୍ତ୍ତିକ । ଷଟ୍ ଚକ୍ର ନିବାସ । ଷଟ୍‌ଚକ୍ରା ଶ୍ରେୟ । ଷଟ୍‌ଚକ୍ର ମଧ୍ୟେକ । ଷଟ୍‌ଚକ୍ର ଭେଦକ । ଷଟ୍‌ଚକ୍ର କୋଷ ନିବାସ । ଷଡ଼ରସା ସ୍ୱାଦନ । ଷଡ଼ାନନ ପିତର । ଷଡ଼ଙ୍ଗ ଅଧ୍ୟାସ୍ୱନ (୧୫) ଷଡ଼ର୍ଘ୍ୟ ପୂଜା ଗ୍ରହଣ ।

ଜୟ ଜୟ ସର୍ବକରଣ (୧୬) । ସର୍ବହିତ (୧୭) ସର୍ବ ଲକ୍ଷଣ ସମ୍ପନ୍ନ । ସର୍ବାସର୍ବ ବିବର୍ଜିତ । ସୁଖ ସ୍ୱରୂପ । ସୁଖପ୍ରଦ । ସୁଖାଶ୍ରିତ । ସୁଖମୟ । ସୁଖ ଶରୀର । ସୁଖ ଆତ୍ମକ (୧୮) । ସୁଖନିଧାନ । ସୂକ୍ଷ୍ମସୂକ୍ଷ୍ମାଶ୍ରିତ । ସୂକ୍ଷ୍ମାସୂକ୍ଷ୍ମ ଶରୀରମୟ । ସୂକ୍ଷ୍ମାନନ୍ଦ ସତାଂମତ ।

---

(୧) 'ଖ' ସୋଦର ମଧର ଶେଷଶେଖର (୨) 'କ' ସେବିତ (୩) 'ଖ' ପାହାଟ (୪) 'କ' ରେ ନାହିଁ (୫) 'କ' ରେ ସମନାହିଁ (୬) 'କ' ଶଙ୍କର ଶିବ ହର ନାମିତ (୭) 'ଖ' ରେ ନାହିଁ (୮) 'କ' ଶ୍ରୀଧୃତ (୯) 'କ' ଶକ୍ତିଗର (୧୦) 'ଖ' ଶ୍ରୀପଦ (୧୧) 'କ' ରେ ନାହିଁ (୧୨) 'କ' ରେ ନାହିଁ । (୧୩) 'ଖ' ରେ ଶାକିନୀଗଣ ଠାରୁ ସର୍ବମୟ ପର୍ଯ୍ୟନ୍ତ ନାହିଁ । (୧୪) 'ଖ' ରେ ଜୟ ଜୟ ଠାରୁ ନିରତ ପର୍ଯ୍ୟନ୍ତ ନାହିଁ

(୧୫) 'କ' ଆଧାନ (୧୬) 'ଖ' ରେ ନାହିଁ (୧୭) 'କ' ରେ ନାହିଁ (୧୮) 'ଖ' ବନ୍ଦକ

Digitized by srujanika@gmail.com

ସତ୍ତ (୧) ସ୍ୱରୂପ । ସନାତନ ସ୍ୱପ୍ରକାଶ । ସହଜାନନ୍ଦ । ସଚ୍ଚୀଦାନନ୍ଦ । ସ୍ୱପ୍ନାତ୍ମକ । ସ୍ୱପ୍ନାତୀତ (୨) । ସୂକ୍ଷ୍ମାତ୍ମକ (୩) । ସ୍ୱମ୍ନଭବ ଜଗତାଧିଷ୍ଠିତ (୪) । ସୁଲକ୍ଷଣ । ସ୍ୱପ୍ନାସ୍ୱପ୍ନ ବିବର୍ଜିତ । ସଦ୍‌ବୃତ୍ତି । ସର୍ବଥା ଗୁଢ ସ୍ୱରୂପ । ସକଳ ଭୁବନାଧିପ । ସକଳ ଭୂତାଧିପ (୫) । ସରସ୍ୱତୀ ବନ୍ଦିତ । ଶାକମ୍ଭରୀ ଗଣନାଥ । ସହସ୍ର ଯୁଗ ଧାରଣ । ସହସ୍ର ନାମ । ସହସ୍ର ମୂର୍ତ୍ତି ଧାରଣ (୬) । ସହସ୍ର ସହସ୍ର କର ସମକାନ୍ତି । ସ ୍ଁ ଭୁଜଧାରଣ । ସହସ୍ର ପାଦଉର ଭକ୍ତି ଜଘନ ଶ୍ରବଣ । ସହସ୍ର ନାସିକା । ସହସ୍ର କଳଶ ଧାରଣ । ସହସ୍ରାର ବିନ୍ଦୁ ନିବାସ । ଶାଳଗ୍ରାମ ଆଦି ଅର୍ଚ୍ଚିତ (୭) । ସମ୍ମୂଳ ଅନଳ (୮) ଅନଳ ନିବାସ । ସଚ୍ଚିତା ପତି ନନ୍ଦନୀ ଅର୍ଚ୍ଚିତ । ସଚ୍ଚିତାଂ ପତି ବଲ୍ଲଭ ପ୍ରିୟ । ସଚ୍ଚିତାଂ ନନ୍ଦନୀ (୯) ଶେଖର । ସଚ୍ଚିତାଂପତି ସେବିତ ପଦପଦ୍ମ (୧୦) । ସଂସାର ତାପ ନିବାରଣ । ସାକ୍ଷୀସ୍ୱରୂପ । ସୁକେଶୀ (୧୧) ପ୍ରିୟ । ସୁଲୋଚନାଗଣ ସେବିତ । ସପ୍ତଦ୍ୱୀପେଶ୍ୱର (୧୨) ସପ୍ତ ପାତାଳଧର । ସପ୍ତପୁଷ୍ପ ବିହାରୀ (୧୩) । ସପ୍ତନଦୀ ତାରଣ । ସପ୍ତବ୍ରହ୍ମାଣ୍ଡ ମଣ୍ଡିତ । ସପ୍ତଧାତୁ ବିଦାରଣ । ସପ୍ତଋଷି ବନ୍ଦିତ । ସପ୍ତାଶ୍ୱରଥ ମଣ୍ଡିତ । ସପ୍ତଫଣି (୧୪) ଶେଖର ଧର । ସପ୍ତାବରଣ ବିମୋଚନ । ସପ୍ତଲୋକ ବରପ୍ରଦ । ସପ୍ତଶୈଳ ନିବାସ । ସପ୍ତପୁର ଭେଦକ । ସଙ୍ଗ ବିବର୍ଜିତ । ସଙ୍ଗମସ୍ଥ । ସଂସାର ସାଗର ବିଚ୍ଛେଦନ । ସାରସ୍ୱତ ସାଙ୍ଗୋପାଙ୍ଗ ପଦକ୍ରମଣ । ସାରସ୍ୱତୀ ଶ୍ରୁତି ପଠନ (୧୫) ଶାକମ୍ଭରୀ ସୁରତ ପରିପୂର୍ଣ୍ଣ । ସାକ୍ଷାଚ୍ଚିଦ୍ ଘନ । ସାକ୍ଷାଦ୍ ବ୍ରହ୍ମ ସ୍ୱରୂପ । ସହସ୍ର ନାଡ଼ୀ ଚକ୍ର ଶୋଧନ (୧୬) । ସ୍ୱଭାବଜ ବୋଧ ସ୍ୱରୂପ । ଶୁକାଦି ଋଷି ବନ୍ଦିତ । ଶୁଦ୍ଧ ତେଜ । ଶିଶୁବେଦ । ସ୍ମିତ ବକ୍ତ୍ର ସନ୍ତତ । ସ୍ୱର ସ୍ୱରୂପ ନନ୍ଦିତ । ସ୍ୱର ବିଧ୍ୱଂସନା ସୁରେଶ୍ୱର । ସୁରେଶ୍ୱରୀଧର (୧୭) । ସୁରାସୁର ଆସନ । ସୁରଗଣ ଶତ୍ରୁ ନିସୂଦନ । ସୁଦର୍ଶନ ଧାରଣ ପ୍ରାଣ । ସୁନ୍ଦରୀଗଣସେବିତ ।

ଜୟ ଜୟ ଶିବ ଶମ୍ଭୋ ! ହଳାହଳଧର । ହୁଙ୍କାର ଚଣ୍ଡ । ହାକିନୀଗଣ ଈଶ୍ୱର ହିମାଦ୍ରି ନିବାସ । ହିମାଳୟନନ୍ଦନୀ ହୃଦୟ ଚନ୍ଦନ । ହିମାଳୟ ସଦନ । ହିମକର ସମ ଶୁକ୍ଳ । ହରଷ ସ୍ୱରୂପ । ହାର କଙ୍କଣ ଭୂଷଣ । ହିତକର । ହିତାହିତ ବିବର୍ଜିତ । ହରି ହୃଦୟପଦ୍ମ ବିଳସିତ । ହୁତାଶନ ସମ ନୟନ । ହୁତାଶନ ପ୍ରଦୀପ୍ତ (୧୮) । ହୁତାଶନ ସମ ଶରୀର । ହୁତାଶନ ଆସନ । ହୁତାଶନ ମଧ୍ୟ ସଂସ୍ଥିତ ।

---

(୧) 'କ' ରେ ସୁଖ ସ୍ୱରୂପ (୨) 'ଖ' ରେ ସଚ୍ଚୀଦାନନ୍ଦଠାରୁ ସ୍ୱପ୍ନାତୀତ ପର୍ଯ୍ୟନ୍ତ ନାହିଁ । (୩) (୪) 'କ' ରେ ନାହିଁ । (୫) 'ଖ' ରେ ଧଣତ (୬) 'ଖ' ରେ ନାହିଁ (୭) ସହସ୍ର ଯୁଗ ଧାରଣଠାରୁ ମୂର୍ତ୍ତି ଧାରଣ ପର୍ଯ୍ୟନ୍ତ 'ଖ' ରେ ନାହିଁ (୮) 'ଖ' ରେ କେବଳ ଶାଳ ଗ୍ରାମାଦିତ୍ୟ ଅଛୁ, ଅର୍ଚ୍ଚିତ ନାହିଁ । (୯) 'କ' ରେ ଅନଳ (୧୦) 'କ' ନନ୍ଦନ (୧୧)'କ' ଦ୍ରବ୍ୟ (୪) 'କ' କେଶପ୍ରିୟା (୧୨) 'କ' ସପ୍ତଦ୍ୱୀପେଶ୍ୱର (୧୩)ସପ୍ତ ସମୁଦ୍ର ବିହାର, (୧୪) 'ଖ' ସପ୍ତଫେନ, (୧୫) 'ଖ' ପଠକ (୧୬) 'କ' ବିଶୋଧନ (୧୭) 'ଖ' ରେ ନାହିଁ, (୧୮) 'ଖ' ରେ ନାହିଁ ।

Digitized by srujanika@gmail.com

ହୁତାଶନ ବନ୍ଧ । ହୁତାଶନ ବିବର୍ଜିତ । ହୁତାଶନମସ୍ତୁ । ହୁତଭୁକ୍ । ହୁତାଶନ ହବ ହାଟେଶ୍ୱର । ହବଭାବ ବୈରାଗକୃତ । ହବ ନିଧାନ । ହଂସ ସ୍ୱରୂପ । ହଂସମସ୍ତୁ । ହର ହର ହରଣର ହରଣ କୁଠାର କର । ହରଣ ଚର୍ମ ପରିହରଣ । ହରଣନୟନୀଗଣ ବର ପ୍ରଦ । ହଂସ ଯୁକ୍ତ କମଳ ନିଧାନ । ହଠଯୋଗେଶ୍ୱର । ହଠ ଯୋଗାଶ୍ରିତ । ହଠ ଯୋଗଗମ୍ୟ । ହଠ ଯୋଗ ବିହାର । ହାର ସମ ଶରୀର କାନ୍ତି । ହୟମେଧ ହବୀଶ୍ୱର । ହରଣ ହାରଣ ବିବର୍ଜିତ । ହାଡ଼ମାଳ ମଣ୍ଡନ ଶରୀର । ହର୍ଷାହର୍ଷ ବିହୀନ । ହିମାଳୟ ଈଶ୍ୱର (୧) । ହାନିଲଭ ବିବର୍ଜିତ । ହେମ ସମ କାନ୍ତି କଳେବର । ହେମାଙ୍ଗ ବିଭୂଷଣ । ହର ହର ଶବ୍ଦ ଉଚ୍ଚାରଣ । ହସ୍ତୀ ମୁଖ ହସ୍ତ ବେନି ଯୋଜିତ ସମ୍ମଖ୍ୟ । ହସ୍ତୀ ହସ୍ତ ସମଭୁଜ । ହସ୍ତୀ ଚର୍ମ ପରିଧାନ । ହରିହର ଏକାତ୍ମିକ (୨) । ହରଷ ହରନାଥ । ହିରଣ୍ୟ ଗର୍ଭ ବନ୍ଦିତ ଚରଣ । ହିରଣ୍ୟ ଗର୍ଭେଶ୍ୱର । ହିରଣ୍ମୟ । ହିମାଦ୍ରି କେଶ୍ୱର । ହସିତ ବଦନ ବିକଶିତ । ହରିବହ୍ନି ସେବିତ ଚରଣ ତଳ ।

ଜୟ ଜୟ କ୍ଷରାକ୍ଷର ବିବର୍ଜିତ । କ୍ଷୁ।ପଠ ଗଣ ବନ୍ଦିତ । କ୍ଷମାସାଗର । କ୍ଷମାଧର ଧାରଣ । କ୍ଷତି ବର । କ୍ଷେତ୍ରାଧିପ । କ୍ଷମାଧୀଶ । କ୍ଷେତ୍ରଜ୍ଞ ସ୍ୱରୂପ । କ୍ଷେତ୍ରାକ୍ଷେତ୍ର ବିବର୍ଜିତ । କ୍ଷରାକ୍ଷର ପରିପୂର୍ଣ୍ଣ । କ୍ଷରିତ ତ୍ରିଭୁବନକାରଣ । କ୍ଷୁଧାପିପାସାଦି ବିବର୍ଜିତାକ୍ଷତ୍ରି ସ୍ୱଧର୍ମ ସଂପୂର୍ଣ୍ଣ । କ୍ଷେତ୍ରେଶ୍ୱର । କ୍ଷେତ୍ରପାଳ ଗଣସେବନ । କ୍ଷୀରସମୁଦ୍ର ବିହରଣ । କ୍ଷୀର ସମ ଶୁକ୍ଳ ଶରୀର । କ୍ଷୀର ବାରିନିଧି ପ୍ରିୟ । କ୍ଷିରୋଦଶାୟୀ ପ୍ରିୟ । କ୍ଷଣିକ ବିଷୟ ରସ ବିବର୍ଜିତ । କ୍ଷୋଭ ନାଶନ । କ୍ଷିତିତଳ ସମ୍ବୃତ । କ୍ଷତ୍ରି ସ୍ୱାଶ୍ରୟ । କ୍ଷମାସାଗର । କ୍ଷମାନାଥ । କ୍ଷେତ୍ର ଅଷ୍ଟ ଲୋକନାଥ । ଛତ୍ରନିଃଶ୍ୱାସ ଗତଚର । କ୍ଷମାକର ଶିବ ଶିବ । ('ଖ' ପୋଥିରେ 'ହ' 'କ୍ଷ' ବର୍ଣ୍ଣ ବନ୍ଦନା ନଷ୍ଟ ହୋଇଯାଇଛି)

ଜୟ ଜୟ ଅନାଦିନାଥ ସ୍ୱରୂପ । ଅପରାଜିତ । ଅପ୍ରମେୟ ପ୍ରଭାବ । ଅକ୍ଷର ସ୍ୱରୂପ । ଅକ୍ଷର ଶରୀର । ଅକ୍ଷରା ଗୋଚର । ଅଗୋଚର ମହିମା । ଅନନ୍ତ ଜୀବଆତ୍ମା ସ୍ୱରୂପ । ଅନନ୍ତ ନାଗ ଭୂଷଣ । ଅଷ୍ଟକୁଳା ନାଗେଶ୍ୱର । ଅନଳ କଳ୍ପ (୩) । ଅର୍ଦ୍ଧ ଶରୀର । ଅଯୋନିଜାତକ ଅନ୍ତକ ଭୟ ନିବାରଣ (୪) । ଅଷ୍ଟ ଅଇଶ୍ୱର୍ଯ୍ୟଦାୟକ (୫) ଅନଙ୍ଗ ଅଙ୍ଗ ନିଧନ (୬) । ଅବୟ ଅପ୍ରପଞ୍ଚ । ଅବ୍ୟକ୍ତ । ଅଣ୍ଡାକାର ବ୍ରହ୍ମାଣ୍ଡଧର । ଅଷ୍ଟାଦଶ ବିଦ୍ୟା ନିଧାନ । ଅମଳ । ଅଘହର ସ୍ୱରୂପ । ଅମ୍ବିକା ଅଧରପଲ୍ଲବ ରସାମୃତ ପାନକ । ଅସ୍ଥି ପରିଧାନ (୭) । ଅଚଳବର ଶିଖରେ ନିବାସ । ଅମ୍ବୁଜ ନୟନ । ଅମ୍ବୁଜ ନୟନାମ୍ବିକର ଅମୃତ । ସରିତା

---

(୧) 'କ' ହର (୨) 'କ' ଲୋକନାତ୍ମକ (୩) 'ଖ' ରେ ଅନଙ୍ଗ ପଙ୍ଗେ (୪) 'ଖ' ରେ ଅନ୍ତକ ବିଦାରଣ (୫) 'ଖ' ରେ ଧର (୬) 'ଖ' ରେ ନାହିଁ (୭) 'କ' ରେ ପରିଧାପନ

Digitized by srujanika@gmail.com

ଧାର (୧) । ଆମର ଶସ୍ତ୍ରର । ଅମର ଶସ୍ତ୍ରଧର (୨) । ଅମରଗଣ ବନ୍ଦିତ । ଅଦ୍ୟ ଅକ୍ଷର (୩) । ଅଜର ସ୍ୱରୂପ (୪) । ଅପ୍ରକାଶ । ଅବ୍ୟୟ । ଅଭବ, ଭବ, ଅଷ୍ଟବସ୍ୱାଦି ଋଷି ବନ୍ଦିତ । ଅଶେଷ ବେଦ ଫଳପ୍ରଦ । ଅନନ୍ତସିଦ୍ଧ । ଅସ୍ଥିମାଳା ବିଭୂଷିତ । ଅସ୍ତାଚଳ ନିବାସ ।

ଜୟ ଜୟ ଆଶ୍ଚର୍ଯ୍ୟ ସ୍ୱରୂପ । ଆବ୍ରହ୍ମସ୍ତମ୍ବ ପର୍ଯ୍ୟନ୍ତେ (୫) ବ୍ୟାପକ । ଆସମୁଦ୍ରାନ୍ତ ପୃଥିବୀ ଈଶ୍ୱର । ଆରକ୍ତ କମଳ ଲକ୍ଷଣ (୬) ଆସନ । ଆଦିମଧ୍ୟାନ୍ତ ବର୍ଜିତ । ଆଧି ଭୌତିକ, ଆଧିଦୈବିକ, ଆଧ୍ୟାତ୍ମିକ ତାପନାଶନ । ଆତ୍ୟନ୍ତିକ ପ୍ରଳୟ ବିବର୍ଜିତ । ଆୟୁଷପ୍ରଦ । ଆୟୁଷ ସ୍ୱରୂପ । ଆକାଶସମ କାନ୍ତ । ଆଦିକନ୍ଦ । ଆଦିମୂଳ । ଆଦି ଅନ୍ତ ମଧ୍ୟ ବିବର୍ଜିତ । ଆଦି ଅନ୍ତମଧ୍ୟ ଚରପୁରୁଷ । ଆନନ୍ଦ ଘନ । ଆକାଶ ଭୂତ (୭) ଜୟ ଜୟ ଇନ୍ଦିରାପତି ବନ୍ଦିତ ଚରଣ । ଇତିହାସ ପୁରାଣ ସ୍ତୁତି ଗାୟନ । ଇନ୍ଦ୍ରାଜିତ ପଦକମଳ । ଇଡ଼ା ପିଙ୍ଗଳା ନାଡ଼ୀ ନିଧନ । ଇନ୍ଦ୍ରାଦି ଇନ୍ଦ୍ରପଦ ବର ଦାୟକ । ଜୟ ଜୟ ଈଶ୍ୱର ଗଣନାଥ । ଇତ୍ୟାଦି ଦୋଷ ଗୋଚର ଗୋଚର । ଇନ୍ଦ୍ରାଦି ସୁଖ ଦାୟକ—ଗୁଣ ସ୍ତୁତି ଗାୟନ । ଇନ୍ଦ୍ରୟ ଈଶ୍ୱର । ଈଶ୍ୱରାଦି ଈଶ୍ୱର ବରପ୍ରଦ । ଇନ୍ଦୁ ଅଙ୍କିତ ଅନଳ ଶେଖର ।

ଜୟ ଜୟ ଉମାପତି । ଉମା ଉତ୍ତୁଙ୍ଗ ପୀବର କୁଚଦ୍ୱୟ ପୀଡ଼ିତାଲିଙ୍ଗନ । ଊଙ୍କାର ସ୍ୱରୂପ । ଊର୍ମି ଧୂମ୍ର କୋଟି କାଳାଦିର ନିବାରଣ । ଉଜ୍ଜ୍ୱଳ ଚନ୍ଦ୍ର ସ୍ୱରୂପ । ଉତ୍ତୁଙ୍ଗ ମାଳାଭରଣ । ଉନ୍ମତ୍ତ ଭଞ୍ଜନ ନିରତ । ଉତ୍କୃଷ୍ଟ ଫଳପ୍ରଦ । ଉପତାପ ନାଶନ (୮) । ଜୟ ଜୟ ଉତ୍ତମ ପୁରୁଷ ବନ୍ଦିତ । ଉତ୍ତୁଙ୍ଗ ବରପ୍ରଦ । ଉଳଗ୍ନନାଥ । ଉଦୟାଚଳ ନିବାସ । ଉଦୟାଦିତ୍ୟ ସମକାନ୍ତି । ଉଦୟ ଅସ୍ତ ବିବର୍ଜିତ । ଉଚିତ ପୂଜା ଗ୍ରହଣ । ଉଲ୍ଲସିତ ବଦନ ସରୋଜ । ଉରେ ମଣ୍ଡିତ ଉତ୍ତମ ପନ୍ନଗ । ଊର୍ମିକୁଳ ନାଶନ । ଊର୍ମିମାଳା ସମ । ଉତ୍ତର ଦିଗ ନିବାସ ।

ଜୟ ଜୟ ଋଷିଗଣ ବନ୍ଦିତ ଚରଣ ଯୁଗ । ରୂପାତୀତ । ରୂପାରୂପ ବିବର୍ଜିତ । ଋଗ୍‌ବେଦାଦି ଗାୟନ । ରୂପ ଶୈଳ ବିଧାନ । ଋଷିଗଣ ଧ୍ୟାନ ପରାୟଣ । ରୁଚି ଆସନେ ନିର୍ବିକାରମ୍ (୯) ପୂଜିତ । ରୂପନନ୍ତକ ଅନନ୍ତ ମୂର୍ଦ୍ଧ୍ୱ । ଜୟ ଜୟ ରୂପଧୃକ୍ । ରୂପେଶ୍ୱର । ରୁଚିର କୁଣ୍ଡଳ ଧର । ଋତପାଳନ (୧୦) ଋଷିଗଣ ନାଥ । ଋଷିଗଣ ଧ୍ୟାନ ଆସନ ପରାୟଣ । ରୂପାରୂପଦ୍ୱୟ ଶୂନ୍ୟାତୀତ ସୁପ୍ରକାଶ । ରୂପାରୂପ ମଧ୍ୟ ବିବର୍ଜିତ । ରୂପାରୂପ ଅଶେଷ ବ୍ୟାପକ । ଜୟ ଜୟ ଲୁକ ବୁଦ୍ଧକ ଗୋଟିକ ଅଞ୍ଜନ ଲେପନାଦି ବିଦ୍ୟାପ୍ରଦ । ଜୟ ଜୟ ଲୁକ ବସ୍ତୁ ସ୍ୱ ବ୍ୟୟ ବିବର୍ଜିତ । ଲୁକ ମଧ୍ୟ ଅଗୋଚର ପୂରିତ । ଜୟ ଜୟ ଏ ବିଶେଶ୍ୱର ଭୁବନେଶ୍ୱର । ଏ ସର୍ବନ ମ ରୂପେଶ୍ୱର । ଏକାମ୍ର ବନବିହାର । ଏକାଦଶ ରୁଦ୍ର ସ୍ୱରୂପ ।

---

(୧) 'ଖ' ରେ ଶୃଙ୍ଗାଧାର (୨) 'କ' ସଶକ୍ତି ଧର (୩) 'କ' ଅଣ ଅକ୍ଷର (୪) 'କ' ଅକ୍ଷର ସ୍ୱରୂପ (୫) 'ଖ' ରେ ନାହିଁ (୬) କମଳେକ୍ଷଣ (୭) 'କ' ରେ ନାହିଁ । (୮) 'ଖ' ରେ ନାହିଁ । (୯) 'କ' ରେ ଋଷି ନିର୍ବିକାରମ୍ (୧୦) 'କ' ରେ ନାହିଁ

Digitized by srujanika@gmail.com

ଏକେ ଅଶେଷ ପୂରିତ । ଏକ ଶେଷ ନାଗାବୃତ୍ତ । ଜୟ ଜୟ ଐକନୈକ୍ୟ ବରଜିଁତ । ଐଶୋର୍ଯ୍ୟ ବରପ୍ରଦ । ଐରାବତ ପତ୍ର ବନ୍ଦିତ । ଐଶୋର୍ଯ୍ୟ ଲକ୍ଷ୍ମୀ ସେବିତ ପଦ କମଳ (୧) ଐନ୍ଦ୍ରଜାଲିକ ବଦୋଷ କୃତ ଜଗତ (୨) ।

ଜୟ ଜୟ ଓଷ୍ଠ ପୁଷ୍ଟାଶ୍ରୟ ଚତୁର୍ବେଦ । ଓଷ୍ଠପୁଷ୍ଟ ଆଶ୍ରିତ ଅନନ୍ତ ଦେବ । ଓତଃ ପ୍ରୋତଃ ଜଗତ ନିଧାନ ଜୟ ଜୟ ଔଷଧୀ ଶ୍ୱର ଶେଖର । ଔଷଧାମୃକ । ଔଷଧମନ୍ତ୍ର । ଔଷଧୀ ସ୍ୱରୂପ । ଔଷଧୀଶ । ଔଷଧ ଭକ୍ଷଣ । ଔଷଧ କରଣ । ଔଷଧ ସ୍ଥାପନ । (୩) । ଜୟ ଜୟ ଅଂ ସ୍ୱରୂପ।ଅଂ ବ୍ରହ୍ମପୂର୍ଣ୍ଣ ମାନ । ଅଂକାର ଉଂକାର ମକାର ସ୍ୱରୂପ । ଅଂକାର ଜଗଦୀଶ୍ୱର । ଅଂକାର ଆତ୍ମନ (୪) । ଅଂକାର ଅଶେଷ ପୂରିତ । ଅଂକାର ଅନାହତ ନାଦ (୫) ଅଂକାର ଚରିତ (୬) ଜୟ ଜୟ ଅକ୍ଷରାକ୍ଷର ପୂରିତ ଅବାକ୍ ମନସ (୭) ଗୋଚର । ଅରୂପ । ଅମଳ । ଅମନ । ଅନନ୍ତ ଐଶୋର୍ଯ୍ୟ ସୁଖପ୍ରଦ । ଅଚ୍ୟୁତ ଅନନ୍ତ । ଅର୍ଦ୍ଧିକା ଅର୍ଦ୍ଧାଙ୍ଗ ଶଙ୍କର । ଅର୍ଦ୍ଧମାତ୍ରାରେ ରହିତ । ଅର୍ଦ୍ଧମାତ୍ରା ପୂରିତ ।

ତ ସେ ଅଭିନବ ଚୈତନ୍ୟ ରୁଦ୍ରଗଣ ପଞ୍ଚାଶତ ବର୍ଣ୍ଣ ଭେଦରେ ଅନେକ ସ୍ତୁତି କରି ପାଦ୍ୱେ ପଡ଼ି ଶୋଇଲେ । ଏମନ୍ତ ଦେଖି ସେ ସଦାନନ୍ଦ ଦୟାର୍ଦ୍ର ଚିତ୍ତ ପ୍ରସନ୍ନାତ୍ମା ସଦାଶିବ ଅତ୍ୟନ୍ତ ପ୍ରସନ୍ନ ହୋଇ ଭୃତ୍ୟର ଶୁଦ୍ଧ ବୁଦ୍ଧି ଦେଖି, କାରୁଣ୍ୟ ବଚନ ଶୁଣି କୋମଳ କରି ବୋଲୁ ଅଛନ୍ତି ଅମୋଘ ଅମୃତ ବାଣୀ । ହେ ବତ୍ସ ! ହେ ଅଭିନବ ଚୈତନ୍ୟ ! ତୁ କମ୍ପା ହେଉଅଛୁ ଏଡ଼େ ଛନ୍ନ । ଯାହା ବୁଦ୍ଧିରେ ଏତେ କଥା ଥାଇ ସେ କାହିଁ ଆଉ ଦୁର୍ଗତି କ ଯାଇ । ଏବଂଭୂତ ଯଦ୍ୟପି ହୋଇଲୁ ଜ୍ଞାନ ତୋହୋର ପୂର୍ବ କଳ୍ପନା କର୍ମ କେ କରିବ ଆନ । ଜୀବର ସେ ଅଛନ୍ତି ଜନ୍ମ ମରଣ ଚକ୍ର । ଜୀବ ଶରୀରରୁ ତୁ ନୋହୁ ଅଭିନ୍ନ । ତୋହୋର ବାଞ୍ଛାଏ ହୋଇ ହୋଇଲା କର୍ମ । କର୍ମ କରନ୍ତେ ହୋଇଲା ଧର୍ମ, ଧର୍ମ ହୁଅନ୍ତେ ହୋଇଲା ଶ୍ରମ । ଶ୍ରମ ହୁଅନ୍ତେ ହୋଇଲା ଭ୍ରମ । ଭ୍ରମ ହୁଅନ୍ତେ ହୋଇଲା ତାପ । ତାପ ହୁଅନ୍ତେ ହୋଇଲା ପାପ । ପାପ ହୁଅନ୍ତେ ହୋଇଲା ବନ୍ଧ । (୮) ହେ ବତ୍ସ ! ଏହାକୁହିଁ ବୋଲି ପ୍ରାଳବ୍ଧ । ଏ ପ୍ରାଳବ୍ଧ କର୍ମ ଭୋଗରେ ହେଁ ଶେଷ ହୋଇ । ଏହା ବୈଦିକ ମତେ ଆମ୍ଭେ ଅଛୁ କହି । ତୁ ଏବେ ମୃତ୍ୟୁ ଲୋକେ ଜନ୍ମ ହୋଇବୁ ।

---

(୧) (କ) ପଦଦ୍ୱୟ (ଖ) ପଦତଳ
(୨) 'ଖ' ଅଧିକା—ଐରାବତ ପତ୍ର ସମୂହ ଜଡମ୍ବ ବନ୍ଦିତ
(୩) 'ଖ' ରେ ନାହିଁ ।
(୪) 'କ' ଓଁକାର ଗମ୍ୟ ।
(୫, ଅଂକାର ଅନ୍ତର ବାହ୍ୟ (ଖ)
(୬) 'କ' ଅଧିକା—ଓଁକାର ଶଙ୍କର ମତ ।
(୭) 'ଖ' ଅବାକ୍ ମନ ।
(୮) 'କ' ରେ ନାହିଁ ।

Digitized by srujanika@gmail.com

ଇନ୍ଦ୍ରସମ ଐଶ୍ୱର୍ଯ୍ୟ ଭୋଗ କରନ୍ତି । ପ୍ରାନ୍ତେ କୈବୋଲ୍ୟ ପାଇବୁ । ପଶ୍ଚିମ ସମୁଦ୍ର ତୀରେ, ମଧ୍ୟ ନଗରେ, ଉତ୍ତର ଭାଗେ, ହିମାଳୟ ଲାଗେ, ବଧୂମନ୍ଥର ନଗର ଶେଷେ, କାଞ୍ଚନକର ଦେଶେ, ପୃଥ୍ୱୀ ଦେବୀ ରସାରେ, ଅମୃତ ତରଙ୍ଗିଣୀ ନଦୀତୀରେ, ରତ୍ନ ଶୃଙ୍ଗାଦ୍ରି ଶିଖରେ ଚନ୍ଦ୍ର ଉଦୟ ଶୈଳ ଉପରେ ଏକ କଟକ ଅଛି । ସେ କଟକ ନାମ ବସୁଧା ମଣ୍ଡଳ । ଦୁଃଖ ଦରିଦ୍ର ଜରା ଅପମୃତ୍ୟୁ ଖଣ୍ଡନ । ତହିଁର ରାଜାର ନାମ ଅନଙ୍ଗ ପଦ୍ମାକର । ମନ୍ତ୍ରୀର ନାମ ବିବେକ ରତ୍ନାକର । ସେ ରାଜାର ପାଟ ମହିଷୀର ନାମ ଶଶୀପ୍ରଭା । ସେ ସମସ୍ତ ଗୁଣେ କରି ମହେନ୍ଦ୍ର ପ୍ରାୟେ ଧରଇ ଶୋଭା । ଯୁବା ଅବସ୍ଥା ତାହାର ହୋଇ ଅଛି ଶେଷ । ପୁତ୍ର ନଥିବାରୁ କରି ମୋତେ ଉତ୍ତକଲ ନିର୍ବିଶେଷ । ସେ ରାଜା ନ୍ୟାୟନିଷ୍ଠାଦିଗରେ ଗରିଷ୍ଠ । କୁଳେ ବରିଷ୍ଠ । ଧର୍ମବନ୍ତ ହୋଇ ପାଳଇ ସୃଷ୍ଟି । ନାହିଁ ବିପ୍ର ଅନ୍ୟାୟ ଦୃଷ୍ଟି । ବାଞ୍ଛାକଲେ ଇନ୍ଦ୍ର କରଇ ବୃଷ୍ଟି । ପୂର୍ବେ ଥିଲେ ଯେମନ୍ତ ରାଜା ଯୁଦ୍ଧେ ସେ ରାଜା ବୈଶ୍ରବଣରେ ପ୍ରାୟେ ସକଳ ମତେ ପୂର୍ଣ୍ଣ । ପୁତ୍ର ନଥିବାରୁ କରି ନୟନ ଅନବରତେ କରୁଥାଇ ଘୂର୍ଣ୍ଣ । ତ ସେ ଅତ୍ୟନ୍ତ ଶୁଦ୍ଧ ଚିତ୍ତେ, ଶାନ୍ତ ଓାର ନିମିତ୍ତେ ଅନେକ ଧର୍ମମାନକଲାଣି ବିଧି ପୂର୍ବକ ମତେ । ତ ସେ କେବଳ କେବଳ ଧର୍ମ । ସେ ଉପଗ୍ରହ ମର୍ଦ୍ଦନ । କୁଞ୍ଚିତ ଚାନ୍ଦ୍ରାୟଣ । ଅଧ ଊର୍ଦ୍ଧ୍ୱ ନିରୋଧ ! ଶୀତ ବାତ ତାପ ତ୍ରିକାଳ ସହନ ଫଳମୂଳାଶନ । ମନ୍ମଥ ଦହନ। ପବନ ପାନ । ଜିତ ଇନ୍ଦ୍ରିୟ । ସପତ୍ନୀ ଦୀକ୍ଷା ତୁଳା ମକର ଶେଷେ ବିଧିଧର୍ମ । ଊର୍ଦ୍ଧ୍ୱବାହୁ ଏକପଦସ୍ଥିତ । ପଞ୍ଚାଗ୍ନି ଶୋଷଣ । ଦୂର୍ବାରସ ବିଲ୍ୱ ଭକ୍ଷଣ । ନିଦାଘ ଶୀତ ଦହନ । ଅହର୍ନିଶି ହସ୍ତ କୁଶୋଦକେ ଆର୍ଦ୍ର । ଦେବ ପିତୃ ପର-ତୋଷଣ ତୃପ୍ତ । କୋଟି ଶାଳଗ୍ରାମ (୧) ଚକ୍ର । କୋଟି ଦ୍ୱିଜବର ଭୋଜନେ ପାଦ ସମାର୍ଜ୍ଜନ । ତୁଳସୀ ଭକ୍ଷଣ କରପକ୍ଷେ ଦୂର୍ବାରସ ଆହାର ।

ଯମ, ନିୟମ, ଆସନ, ପ୍ରାଣାୟାମ, ଆହାର, ପ୍ରତ୍ୟାହାର, ଧ୍ୟାନେ (୨), ଧାରଣା, ସମାଧି, ତୀର୍ଥ, ତୀର୍ଥାଟନ, ମହାବୃକ୍ଷରୋପଣ, ପୁଷ୍କରିଣୀ, ପ୍ରାସାଦ, ମଠ, ମଣ୍ଡପ, ଉଦ୍ୟାନ, ବାପୀ, କୂପ, ଦେବାଳୟ ସହସ୍ର ସହସ୍ର, ବିବିଧ ଦ୍ରବ୍ୟେ ଅତିଥି ଅଭ୍ୟାଗତ ଦୃଢ଼ ନିରତ, ଗୋରସ, ହବିର୍ଭାଗ ନିରତ, ସମ୍ୱତ୍ସର ଦୀକ୍ଷା, ଜଳସତ୍ରା ଅନ୍ନାଦି କରି ସକଳ ଧର୍ମ କଲା । ତ ସେ ସାତ୍ତ୍ୱିକ ଚିତ୍ତେ, ସନ୍ତତି (୩) ନିମିତ୍ତେ ସଂକଳ୍ପ (୪) କରି ବିବିଧ ଦାନ (୫) ଦେଲା । ତ ସେ କେବଳ କେବଳ ଦାନ ମାନନ୍ତ ଦେଲା । ଭୂମି, ଜଳ, ଅନ୍ନ, ବସ୍ତ୍ର, ଅଳଙ୍କାର, ହସ୍ତୀ, କୁଞ୍ଜର, କଳ୍ପତରୁ, ତୁଳା ପୁରୁଷ, ଯମଘଣ୍ଟା, ହେମଗିରି ମଣ୍ଡଳ ଅମୃତ ବିପୁଳ ତାର, ଛଳପାତ୍ର, ଛଳକାଞ୍ଚନ, ଦଧିଶଙ୍ଖ, କନକ ଗାବ, ସହସ୍ର କନ୍ୟାରତ୍ନ ଯୁକ୍ତ ପରିଣୀତ, ପଲଙ୍କ, ପାଦାସନ, କ୍ଷେତ୍ର, ପୁର, ଶାସନ, ନଗର, ପାଟଣା, ଗିରି, ନଦୀ, ବନ, ଘୃତକୁମ୍ଭ, ଗୁପ୍ତହିରଣ୍ୟ, ରତ୍ନରାଶି, ଶା... ଗ୍ରାମ, ସୁବର୍ଣ୍ଣ,

---

(୧) 'ଖ' ଶାଳଗ୍ରାମ ଶିଳା (୨) ଧ୍ୟାନେ—(ଖ) (୩) ପ୍ରଥା...ଥ—(ଖ)
(୪) କଲ୍ପନା—(ଖ) (୫) ଦାନ—(କ)

Digitized by srujanika@gmail.com

ଗୋ ଦୋହନ, କୃଷ୍ଣାଜିନ, ଗୋଷ୍ଠାଦ୍ଧ କରି ସମସ୍ତ ଦାନ ମାନନ୍ତ ଦେଲି ଦକ୍ଷିଣା ଯୁକତେ । ଏବେ ପୁତ୍ର କାମାର୍ଥେ ଯାଗ କରୁଅଛୁ ତନୟ ନିମିତ୍ତେ । ସେ ଯାଗ ଅବଶେଷ ସମ୍ପୂର୍ଣ୍ଣ ପ୍ରାପତ ହୋଇବା ନିମିତ୍ତେ ଯେଣେ ପୂର୍ଣ୍ଣାହୁତି ଦେବ ଆଜ । ମତେ ଭଜିବା ବେଳୁ କରି ତାହାର ସିଦ୍ଧି ହୋଇଲା ସକଳ କାର୍ଯ୍ୟ । ତୋହୋର ପରିଏ (୧) ଜଣେ ସନ୍ତୁ ପାଇ ନ ଥିଲୁ । ତେଣୁକରି ଆଜ୍ଞାଏ ତାକୁ ପିଠି ଆଇଥିଲୁ । ତାହାର ପୁତ୍ର ହୋଇ କରିରୁ ଅଖିଳ ବସୁନ୍ଧରର (୨) କରିବୁ ଭୋଗ । ତୋହର ପିତା ପଣକୁ ସେହି ସେ ଭାଜନ (୩) । ତ ସେ ରାଜା, ଧୀର ଧୈର୍ଯ୍ୟ, ଧାର୍ମିକ । ବ୍ୟବହାର ମାର୍ମିକ । ନିତ୍ୟାନିତ୍ୟ ଜ୍ଞାତା । ସୁନ୍ଦର ମର୍ଯ୍ୟାଦା (୪) ମହତ ଗୁଣେ ଗମ୍ଭୀର । ସତ୍ୟପରାକ୍ରମ ଧୀର । କ୍ଷମାଶାନ୍ତ କରଣ । ଅତୁଳ ଅକ୍ରୋଧୀ ତରୁଣ । ଅକ୍ରୋଧୀ ଦାତା ଶକତା ବକତା । ଶାସକ ନାଶକ କରିତା । କଲ୍ୟାଣ ଗ୍ରାମିକ ସତ୍ୟ । ବଶିଷ୍ଟ ବୈଷ୍ଣବ ନିତ୍ୟ । ସୁବୁଦ୍ଧି ସୁଚରିତ ଯୁକ୍ତ । ବେଦ ବେଦାଙ୍ଗ ତତ୍ୱଜ୍ଞ । ଯମ ନିୟମ ବ୍ରତ ଆସନ ପ୍ରାଣାୟାମ ନିୟତ (୫) । ସବିଶେ ନିର୍ମଳ ବୁଦ୍ଧି । ଚେତନା ଆତ୍ମାଦ ଶୁଦ୍ଧି । ବିବେକ ରଶ୍ମି ପ୍ରଚଣ୍ଡ । ଦୋଷ ଅନୁରୂପେ ଦଣ୍ଡ । ଦେଖିକବର ଷଡ଼ବିଧ ଧର୍ମ । ସକଳ ଜଗତରେ ଦୁସ୍ତର କର୍ମ । ନିରନ୍ତରେ ମୋତେ କରିଥାଇ ବନ୍ଦନା । ବିଷମ-ଶୀଳ ମେଦିନୀ ମଣ୍ଡଳେ ଶୁଣି ଧର୍ମଧ୍ୱଜ ବାନା ।

ଇତ୍ୟାଦିକରି ସକଳ ଧର୍ମ କର୍ମ କହିଲୁ ଯେମନ୍ତ । ସେ ରାଜାହାଦେ ଅଛଇ ଏମନ୍ତ । ହେ ଅଭିନବ ଚୈତନ୍ୟ । ତୁ ଏବେ ଏଠାରୁ ଯା । ଦଣ୍ଡେ ହେ ନ ରହ । ସେ ରାଜା ଗୃହ ମହିଷୀ ଶଶିପ୍ରଭା ନାମ ରାଣୀ ଗର୍ଭରେ ଯାଇ ରହ । କିଛି ଦିନ ଦୁଃଖ ସହ । ସେ ମାୟା କନ୍ୟାକୁ ହିଁ ଆଜ୍ଞା ହୋଇଲା । ସେ ଧର୍ମଧ୍ୱଜ ରାଜାର ଦୁହିତା ହୋଇବାକୁ ଗଲା । ତଦନନ୍ତରେ (୬) ସେ ପୁରୁଷ ଈଶ୍ୱର (୭) ଅଜ୍ଞା ପାଇ, ପାର୍ବତୀଙ୍କ ନମସ୍କାର ହୋଇ ପଦ୍ମ ଆସନେ ବସିଲା । ଚତୁରଷ୍ଟୀ ପ୍ରକାରେ ଯୋଗର ମଧ୍ୟେ ତାରକ ଧାରୁ ନାମ ଯୋଗ କଲ୍ପିଲା । ତହିଁ ଇଡ଼ା, ପିଙ୍ଗଳା, ଶୁଷୁମ୍ନା । ଅଲମ୍ବୁଷା, କୌଷିଣୀ, ଗାନ୍ଧାରୀ, ହସ୍ତିଜିହ୍ୱା, ଶଙ୍ଖିନୀ, ସହିତ ନବ ନାଡ଼ୀରେ ନାଗ, କୂର୍ମ, କୃକଳକ, ଦେବଦତ୍ତ, ଧନଞ୍ଜୟ, ଅପାନ, ବ୍ୟାନ, ସମାନ, ଉଦାନ, ଏ ନବ ନାଡ଼ୀ ସ୍ଥିତକଲା । କୁଣ୍ଡଳିନୀ ନାମ ଶକ୍ତିକି ଓଁକାର ବର୍ଣ୍ଣେ ହୃଦସ୍ଥ ପଦ୍ମେ ସ୍ଥିତକଲା । ପ୍ରାଣ ପବନ ସମ କରି ଭିତରେ ଭରିଲା । ତ୍ରିକୋଣାଗ୍ନି ମଣ୍ଡଳରୁ ଦୀପ ଶିଖା ପ୍ରାୟେକ ହୋଇ ପୂରିଲା । ସେ ସ୍ଥାନର ମଧ୍ୟେ ଏକ ଶିଖା ଏକ ଉଠିଲା । ସେ ଶିଖା ଆସି କୁଣ୍ଡଳିନୀ ନାମ ନାଡ଼ୀକି ଛୁଇଁଲା । ଛୁଇଁବା ମାତ୍ରକେ କୁମ୍ଭାର ଯେମନ୍ତ ଚକେ ମୃତ୍ତିକା ବସାଇ, "ସେ ଯାହା କଲ୍ପଇ ତେମନ୍ତ ହୋଇ," ସେହି ମତ ହୋଇ, ସେହି ଶକ୍ତି ନାଭି ପଦ୍ମେ ବୁଲଇ । ଦକ୍ଷିଣା ବର୍ତ୍ତିକେ ହୋଇ ସେ ଶକ୍ତି ବୁଲାନ୍ତେ, ତହୁଁ ଅନଳ ଶିଖା ଭ୍ରମର ଗୁହର, ଗୋଲ ହାଟ, ତ୍ରିବେଣୀ ଭୂମି ଶଙ୍ଖିନୀ ଫଟି ପୂର୍ଣ୍ଣଚନ୍ଦ୍ର ବିମ୍ବରେ

(୧) ପ୍ରାଏ—(ଖ)
(୨) ବସୁନ୍ଧରା—(ଖ)
(୩) ଯୋଗ୍ୟ—(ଖ)
(୪) ମର୍ଯ୍ୟାଦ—(ଖ)
(୫) ଯଯ — (ଖ)
(୬) ତଦଅନ୍ତରେ— (ଖ)
(୭) ଉତ୍ତମ—(କ)

Digitized by srujanika@gmail.com

ଲାଗିଲା । ତାହା ଘୃତ ଖଣ୍ଡରେ ଅଗ୍ନି ଲାଗି ଯେମନ୍ତ ତରଳ ହୋଇ, ସେହିମତ ହୋଇ ସେ ଚନ୍ଦ୍ର ମଣ୍ଡଳ ଶରୀର ଯାକେ ବ୍ୟାପିଲା । ଶକ୍ତି ବୁଲନ୍ତେ ପବନର ବଳେ ଦେହ କର ଚରଣ ନାସିକାଦି ସହିତ ହୋଇ ଉଦେ ହୋଇ, ଦେହ ପିଣ୍ଡାକାର ପରି ସଭ ପ୍ରାୟେକ ହୋଇ, ଧାତୁ ପିଣ୍ଡେକ ହୋଇଲା । ଏବଂଭୂତ ଯୋଗକୁ ତାରକଧାତୁ ଯୋଗ ବୋଲି । ସେ ଧାତୁ ପିଣ୍ଡରେ ଆତ୍ମା ସେ ସକଳ ଇନ୍ଦ୍ରିୟମାନଙ୍କ ଜୀବ ପ୍ରାଣ ସହିତ କରି ଦେନନ୍ତି । ସେ ସେ ମନ ପବନ, ଧାତୁ ପିଣ୍ଡକୁ ଘେନି ବଜ୍ରମିଳି । ଯେମନ୍ତ ପବନର ସଂଗତେ ଗନ୍ଧଥାଇ, ସେହିମତ ଧାତୁ ପିଣ୍ଡର ମଧ୍ୟେ ସମସ୍ତେହେଁ ଥାନ୍ତି ।

ତ ଏବଂଭୂତ ପ୍ରକାରେ ସେ ଶଶିପ୍ରଭା ନାମ ରାଣୀଙ୍କ ଗର୍ଭରେ ପୁରୁଷ ସଙ୍ଗ କରି ଅମୋଘଧାତୁ ପଶିଲା ଯାଇ । ଚନ୍ଦ୍ରପଲଙ୍କେ ମନ୍ମଥ ରାଜାର କନ୍ଦର୍ପଂଶୀ ବନ୍ଧହେଲା ପ୍ରାୟେକ ହୋଇ । ସେ ରାଜା ଭୁଜପଞ୍ଜରେ ରାଣୀ ଥିଲା ଶୋଇ । ତ ଯେତିକ୍ଷଣି ଚମକି ଉଠିଲା ଅତ୍ୟନ୍ତ ଭୟ ପାଇ । ସେ ରାଣୀ ଚହଲନ୍ତେ ରାଜା ହୋଇଲା ଦୁଃଖୀ । କରି ପଲ୍ଲବେ ଆଶ୍ୱାସି ପଚାରିଲା କି ଭୟେ ପାଇଲୁ ଗୋ ଶରଦ ଚନ୍ଦ୍ରମୁଖି । ରାଣୀ ବୋଇଲେ ମୁଁ ଦେଖିଲି ସ୍ୱପ୍ନ । କେଶବାସ ମୋହର ହୋଇଛୁ ଯତ୍ନ । ବାତ ପିତ୍ତ ଶ୍ଳେଷ୍ମାଙ୍କର ଭୟ ପ୍ରବଳ ହିଁ ନାହିଁ । ଚନ୍ତା ଛନ୍ଦ ଭ୍ରମ (୧) ମୋର ଉମ୍ଭ ପ୍ରସାଦେ (୨) ଥିବ କାହିଁ । ରାଜା ବୋଇଲେ ଗୋ ଶରଦ ଚନ୍ଦ୍ରମୁଖି । ରାଜ୍ୟ ପାହିବାକୁ ଆଉ ଘଡ଼ିଏକ ଅଛି । ରାଜ୍ୟ ପାହିଲେ ଏହା ବିଚାରିବା ଗୋ ମୃଗାକ୍ଷ । ସେ ରାଜା ରାଣୀ ଶୁଚମନ୍ତ ହୋଇ ଆନ (୩) ସୁପାଠରେ ବସିଲେ । କୃଷ୍ଣଚରିତ କଥାରେ ସେ ଅବଶେଷ ରାଜ୍ୟ ବଞ୍ଚିଲେ (୪) ।

ଏଥି ଉତ୍ତାରେ ରଜନୀ ପ୍ରଭାତ ହୋଇଲା । ପ୍ରାଚୀ ଦିଗାଙ୍ଗନା ଅନୁରାଗବନ୍ତୀ (୫) ହୋଇଲା । ମୁକ୍ତାହାର କାତର ଲାଗିଲା । ଦୀପାବଳୀ (୬) ମାନେ ପାଣ୍ଡୁର ଦିଶିଲେ । କୁହର କନ୍ଦର (୭) ମାନଙ୍କରେ ଅନ୍ଧକାର ପଶିଲା । ଜଳ ଦୁହିତାକୁ କୁକ୍କୁଟିମା ଉଠ ଉଠ ବୋଲି ବୋଇଲା । ତାମ୍ବୂଳରସ ପିତା ଲାଗିଲା । ନାୟିକାଙ୍କ ସ୍ତନ ମଣ୍ଡଳ ଉଷ୍ମ ଛାଡ଼ିଲା (୮) । ଗଗନରୁ ତାରା ଖସିଲା । ଚକ୍ରବାକ ହସିଲା (୯) । ବନ୍ଧୁଜ (୧୦) ଯୋଗୀ ଶରୀର ସାଧନେ ଲାଗିଲେ । ଉଦୟ ଆହାରୀ ଯୋଗୀମାନେ ପବନ ଅଭ୍ୟାସ ମଧ୍ୟ କରି ନଗ୍ରେ ଅନ୍ନ ଦେ ବୋଲି ଭିକ୍ଷା ମାଗିଲେ । ପ୍ରାଣାୟାମ ଅଭ୍ୟାସି ସନ୍ୟାସୀ ପ୍ରାଣାୟାମ ସାଧନେ ଲାଗିଲେ । କୈରବନ୍ତ ରମଣ କରନ୍ତା (୧୧) ଭ୍ରମରମାନେ ପଦ୍ମ ବନକୁ ଚମିଲେ । କୁମୁଦ ପରାଗେ ଧୂସର ହୁଅନ୍ତା ଭ୍ରମରନ୍ତ ଦେଖି ପ୍ରାତ (୧୨) ବାତେ କମ୍ପନ୍ତା ପଦ୍ମମାନେ ସନ୍ଧ୍ୟେ ନାହିଁ ନାହିଁ କଲା ପ୍ରାୟେକ ଦିଶିଲେ । ଉଲ୍ଲୁକ ପକ୍ଷିଏ ଅନ୍ଧକାର ସ୍ଥାନାନ୍ତରେ ପଶିଲେ ।

---

(୧) 'କ' ରେ ଭ୍ରମ ଦାହ ଚନ୍ତା (୨) 'କ' ରେ ନାହିଁ (୩) 'କ' ଆସନ (୪) 'କ' ରେ କୃଷ୍ଣଚରିତେ ଉଜାଗର ହୋଇଲେ (୫) 'କ' ରାଗବନ୍ତୀ (୬) 'ଖ' ରେ ଦିଗଆଳୀ (୭) ରେ ବିବର (୮) 'ଖ' ରେ ନାୟକ ନାୟିକାର ସ୍ତନ ଉଷ୍ମ ଲାଗିଲା (୯) 'କ' ରେ ନାହିଁ । (୧୦) 'କ' ରେ ବୌଦ୍ଧଚାତ (୧୧) 'କ' ରେ କରନ୍ତା (୧୨) 'ଖ' ରେ ଶୀତ

Digitized by srujanika@gmail.com

ଶଙ୍ଖଧ୍ୱନ ମାନେ ଚତୁର୍ଦ୍ଦିଗେ ପୂରିଲେ । କାମୁକା ସ୍ତ୍ରୀମାନେ ଭର୍ତ୍ତାଙ୍କୁ ନବଡ଼ ଆଲିଙ୍ଗନେ ଛାଡ଼ିଲେ (୧) । ଶ୍ଳୈଷ୍ମେ ବିଷାଦ ହୋଇଲେ (୨) ଦଣ୍ଡପାଶିଏ ଶୋଇଲେ । ଚନ୍ଦ୍ରମା ଧୂସର ହୋଇଲେ । ରତ୍ତ ଶାର୍ଦ୍ଦୂଳ ବନ୍ଧରେ ଉତ୍କର୍ଷ ଶୃଙ୍ଗାର ଭୋଗକଲ (୩) ପ୍ରିଶ ବଦନ ପ୍ରାସ୍ବେକ ଶୋଢ଼ିଲେ । କୁକ୍‌କୁଟେ ରଡ଼ିଲେ । ଗୋପାଳେ ଗୋଷ୍ଠକୁ ଗମିଲେ । ଶିଶୁ ପୋଏ ପାଠ ପଠନକୁ ଚାଟଶାଳୀକୁ ଗମିଲେ । ଅଭିସାରିକା ସ୍ତ୍ରୀମାନେ ନିଜ ମନ୍ଦିରେ ମିଳିଲେ । ଧାରଣାବନ୍ଧ ଯୋଗୀ ସୂର୍ଯ୍ୟ ଧାରଣା ଛାଡ଼ି ଚନ୍ଦ୍ର ଧାରଣାରେ ଲଗିଲେ । ଅନ୍ଧକାର ସ୍ଥାନକୁ ପିଶାଚମାନେ (୪) ଗମିଲେ । ପର୍ବତ ମସ୍ତକମାନେ ପ୍ରସର ଦଶିଲେ । ମେରୁଶିଖରେ ଦେବତାମାନେ ଆସ୍ଥାନେ ବସିଲେ । ଅପସରାମାନଙ୍କର ସ୍ତନକମଳ ମୃଗମଦ ପତ୍ରାବଳିରେ ଅଙ୍କିତ ହୋଇଲ । ହୃଦସ୍ଥକୁ ଗୃଦ୍ଧି ଗନ୍ଧର୍ବମାନେ ଲଜ୍ଜା ପାଇ ଆକାଶଗଙ୍ଗାପାଣି ଘେନ ଧୋଇଲେ । ନାଉକା ପଥେ କଣ୍ଡେଆର ଗମିଲେ (୫) । ଗୋପାଳେ ଗୋଗୋଷ୍ଠକୁ ଚଳିଲେ । ସାଧକମାନେ ଆଖଡ଼ାରେ ମିଳିଲେ (୬) ଅବଧୀକୃତ ପାନ୍ଥ କାନ୍ତାମାନେ ଦିନ ଗଣି ତା ଗାର କାନ୍ଥରେ କାଟିଲେ । (୭)

ଏମନ୍ତ ପ୍ରକାରେ ରଜନୀ ପ୍ରଭାତ ହୋଇବାରୁ ରାଣୀ ଉଠି, ଶୁଚିବନ୍ତ ହୋଇ, ସୂର୍ଯ୍ୟଙ୍କୁ ଅର୍ଘ୍ୟ ଦେଇ, ରାଜା ସଙ୍ଗତେ ଆଇ (୮), ପଣ୍ଡିତମାନଙ୍କୁ ବସାଇ (୯), ରାଣୀ ଅନ୍ତବାଡ଼ ଉହାଡ଼ ଦେଇ, ସ୍ୱପ୍ନ କଥ କହୁଅଛନ୍ତି । ତ ସେ ପଣ୍ଡିତମାନେ କେମନ୍ତ ଅଟନ୍ତି । ସେ ସମସ୍ତେହେଁ (୧୦) ଷୋଡ଼ଶ ବୃଦ୍ଧ ଅଟନ୍ତି । ଷୋଡ଼ଶ ବୃଦ୍ଧ କସ କସ (୧୧) ଗୁରୁ ବୃଦ୍ଧ (୧୨) । ଜ୍ଞାନ ବୃଦ୍ଧ । ବସୁ ବୃଦ୍ଧ । ପ୍ରଭାବ ବୃଦ୍ଧ । ଆଗ୍ଭର ବୃଦ୍ଧ । ଧ୍ୟାନ ବୃଦ୍ଧ । ବିଦ୍ୟା ବୃଦ୍ଧ । ଶାନ୍ତି ବୃଦ୍ଧ । ଶ୍ରୀ (୧୩) ବୃଦ୍ଧ । ବନସ୍ଥ ବୃଦ୍ଧ । ତ୍ୟାଗ ବୃଦ୍ଧ । ନୀତ ବୃଦ୍ଧ । କଲ୍ୟାଣ ବୃଦ୍ଧ । ସତ୍ୟ (୧୪) ବୃଦ୍ଧ । ତପ ବୃଦ୍ଧ । ଲସ୍ପ ବୃଦ୍ଧ । ବିଗ୍ଭର ବୃଦ୍ଧ ଇତ୍ୟାଦ କରି ଷୋଡ଼ଶ ବୃଦ୍ଧେ ଯୁକ୍ତ । ସଂଯମ ଭୁକ୍ତ (୧୫) । ଜୀବନ ମୁକ୍ତ । ବଚନ ଯୁକ୍ତ । ସ୍ୱକର୍ମ ଭକ୍ତ । ବିଷୟ ତ୍ୟକ୍ତ । ପ୍ରତିଗ୍ରହତ୍ୟକ୍ତ । ଶାସ୍ତ୍ର ଭକ୍ତ (୧୬) । ଧର୍ମାସକ୍ତ । ବାସୁଦେବ ଭକ୍ତ । ଅମୋହେ ଲିପ୍ତ (୧୭) ସଦ୍ଗୁରୀକ୍ଷିତ । ମଣ୍ଡଳ ଦୀକ୍ଷିତ (୧୮) । ଜ୍ଞାନେ ବ୍ୟାପୃତ (୧୯) । ସର୍ବଶାସ୍ତ୍ରଦର୍ଶୀ । ସର୍ବଦା ହର୍ଷୀ । ଶିବ ବକ୍ଷ୍ମ (୨୦) ଦର୍ଶୀ । ପରମହଂସରସୀ । ବିଗ୍ଭର କର୍ଷୀ । ସ୍ୱାତ୍ତ୍ୱିକ ସରସୀ । ସୁଧାବାକ୍ୟ ବରଷିବାରେ କରି ସେ ପଣ୍ଡିତମାନେ ଦେବତାମାନଙ୍କର ପ୍ରାସ୍ବେକ

(୧) 'ଖ' ଭାଙ୍ଗିଲେ (୨) 'କ' ରେ ପାଇଲେ (୩) 'ଖ' ରେ ଭୋଗ ନାହିଁ (୪) 'ଖ' ରେ ପିଶାଚେ (୫) 'କ'ରେ ନାହିଁ (୬) 'ଖ' ରେ ନାହିଁ ଗୋଲେ ଠାରୁ ମିଳିଲେ ପର୍ଯ୍ୟନ୍ତ (୭) 'କ' ରେ କାନ୍ଥରେ ଗାରମାନ କାଟିଲେ, (୮) 'ଖ' ସହିତ କରି (୯) 'କ' ରେ ବୃଦ୍ଧମାନଙ୍କୁ ବସାଇ ଅଧିକା । (୧୦) 'ଖ' ରେନାହିଁ (୧୧) 'କ' ରେ କେବଣ କେବଣ ବୃଦ୍ଧ । (୧୨) 'କ'ରେନାହିଁ ।(୧୩)'ଖ' ରେ ସିଦ୍ଧି (୧୪) 'ଖ' ରେ ଶ୍ରୀ (୧୫) 'କ' ଜୀବଧୂକ୍ତ (୧୬) 'ଖ' ଶୁଦ୍ଧ ଯୁକ୍ତ । (୧୭) 'ଖ' ଅମୋଘେଲିପିତ(୧୮) 'ଖ'ରେ ରକ୍ଷିତ । (୧୯) 'ଖ'ବ୍ୟୋପିତ । (୨୦) 'ଖ' ରେ ମନ୍ମଥ

Digitized by srujanika@gmail.com

ବଣୁଥାନ୍ତି । ପୁନରପି ସେ ପଣ୍ଡିତମାନେ କେମନ୍ତ ଅଟନ୍ତି । ଆକୃତ ଶୁକ୍ଳ, ବଟଜ ବୃକ୍ଷ, ପୀତବସ୍ତ୍ର ପିନ୍ଧ (୧), ଶିଖା ଭସ୍ମ ଧୂଳି କପୋଳେ କାଟନ୍ତେ କେମନ୍ତ ପ୍ରାସ୍ୱେକ ମଣି । ତ୍ରିଗୁଣ ଜ୍ଞାନାଗ୍ନିରେ ପୋଡ଼ି ଭସ୍ମକଲୁ ବୋଲି ସେ କପୋଳେ ଉଦେକଣ ସେ କହୁ ଅଛନ୍ତି କ । ତ ସେ ପଣ୍ଡିତମାନଙ୍କ ହସ୍ତରେ କୁଶ ମୁଦ୍ରିକାମାନେ କେମନ୍ତ ଶୋଭା ପାଉଅଛନ୍ତି ଟିକ । ସେ ହସ୍ତକୁ ବିଷୟ ଗ୍ରହଣ ନକୃତ୍ୟାର୍ଥେ (୨) ବନ୍ଧନ କରି ଅଛନ୍ତି କ । ସେ ନବଗୁଣ ପଇତାମାନେ (୩) କେମନ୍ତ ଶୋଭା ପାଉଅଛନ୍ତି କ ନବଧା ପ୍ରକାରେ । ଅବିଦ୍ୟା, ସୁରତ । ସୁଷୁପ୍ତି, ଅନ୍ତ ପରିସନ୍ତେ ଗୁଣମୟୀ, ଅବିଦ୍ୟା ଶୀର୍ଣ୍ଣ (୪) ହୋଇ, କଷ୍ଟ କଷ୍ଟେ ଦାସ ପ୍ରାସ୍ୱେ ହୋଇ, ସେ ଲଗି ଅଛନ୍ତି କ ? ପଣ୍ଡିତ-ମାନେ ଅବିଦ୍ୟା ବଳକୁ ବର୍ଣ୍ଣିଭେଦେ ସେ ରଖିଅଛନ୍ତି କ । ପଣ୍ଡିତମାନେ ପୁଣି କେମନ୍ତ ଅଟନ୍ତି । ହସ୍ତମାନଙ୍କରେ ଶୁକ୍ଳ ସ୍ଫଟିକର ଜପାମାଳମାନେ ଚଳନ୍ତେ (୫) ଏମନ୍ତେ ମଣିଲୁ (୬)· ମନ୍ତ୍ରୋଣି (୭) ହୋଇ ଜନ୍ମ ମରଣ ସଂସାରକୁ ସ୍ମରଣ କରି ଭ୍ରମାଉ ଅଛନ୍ତି କ ?

ଏମନ୍ତ ଭାବ ଦର୍ଶାଉଅଛନ୍ତି କ ? ଆହୁରି ହିଁ ପ୍ରଭାବ । ଏତେ ଜନ୍ମ ଆମ୍ଭେ ସର୍ବ ପରିତ୍ୟାଗ କରି ତପ ଆଶ୍ରେ କଲେ ହେଁ ପୁନଃ ପୁନଃ କରି ଅବିଦ୍ୟାର ବଳେ ଜନ୍ମ ମରଣ ହଉଅଛି (୮) । ଏମନ୍ତ ବିଗ୍ଭରି ସେ ଜନ୍ମ ଜନ୍ମମରଣ ଗଣନା କରୁ ଅଛନ୍ତି କ ? ତ ସେ ଜାତପୁର ଭାବୁ କରି ଅମଳ ରୁଦ୍ରାକ୍ଷ ତୁଳସୀ ପୁତ ଗୁନ୍ଥା (୯) ଶୁଦ୍ଧ ସ୍ଫଟିକ ପ୍ରବାଳାଦି କରି ମାଳା ମାନେ ବକ୍ଷସ୍ଥଳ ପର୍ଯ୍ୟନ୍ତେ ଲମ୍ବନ୍ତେ କେମନ୍ତ ଶୋଭା ପାଉ-ଅଛନ୍ତି କ ? ସ୍ତମ୍ଭନ, ମୋହନ, ବଶ୍ୟ, ଉଚ୍ଚାଟନ, ଉଲ୍ଲକ, କୁହୁକ ଗୋଟିକା । ଅଞ୍ଜନ, ପାଦୁକା, ଲେପନ, ରସାୟନ, ଇନ୍ଦ୍ରଜାଲ ନବ ନାଟକ, ଜାଲାନ୍ଧ ମତ, ମନ୍ମଥ, ଖଡ଼୍ଗ ପାଠ, ନବାଦ୍ୟ, ପର ପୁର ପ୍ରବେଶ, ସର୍ବଙ୍କ ଯୋଗ୍ଣୀ ସାଧନ, ସର୍ବାକର୍ଷଣ, ଡାକନ୍ୟାଦ କରି ଷଡ଼୍ଶକ୍ତି (୧୦) ସାଧନ, ମଣି ମନ୍ତ୍ରୌଷଧି, ଯକ୍ଷକରଣ । ସଙ୍ଗୀତ ସାହିତ୍ୟ । କଳପ ଲେପ ରସାୟନାଦି କରି, ସମସ୍ତ ବିଦ୍ୟାମାନନ୍ତ ମାଳ ମାଳ କରି ଗୁନ୍ଥି ହୃଦୟରେ ଲମ୍ବାଇଲା ପ୍ରାସ୍ୱେକ କରି ଶୋଭା ପାଉଅଛନ୍ତି କ ? ତ ସେ ପଣ୍ଡିତ-ମାନେ ସମସ୍ତେ ହେଁ ଜିତେନ୍ଦ୍ରିୟ, ଯଥାଭୂକ୍ତ, ସୁ ସୁହୃଦ, ଶୁଦ୍ଧାନ୍ତଃକରଣ, ଧ୍ୟାନ ପରାୟଣ, ସତ୍ୟବାକ୍, ମଧୂର ଭାଷୀ । ସର୍ବାନନ୍ଦ, ଶମ ଦମାଦି (୧୧), ଗୁଣେ ନଗତ । ସମସ୍ତ ସମସ୍ୟା ସାଧନେ ସମର୍ଥ (୧୨) । ମଧୂର (୧୩) ଭାଷୀ । ସର୍ବଦା ଧୈର୍ଯ୍ୟ । ସଦା ସଦୟ ।

(୧) 'ଖ' ରେ ପୀତବସ୍ତ୍ରମାନ ଅଛନ୍ତି । (୨) 'କ' ରେ ନବର୍ତ୍ତିବା ଅର୍ଥେ (୩) 'କ' ରେ ପବନ (୪) 'କ' ରେ କ୍ଷୀଣ (୫) 'କ' ରେ ପ୍ରଚଳ ହୁଅନ୍ତେ (୬) 'କ' ରେ କେମନ୍ତ ପ୍ରାସ୍ୱେକ ମଣିଲୁ । (୭) 'ଖ' ମନ୍ତ୍ରୋମନ୍ତ୍ର ମନ୍ତ୍ରୋଣି (୮) 'ଖ' ରେ ବିଷଇଛି (୯) 'କ' ରେ ପୁଷ୍କର (୧୦) 'ଖ'ରେ ଷଟ୍‌ଦଳ (୧୧) 'କ' ରେ ସମନସ୍ୱମାଦି (୧୨) 'ଖ'ରେ ସଣ୍ଡ ସମାଧି ସଧନେ ପୂର୍ଣ୍ଣ । (୧୩) 'ଖ' ରେ ଶୀତଳ ।

Digitized by srujanika@gmail.com

ଶୁଭ୍ର ସ୍ୱରୂପ । ସମସ୍ତ ଶାସ୍ତ୍ରମାନଙ୍କର ପାରକୁ ଯାଇଅଛନ୍ତି । ତପ କର୍ମ । ତପ ଅଭ୍ୟାସ (୧) । ବୈରାଗ୍ୟ ସମ୍ପନ୍ନ । ତତ୍ପରାର୍ଥ ତାତ୍ପର୍ଯ୍ୟ ତତ୍ତ୍ୱଜ୍ଞାନ ନିର୍ଣ୍ଣୟ କରି ସମସ୍ତ ଜ୍ଞାତା ଅଟନ୍ତି । ତ ଏବଂଭୂତ ପ୍ରକାରେ ଯେଉଁ ପଣ୍ଡିତମାନେ ତାହାଙ୍କ ସମ୍ମୁଖରେ, ସେ ଶରଦ ଚନ୍ଦ୍ର ବଦନୀ, ନୀଳୋତ୍ପଳନୟନୀ, ମତ୍ତ ଗଜେନ୍ଦ୍ର ଗାମିନୀ, ତୁଙ୍ଗ ପୀନସ୍ତନୀ, ମଧ୍ୟ ସଂକ୍ଷୀର୍ଣ୍ଣୀ, ଲାବଣ୍ୟବର୍ଣ୍ଣିନୀ, ମନ୍ମଥାନନ୍ଦ ବର୍ଦ୍ଧିନୀ, ସର୍ବସୁଲକ୍ଷଣୀ, ନିତମ୍ବିନୀ, ସୁରାସୁରମୋହିନୀ, ପୀତ କୌଷେୟ ବାସିନୀ, କ୍ରୀଡ଼ାରସ ଜନନୀ, କାମାଗ୍ନି ସନ୍ଦୀପନୀ, ଖେଦାର୍ଣ୍ଣବ ତରଣି, ଈଷଦ୍ଧାସିନୀ, ସର୍ବମନୋହାରଣୀ, ସୁବାସ ଲପନୀ, କୋକିଳାବଚନୀ, କଳହଂସଗାମିନୀ, ପାଟ ମହିଷୀ ଶଶିପ୍ରଭାନାମେ ରାଣୀ ଅନ୍ତଃପାଟ ଉହାଡ଼େ ଥାଇ ନବରତ୍ନେ ନିର୍ମାଣ ସୂର୍ଯ୍ୟର ପ୍ରାୟେକ ଦୀପ୍ତମୟ ମନ୍ଦିରେ ଥାଇ ସ୍ୱପ୍ନର କଥା କହୁଅଛନ୍ତି ।

ହେ (୨) ପଣ୍ଡିତମାନେ ତୁମ୍ଭଙ୍କୁ କରୁଅଛୁ ନମସ୍କାର । ସାବଧାନ ହୋଇ ଶୁଣିମା ମୋହର ସ୍ୱପ୍ନର ବେଭାର । ଅରୁଣ ଉଦୟକାଳେ, ମନ୍ଦ ମନ୍ଦ ନିଦ୍ରାର ସୁଖ ବେଳେ, ସହଜାଜ୍ଞାନରେ ମୁହିଁ ଦେଖିଲି ସ୍ୱପ୍ନ । କେଶବାସ ମୋହର ହୋଇଥିଲା ଯତ୍ନ । ବାତ ପିତ୍ତ ଶ୍ଳେଷ୍ମାଙ୍କର ପ୍ରବଳ ନାହିଁ । ଭ୍ରମ (୩), ଚିନ୍ତା, ଛନ୍ନ ଭ୍ରମ ଅବା ମୋହର ଥିବ କାହିଁ । ଏମନ୍ତ ସମୟରେ ଅଦ୍ଭୁତ ହୋଇ ତେଜୋମୟ (୪) ପୁରୁଷେକ ଆସି ମୋହର ଗର୍ଭେ ପଶିଲା (୫) । ତ ସେ ପୁରୁଷ କେମନ୍ତ ଅଟଇ । ଈଶ୍ୱର ଶରୀର ବର୍ଣ୍ଣ ଶୁଦ୍ଧ ସ୍ଫଟିକର ପ୍ରାୟେ କାନ୍ତି । ରକ୍ତକୁମୁଦ ପ୍ରାୟେକ ଦୁଇ ନୟନର ଭ୍ରାନ୍ତି । ଭ୍ରୂଲତା ଭ୍ରମର ପଂକ୍ତି (୬) ପ୍ରାୟେକ କୁଟିଳ । କାଳନ୍ଦୀର ତରଙ୍ଗ ପ୍ରାୟେକ ଜଟିଳ । ସମ୍ପୂର୍ଣ୍ଣ ଚନ୍ଦ୍ରମା ପ୍ରାୟେକ ବଦନ (୭) ମଣ୍ଡଳ । ଗୁରୁ ଶୁକଙ୍କର ପ୍ରାୟେ ବିରାଜୁ ଅଛୁ କର୍ଣ୍ଣେ ବେନି କୁଣ୍ଡଳ । ପ୍ରଳମ୍ବ ନୀଳ କୁଟିଳ (୮) ଜଟାସମୂହ ହୋଇଅଛୁ ମୁକୁଳ । ଫଣୀମଣି ଦୀପ୍ତ ତେଜ ଏକ ମହା ସର୍ପେକ ଧରିଅଛୁ (୯) ତହିଁ ଅତ୍ୟନ୍ତ ଶୁକଳ । ସର୍ବାଙ୍ଗେ ଭସ୍ମ ବିଭୂଷଣ । ଧୂମ୍ର ମେଘ ଫଟି ଦିଶିଲା ସୂର୍ଯ୍ୟ ଚନ୍ଦ୍ର ଜ୍ୟୋତ୍ସ୍ନାକୁ ହିଁ କରୁଅଛି ଦୂଷଣ । ପୁଣ୍ଡରୀକ ଚର୍ମ ପରିଧାନ କରି ଅଛୁ କଟିତଟେ । ସିଂହସ୍କନ୍ଧ ମଣ୍ଡଳ (୧୦) କରିଅଛି ଯୋଗପଟେ । ବୃହତ୍ ସ୍କନ୍ଧ, ମହାବାହୁ, ବିଶାଳାକ୍ଷ, ଦୀର୍ଘକର୍ଣ୍ଣ (୧୧) ସମ ନାସିକା ଅଗ୍ରକୁ ଦୀର୍ଘ (୧୨) ସଞ୍ଚ ଗମ୍ଭୀର (୧୩) ସପ୍ତରକ୍ତାଦି କରି ସମସ୍ତ ଲକ୍ଷଣେ ସମ୍ପୂର୍ଣ୍ଣ । ତାହାର ନେତ୍ର ପଦ୍ମ ଦୁଇଗୋଟି ହୋଇଅଛୁ ଜ୍ଞାନାନନ୍ଦେ ପୂର୍ଣ୍ଣ (୧୪) ।

---

(୧) 'ଖ'ରେ ଉପସଙ୍ଗର (୨) 'କ'ରେ ହେତତ୍ତ୍ୱସେବତ (୩) 'ଖ' ରେ ଉର୍ମି (୪) 'କ' ରେ ଯୋଗମୟ (୫) 'କ' ରହିଲା (୬) 'କ' ଶ୍ରେଣୀର (୭) 'କ' ଶୋଭିତ ଶ୍ରୀମୁଖ ମଣ୍ଡଳ (୮) 'କ' ପ୍ରଳମ୍ବ ନୀଳ ସ୍ଫଟିକ ପ୍ରାୟେ ଜଟା ସମୂହ ହୋଇଅଛି ସରଳ (୯) 'କ' ଧରୁଅଛି । (୧୦) 'ଗ' ଦଣ୍ଡମନ (୧୧) 'ଖ' ତନୁ (୧୨) 'ଗ' ରେ ନାହିଁ (୧୩) 'ଖ' ରେ ପଟ ଗମ୍ଭୀର । (୧୪) 'ଖ' ଧର୍ମ ।

Digitized by srujanika@gmail.com

ତ ଏବଂଭୂତ ପ୍ରକାରେ ସେ ମହାତ୍ମା (୧) ମୋହର ଉଦରେ ପଶନ୍ତେ ଅଦ୍‌ଭୁତ ହୋଇ ଚମକ (୨) ଉଠିଲି ଅତ୍ୟନ୍ତ ଭୀତେ । ଏବଂଭୂତ ପ୍ରକାରେ ଶଶିପ୍ରଭା ନାମ ରାଣୀ ସ୍ୱପ୍ନକଥା କହି ତୁନି ହୋଇଲା । କି ସେ ମନମଥ ରାଜାର ପଣବାଦନରୁ ଗୁଣ ଗୁଟିଲି ପ୍ରାପ୍ତେକ ହୋଇ ସ୍ଥିର ହୋଇଲା । ସେ ପଣ୍ଡିତମାନେ ରାଣୀର ବଚନ ଚନ୍ଦ୍ର (୩) ଝରିଲା ଅମୃତଧାରା ପ୍ରାପ୍ତେକ କରି (୪) ସ୍ୱପ୍ନକଥା ଶ୍ରବଣ ପଥେ ପାନ କଲେ । କରି ସେ ବିଦ୍ୟାଶକ୍ତ (୫) । ଶାସ୍ତ୍ରବିଶାରଦ ପଣ୍ଡିତମାନେ ଆଗତ ଭବିଷ୍ୟ (୬) ପୁରାଣ ସ୍ୱପ୍ନାଧ୍ୟାୟ ଶକୁନ୍ୟ ଜ୍ୟୋତିଷ ସିଦ୍ଧାନ୍ତ ଦୀକ୍ଷା ପ୍ରହଣ କରି (୭) ସମସ୍ତ ଶାସ୍ତ୍ର ଦେଖି କହିଲେ, ବୋଇଲେ ହେ ରାଜନ ! ତୋହର ଧନ୍ୟ ଧନ୍ୟ । ପୂର୍ବର ତପସ୍ୟାବଳ କେ କରିବ ଆନ । ତୋହର ପୁଣ୍ୟବଳେ ଦୁସହ କର୍ମମାନ ତ କଲୁ (୮) । ବୁଦ୍ଧି କ୍ଷେତେ କର୍ମ (୯) ଭୂମିରେ ଧର୍ମ ତରୁ ଏକ ରୋପିଲୁ । ସେ ବୃକ୍ଷର ମୂଳ ବିଷ୍ଣୁସେବା । ଶିଖର ରୁଦ୍ରସେବା (୧୦) । ସ୍କନ୍ଧ ଅନ୍ତଃକରଣ ଶୁଦ୍ଧି । ଶାଖା ସମ ଦମ (୧୧) ବୃଦ୍ଧି । ପଲ୍ଲବ ବିବେକ ବିସ୍ତାର । ପତ୍ର ଯଜ୍ଞାଦି ପ୍ରକାର । ବକଲ କ୍ଷମାଦି ଗୁଣ । ରସ ଦୟାଦ୍ରେ ନିପୁଣ (୧୨) । ଓଦୋର ସ୍ୱାଦାସ୍ୱରେ ତୃଷ୍ଣ (୧୩) । କୋଟ ଗୁହରେ ଶ୍ରେଷ୍ଠ (୧୪) । ସ୍ୱ ଦାରା ଯେ ପୁଷ୍ଟ ହୃଦେ ବାସୁଦେବ ମୁଦ୍ରିତ (୧୫) । ଏବଂଭୂତ ପ୍ରକାରେ ଧର୍ମତରୁ ଫଳ ଆସି ହୋଇଲା ଉଦିତ । ଏ ମହାଦେବୀର ଗର୍ଭେ ରୁଦ୍ରଅଂଶେ (୧୬) ମହାଯୋଗେନ୍ଦ୍ର ପୁରୁଷେକ ଆସି ରହିଲା । ଜଠର ନରକ ସହିଲା । ତୋହର ତପରେ ଭକ୍ତ ରହିଲା (୧୭) ଧର୍ମଶାସ୍ତ୍ର କହିଲା । ଯଜ୍ଞର ଫଳ ହୋଇଲା (୧୮) । ଯୋଗ ଭ୍ରଷ୍ଟେ ରହିଲା । ଜ୍ୟୋତିଷ ମତହିଁ ବୋଇଲା । ଏ ରାଣୀର ଗର୍ଭହିଁ ଶୋହିଲା (୧୯) । ଶୋଭନ ଗୁଣେ ମୋହିଲା । କଳୁଷ ମନନ୍ତ ଧୋଇଲା । ଅଶୁଭ ସ୍ୱପ୍ନ ନୋହିଲା (୨୦) ଏମନ୍ତ ବୋଲି ସେ ପଣ୍ଡିତ-ମାନେ ବୋଇଲେ ।

ହେ ଦେବ ! ସେ ସକଳ କଳାରେ ନିପୁଣ । କାମଦେବଙ୍କୁ ସମ । ସମସ୍ତ ଶତ୍ରୁମାନଙ୍କୁ ଜିଣିଲେ ହେଁ ନ ପାଇବ ଶ୍ରମ । ଆସମୁଦ୍ରାନ୍ତ ପୃଥ୍ୱୀ ପାଳିବାକୁ ହୋଇବ କ୍ଷମ । ସାକ୍ଷାତ ମୂର୍ତ୍ତିବନ୍ତ ହୋଇ ହୋଇବ ଧର୍ମ । ନିରନ୍ତରେ କରିବ ଆନନ୍ଦିତ କର୍ମ । ଯୋଗବଳେ କରି ଈଶ୍ୱରଙ୍କୁ ସମ । ଏବଂଭୂତ ପୁତ୍ରେକ ତୋହର ହୋଇବାକ ଜନ୍ମ ।

---

(୧) 'କ' ରେ ମହାବାହୁ ମହାତ୍ମା (୨) 'ଖ' ଅଦ୍‌ଭୁତେ ଚହକି ଚଥାଇଁ (୩) 'ଖ' ବଚନ ରନ୍ଧ୍ର (୪) 'ଖ' ରେ ହୋଇ (୫) ବନ୍ଧ ବିଦ୍ୟାଶକ୍ତି ସମର୍ପିତ । (୬) 'ଖ' ଆଗମ (୭) 'କ' ରେ ନାହିଁ (୮) 'ଖ' ତୁମ୍ଭେ ମହତ କର୍ମ କଲୁ (୯) 'କ' ରେ ନାହିଁ (୧୦) 'ଖ' ସିଥ ଦଶଦ୍ରେ ଦେବା (୧୧) 'କ' ରେ ସମାପ୍ତ (୧୨) 'ଖ' ଶିଖ ଦୟାରେ ନିର୍ଗୁଣ (୧୩) 'ଖ' ରେ ନାହିଁ । (୧୪) 'ଖ' ରେ ଗୃହସ୍ଥ ଶ୍ରେଷ୍ଠ (୧୫) 'କ' ତୃପିତ ପୁଷ୍ଟ ବାସୁଦେବ ହୃଦସ୍ଥ ପଦ୍ମେ ମୁଦ୍ରିତ । (୧୬) 'ଖ' ବ୍ରହ୍ମାଂଶେ (୧୭) 'କ'ରେ ତୋହର ତ ପର ଭକ୍ତ ବଢିଲା (୧୮) 'ଖ' ରେ ନାହିଁ (୧୯) 'କ' ସହିଲା (୨୦) ଅତ୍ୟନ୍ତ ଶୁଭ ସ୍ୱପନ ହୋଇଲା

Digitized by srujanika@gmail.com

ସେ ପଣ୍ଡିତମାନେ ଏମନ୍ତ ବୋଲି ସ୍ୱପ୍ନର କଥା କହି ମହା ପୂଜା ପାଇଲେ । ରାଜାରାଣୀଙ୍କ ପାଦ ବନ୍ଦନ (୧) ଦେଇ ସେ ପଣ୍ଡିତମାନେ ଯେ ଯାହାର ମନ୍ଦିରକୁ ଗଲେ । ଏଥି ଉତ୍ତାରେ ରାଜା (୨) ଏମନ୍ତ ବିଚାରିଲେ । ଏକଥା ହିଁ ହେଉ, ଆନ ନୋହୁ । ଏଥିରେ ବିପ୍ର ଶାନ୍ତ ନିମନ୍ତେ ଅନେକ ଦାନ ଦେଲେ । ଏମନ୍ତେ ସେ ରାଣୀ ଦିନେ ଦିନେ ପାଇଲା ଗର୍ଭବାସର ଦୁଃଖ । ପାଣିରୁ ବହୁତ ବେଳ ଉଭରେ (୩) ଆଣିଲା ନଳିନୀର ପ୍ରାୟେକ ଦିଶିଲା ମୁଖ । ତାହାର କାନ୍ତି ହୋଇଲା ବିବର୍ଣ୍ଣ । ହୃଦୟ ହୋଇଲା କ୍ଷୀଣ । ଉଦର ହୋଇଲା ପୂର୍ଣ୍ଣ (୪) । କଳା ପଡ଼ିଲା ପୀନସ୍ତନ । କସେ ଭୃଙ୍ଗେ ବେଷ୍ଟିତ ଦର ବିଦଳିତ ପଦ୍ମ । ତାହାର ନଳୋତ୍ପଳ ପରି (୫) ଅତି ସ୍ନିଗ୍ଧ ଚକ୍ଷୁର କଳା ଅତି ସିଠୁଆ ଦିଶିଲା । ହସ୍ତଗୁଳି ପଡ଼ିଲାକ କଙ୍କଣ ବଳା । ଏକା ଗ୍ରେଣ୍ଟିଆ ହୋଇଲା କଟି ମେଖଳା । ଖୋଷି ନ ପାରିଲା ଏ ପୁଷ୍ପମାଳା । ତାହାର ଅଧର ରଙ୍ଗ ତୁଟିଲା । ଯେସନ୍ତେ ବନ୍ଧୁଳି ପୁଷ୍ପ ପାଉଁଶେ ଲେଟିଲା (୬) । ତାକୁ ଗର୍ଭବାସ ମତ ବଡ଼ ଜ୍ୱର ଘୋଟିଲା (୭) । ନିସ ପାସ୍ତେ ଗ୍ଳଲନ୍ତେ ଫୁଟିଲା । ଶୀତଳ ଠାଆକୁ ମନ ଇଚ୍ଛିଲା (୮) । ତାର କଣ୍ଠ ବେଣ୍ଟ ଲଭ ଲେଉଟିଲା ।

ଏମନ୍ତେ ସେ ପରମ ଧାତୁ ସ୍ୱରୂପ ରୁଦ୍ରଗଣ ଗର୍ଭର ଭିତରେ ଭୂମି ଯେନ ରହିଲା । ଯେସନ୍ତେ ଲବଣ୍ୟ ସରୋବର ଭିତରେ ପଦ୍ମବୀଜ ସଞ୍ଚରିଲା । ଜଠରାଗ୍ନିରେ ଯେସନ୍ତେ ଜୀର୍ଣ୍ଣ ନ ହୋଇ ଚର୍ମ ପୁଟିକା ମଧ୍ୟରେ ହୋଇ । ଜାଲ୍ ପଟଳ ଶଯ୍ୟା (୯) କରି, ବାସୁଦେବଙ୍କୁ ହୃଦପଦ୍ମେ ଧରି, ଅନ୍ଧାର ପୁଟିକାକୁ ଆଶ୍ରେକରି, କୁଣ୍ଡଳିନୀ ମୁଖ ଆଶ୍ରେକରି, ପରମଜ୍ଞାନ ସ୍ମରି, ନବମାକାଶ ଧାରଣା କରି(୧୦), ପରମ ଜ୍ୟୋତି ଯେ ବ୍ରହ୍ମ ତାକୁ ଚିନ୍ତା କରି ନସ୍ୱକୃତ ଶରୀର କଲିଲ । ଆପ୍ୟାନ (୧୧) ପବନକୁ ଆହାର କଲା । ବାହ୍ୟାଭ୍ୟନ୍ତରେ ନିରନ୍ତର ପରମ ଜ୍ୟୋତିର୍ମୟ (୧୨) କରି, ଶବ୍ଦ ସ୍ୱରୂପାତ୍ମତକୁ ପୂର୍ଣ୍ଣକରି (୧୩) ଏକ ଜୀବାତ୍ମାତ ସମଭ୍ରମ କରି, (୧୪) ଜୀବନକୁ ପୃଥକ୍‌କରି, ଈଶ୍ୱର ଅଙ୍ଗରେ କଲିଲ । ଏମନ୍ତେ ସେ ଅମୋଘ ବୀଜକୁ ରାଣୀ ସହି ନପାରି ଆକୁଳ ହୋଇଲା । ବ୍ରହ୍ମତେଜ ବହିଲା ଦୁଃଖ ସହିଲା । ଭସ୍ତେ ପଶିଲା । ଶ୍ୱେତବର୍ଣ୍ଣ ଦିଶିଲା । ଶିର ବୁଲିଲା (୧୫) ଲୋମଲତିକା (୧୬) ଫୁଲିଲା । ଆହାର ତୁଟିଲା । ଗ୍ଳଲନ୍ତେ ଫୁଟିଲା । ଛର୍ଦ୍ଦି ମିଳିଲା । ଶ୍ୱାସ ବଳିଲା । କେଶବାସ ଖସିଲା (୧୭) ଭେଡ଼ାକେ ବସିଲା । ଔଷଧ ଗ୍ରଣ୍ଡକଲା । ଉଦର କଣ୍ଡୂକଲା । ନିରନ୍ତରେ ଉଁ ନହୋଇ (୧୮) ଶୋଇଲା ।

---

(୧) 'କ' ପାଦରବ (୨) 'କ' ଆନନ୍ଦ ହୋଇ (୩) 'କ' ତୋଳି (୪) 'ଖ' ରେ ନାହିଁ (୫) 'ଖ' ରେ ନାହିଁ (୬) 'ଖ' ର ସେ ପାଂଶେ ବନ୍ଧୁଳି ଫୁଟିଲା । (୭) 'କ' ତାହାକୁ ଗର୍ଭଗତ ଜ୍ୱର ଘୋଟିଲା (୮) 'କ' ଗଟିଲା । (୯) 'ଖ' ସେଜ୍ଜା (୧୦) 'କ' ଧାରଣାକୁ ଜାଣା କରି । (୧୧) 'ଇ' ଅପାନ (୧୨) 'ଖ' ଜ୍ୟୋତିକରି (୧୩) 'କ' ଶବଦ ଶରୀର ତତ୍ତ୍ୱକୁ ପୂର୍ଣ୍ଣ କରି (୧୪) 'କ' ଏକ ଜୀବ ଆତ୍ମା ସମଭ୍ରବ (୧୫) 'ଖ' ଦୋଳିଲା (୧୬) 'ଖ ଲଳିତା (୧୭) 'ଖ' ରେ ନାହିଁ (୧୮) 'ଖ' ରେ ନାହିଁ ।

Digitized by srujanika@gmail.com

ଉଜ୍ଜ୍ୱଳ ହୋଇଲା । ଦେହ ପାନପତ୍ର ମର୍ଦ୍ଦିଲା ପ୍ରାୟେକ ଦିଶିଲା । କୋକିଳ ବଚନ ଘର୍ଘର ଶୁଭିଲା ।

ରାଣୀର ଏମନ୍ତ ଆକୁଳ ଦେଖି ରାଜା ଅତ୍ୟନ୍ତ ଆକୁଳ (୧) ହୋଇ, ପରମ ଶୁଚିବନ୍ତ ହୋଇ, ଏକାନ୍ତ ସ୍ଥାନରେ, ସ୍ଫଟିକ ମଣ୍ଡପରେ ଦେବତା ସ୍ଥାନରେ ବସି, ରାଜା ମାନସିକ ପୂଜା କରୁଅଛି । କେମନ୍ତ କେମନ୍ତ ପ୍ରକାରେ କରୁଅଛି । ପ୍ରଥମେ ସାତଲୋକର ତଳେ (୨), ଅତ୍ୟନ୍ତ ରସାନ୍ତଲେ (୩ ନିର୍ମଳ ଚିଦାକାଶେକ କଳ୍ପିଲା । ସେ ଆକାଶେ ବିଷ୍ଣୁ ସମେତ କରି କୋଟି ସୂର୍ଯ୍ୟ ସଂକାଶ ଜ୍ୟୋତିଏ କଳ୍ପିଲା । କଳ୍ପି କରି ତଳାତଳ ଆକାଶ ଶୁଦ୍ଧ କଲା । ତହିଁ ଉପରେ (୪) କାରୁଣ୍ୟ ଜଳେକ କଳ୍ପିଲା । ସେ ଜଳ ଅମୃତ ନିର୍ମିତ କରି କଳ୍ପିଲି (୫) । ବାସୁଦେବର ରୋମମୂଳେ ଅମୃତ ସମ (୬) ସ୍ୱେଦକଣିକା ପ୍ରାୟେ କରି କଳ୍ପିଲା (୭) । ଜଳ ସ୍ନାନ କରି ସନ୍ଧ୍ୟା କଲା (୮) । ତଦନ୍ତରେ ସ୍ୱେଦ (୯) ଜଳରେ ଅନେକ ବ୍ରହ୍ମାଣ୍ଡମାନ ବସନ୍ତି । ବିଷ୍ଣୁରୁ ସର୍ବ ରୋମକୂପରୁ ସର୍ବଦା ସ୍ୱେଦମାନ ଝରେ (୧୦) । ତହିଁ ନାଭିପଦ୍ମେକ କଳ୍ପିଲା । ସେ ବାସୁଦେବର ନାଭିପଦ୍ମ ମଧ୍ୟରୁ ମକରନ୍ଦ କଣିକା ସ୍ରାବକ କରି କାରୁଣ୍ୟ ଜଳରେ ବ୍ରହ୍ମାଣ୍ଡ ଧୋଇଲା (୧୧) । ଏ ବ୍ରହ୍ମାଣ୍ଡର ନାମ ପଦ୍ମଭବ । ଏ ବ୍ରହ୍ମାଣ୍ଡ ତଳରେ ମହାଜଳ ଉପରେ କମଠେକ କଳ୍ପିଲା (୧୨) । ସେ କମଠକୁ (୧୩) ପରମେଶ୍ୱର କରି କଳ୍ପି ଧ୍ୟାୟିଲା । ସେ କମଠକୁ କେମନ୍ତ କଲା । ବଜ୍ର ପ୍ରାୟେକ ତାହାର ପୃଷ୍ଠକଠିନ । ସ୍ନିଗ୍ଧ ବୈଦୂର୍ଯ୍ୟ ମଣିର ପ୍ରାୟେକ ଶରୀର ଅଟଇ । ପ୍ରଥମ ଉଦିତ ଆଦିତ୍ୟ ପ୍ରାୟେକ ଚକ୍ଷୁ ଦୁଇ । ଜିହ୍ୱା ବିଜୁଳିର ପ୍ରାୟେକ ଦିଶଇ । ନଖମାନ ଅର୍ଦ୍ଧଚନ୍ଦ୍ର ପ୍ରାୟେକ । ପେଟ ହରିତବର୍ଣ୍ଣ (୧୪) ମେଘର ପ୍ରାୟେକ । ଅଚଳ କମଳାକୁ ( ୧୫ ) କମଠାକୃତି ଛନ୍ଦେ ନିୟୋଜି ପୂଜା କଲା । ସେ କମଠ ନିଶ୍ୱାସେ କରି ସାତ (୧୬) ଲୋକ ରହିଅଛି । ଏମନ୍ତ ସେ ମହାପୀଠ (୧୭) କମଠର ଆଠ ପାରୁଶରେ ଆଠଗୋଟି କୁଞ୍ଜର କଳପିଲା । ସେହି (୧୮) କୁଞ୍ଜରମାନେ କେମନ୍ତ ଅଟନ୍ତି । କେ (୧୯) ହିମାଳୟ (୨୦) ପର୍ବତର ପ୍ରାୟେକ । ଏକ କାଞ୍ଚନ ପର୍ବତର ପ୍ରାୟେକ । କେ ନିର୍ଧୂମ ବହ୍ନି (୨୧) ପ୍ରାୟେକ । କେ ଶୁଦ୍ଧ ସ୍ଫଟିକ ପ୍ରାୟେକ । କେ ସନ୍ଧ୍ୟା ମେଘର ପ୍ରାୟେକ । କେ ମାଣିକ୍ୟ ମଣିର ପ୍ରାୟେକ । କେ ଧୂମ୍ରବର୍ଣ୍ଣ । ସମସ୍ତେହେଁ ଚତୁର୍ଦ୍ଦନ୍ତି । ତ କେ ମେରୁ ପର୍ବତ ପ୍ରାୟେକ । ସମସ୍ତେ ଏପରି ଗଳୁଦ୍ରାଂସ୍ଥା (୨୨) । ହିମାଳୟ ପର୍ବତରୁ ଗଙ୍ଗା ଝରିଲା ପ୍ରାୟେକ ମଦଧାର (୨୩) ଝରୁଅଛନ୍ତି ।

---

(୧) 'କ' ବିଷାଦ (୨) 'ଖ' ପ୍ରଥମେ ସାତ ଲୋକ ସାତ ତଳେ । (୩) 'ଖ' ରେ ନାହିଁ । (୪) 'ଖ' ତଦୁପରି (୫) 'ଖ' ରେ କଳ୍ପିଲା ନାହିଁ, (୬) 'ଖ' ରେ ନାହିଁ (୭) 'ଖ' ରେ ନାହିଁ (୮) 'ଖ' ଜଳ ସ୍ନାନେ କରି କଳ୍ପି ଶୁଦ୍ଧ କଲା । (୯) 'ଖ' ରେ ସେଦ । (୧୦) 'ଖ' ସର୍ବାଙ୍ଗେ ମୁଁ·····ମରି । (୧୧) 'କ' ରେ ଥୋଇଲା (୧୨) 'କ' ଏକ କମଠେ । (୧୩) 'ଖ' ରେ କୁ ନାହିଁ (୧୪) 'ଖ' ରେ ବର୍ଣ୍ଣର । (୧୫) 'କ' ସେ କମଠକୁ (୧୬) 'ଖ' ସତ୍ୟ (୧୭) 'କ' ମହାପୃଷ୍ଠ (୧୮) 'ଖ' ମେରୁ (୧୯) 'ଖ' ରେ ନାହିଁ (୨୦) 'କ' ମଲୟ (୨୧) 'ଖ'ରେ ନାହିଁ (୨୨) 'ଖ' ରେ ନାହିଁ (୨) 'ଖ' ମଦଧାର ।

Digitized by srujanika@gmail.com

ଏବଂଭୂତ କରି ଅଠରଜ କଳ୍ପିଲ୍‌ । ଗଜବନ୍ଧ ଧାରଣାରେ କରି, ଋଷିଛନ୍ଦ ଅଧିଷ୍ଠାତ୍ରୀ ସହିତେ ଗନ୍ଧ ପୁଷ୍ପ ସହିତେ ଧୂପଦୀପ ନଇବେଦ୍ୟ ଦେଇ ପୂଜା କଲ୍‌ । ବସ୍ତ୍ର (୧) ଅଲଙ୍କାର ଦେଇ ଯେ କମଠ ଉପରେ ଆଠ ହସ୍ତୀମାନଙ୍କର (୨) ହସ୍ତମାନ ରୁଣ୍ଡକରି ମଣ୍ଡୂକଙ୍କୁ ଧରିଅଛନ୍ତି । ସେ ମଣ୍ଡୂକ କେମନ୍ତ ଅଟନ୍ତି । ମହାକଳ୍ପି ଅଟଇ । ନୀଳପାଷାଣ ପ୍ରାୟେ ଦେହ କର୍କଶ ଅଟଇ । ଇନ୍ଦ୍ରଧନୁ ପ୍ରାୟେକ ପଇତା ଅଙ୍କିତ ହୋଇଅଛି । ଦୁଇଚକ୍ଷୁ ମଙ୍ଗଳ ଗ୍ରହ ପ୍ରାୟେକ ଦୀପ୍ତ ହୋଇଅଛି । ଏବଂଭୂତ ମଣ୍ଡୂକେକ କଳ୍ପିଲ୍‌ । ସେ ମଣ୍ଡୂକଙ୍କୁ ମଣ୍ଡୂକ ଧାରଣାରେ କରି ବିଧିମତେ ପୂଜାକଲ୍‌ । କରି ସେ ମଣ୍ଡୂକର ଶିରେ ଏକ ପଦ୍ମ ପ୍ରତିଷ୍ଠା କଳ୍ପିଲ୍‌ । ସେ ପଦ୍ମର ନାଡ଼ ଷାଠିଏ ସହସ୍ର ହାତ ଉତ୍ସର୍ଗ ଅଟଇ । ସେ ପଦ୍ମ ଅତ୍ୟନ୍ତ ସ୍ଫୁଟ ହୋଇଅଛି । ସର୍ବଦା ମଳିନ ନୁହଇ । ସେ ସୁବର୍ଣ୍ଣ ପଦ୍ମ ଅଟଇ । ପୁଣି ସୁଗନ୍ଧ ଅଟଇ ଅନେକ ଦୂର ବ୍ୟାପିଅଛି । ସେ ସହସ୍ର ଦଳ ଅଟଇ । ଏହାକୁ ପତାଳ ପଦ୍ମ ବୋଲି । ଏ ପଦ୍ମକୁ ଶ୍ରୀପଦ୍ମେ (୩) ପୂଜାକରି । ଆଧାର ପୃଷ୍ଠ (୪) ଏହାର କୋଷ ଅଟଇ । ଏଥି ଅନନ୍ତ ସ୍ୱରୂପ ସେ ପରମେଶ୍ୱର ଯେ ବିଜେକରି ଅଛନ୍ତି । ସେ ଅନନ୍ତନାଗଙ୍କୁ ପୂଜା ଯୋଗଧ୍ୟାନେ ଏକାଳୟେ କଲ୍‌ । ସେ ସର୍ପର ବର୍ଣ୍ଣ ତପ୍ତ କାଞ୍ଚନ (୫) ଅଟଇ । ସେ ପଦ୍ମରେ କୁଣ୍ଡଳୀ କୃତ (୬) ହୋଇ ବସିଅଛି ଯୋଗଧ୍ୟାନେ ।

ଚକ୍ଷୁମାନେ ସୂର୍ଯ୍ୟର ପ୍ରାୟେକ ଦିଶୁଅଛନ୍ତି । ସହସ୍ରେ ଶିର ଅଟଇ । ସେ ଶିର-ମାନଙ୍କରେ ଫଣା ମଣିମାନେ ଦୀପ୍ତ ହୋଇ ଅଛନ୍ତି । ସେ ଫଣା ମଣିମାନଙ୍କର ଶିଖା ଅତ୍ୟନ୍ତ ଜ୍ୟୋତିର୍ମୟ ଅଟଇ । ନୀଳବସ୍ତ୍ର ପରିଧାନ କରି କନକ ସରୋଜ ଉପରେ (୭) ଶ୍ରୀ ଶବ୍ଦରେ ଅନନ୍ତ ବୀଜ ସ୍ୱରୂପ ବିଜେକରି ଅଛନ୍ତି । ସେ ବାସୁକିଙ୍କ କଳ୍ପିଲ୍‌ । କଳ୍ପି ପୂର୍ବୋକ୍ତ ଉପଚାରରେ ଆକାଶଗଙ୍ଗାରୁ ଜଳ ଅଭିଷେଚନ କରି ମାନସିକ ପୂଜାକଲ୍‌ । ଅନନ୍ତ ମନ୍ତ୍ରେକରି ଜପ କଲ୍‌ । ତହିଁ ଉତ୍ତାରେ ସେ ସର୍ପର ସହସ୍ର ଫଣାର ମଧ୍ୟେ ମଧ୍ୟ ଫଣା ସବୁହିଁ ଉଚ୍ଚ ଅଟଇ । ସେ ଫଣାରେ ଆନ୍ତା କୋଟି ସୂର୍ଯ୍ୟ ସଂକାଶ ମୁକୁଟର ଉପରେ ମଣି ଏକ ଅଛଇ । ସେ ମଣିର ମଧ୍ୟେ ପୃଥ୍ୱୀ ଥଳ ପ୍ରାୟେକ ହୋଇ ବସିଅଛି । ଏମନ୍ତ କଳ୍ପିଲ୍ କଲ୍‌ । ସାତ ଲୋକ ସ୍ୱରୂପେ ଯେଉଁ ପୃଥ୍ୱୀ, ଏହା କଳ୍ପିଲ୍ ପୀତବର୍ଣ୍ଣ କରି, ବଜ୍ରାଙ୍କିତ କରି, ଧରଣୀ ମନ୍ତ୍ରେ ଅନ୍ତଃକରଣ ଶୁଦ୍ଧକରି ପୂଜାକଲ୍‌ (୮) । ସୁଗନ୍ଧ ପୁଷ୍ପ ଧୂପଦୀପ ନୈବେଦ୍ୟ ଦଗବନ୍ଧନ ତାଳସ୍ପୃକରି କଲ୍‌ । କରି ଆସନ—ମନ୍ତ୍ରେ ଆସନେ ବସିଲ୍‌ । ଦକ୍ଷିଣେ ଗଣେଶ୍ୱରଙ୍କୁ ଅର୍ଚ୍ଚିଲ୍‌ । ବାମେ ଗୁରୁମାନଙ୍କୁ (୯) ନମସ୍କାର କଲ୍‌ । ଉପରେ ଗରୁଡ଼ଧ୍ୱଜ ଯେ ଶ୍ରୀକୃଷ୍ଣ, ତାଙ୍କୁ ନମସ୍କାର କରି ରକ୍ଷା ଦେଲ୍‌ । ମହାଭୈରବ, ଯମ, ଇନ୍ଦ୍ର, ମରୁତ, କୁବେର (୧୦) ଏମାନଙ୍କୁ ନମସ୍କାର କଲ୍‌ । କରି ଘେରି ପାରୁଶରେ ରକ୍ଷାଦେଲ୍‌ । ଏ

---

(୧) 'ଖ' ରେ ନାହିଁ । (୨) 'ଖ'ରେ ମାନଙ୍କର ନାହିଁ (୩) 'କ' ଶ୍ରୀମନ୍ତ୍ରେ (୪) 'କ' ପିଠି (୫) 'କ' ତପ୍ତ କାଞ୍ଚନ ପ୍ରାୟେକ ବର୍ଣ୍ଣ (୬) 'କ' ମଣ୍ଡଳାକୃତ (୭) 'ଖ' ରେ ସରୋଜରେ (୮) 'ଖ' ରେ ଅନନ୍ତ ମନ୍ତ୍ରେ ଠାରୁ ପୂଜାକଲ୍ ପର୍ଯ୍ୟନ୍ତ ନାହିଁ (୯) 'ଖ'ରେ ନାହିଁ, (୧୦) 'ଖ' ରେ ନାହିଁ ।

Digitized by srujanika@gmail.com

ରକ୍ଷାକର କୋମଳ କର ଶରୀର ମୁଦ୍ରାକର ପର ସୁରକ୍ଷା କର ଭୂତଶୁଦ୍ଧି କଲିଲା । ପାଦୁଁ (୧) ଜାନୁ ପର୍ଯ୍ୟନ୍ତେ ପୃଥ୍ୱୀ ଶୁଦ୍ଧ କଲା । ଜାନୁରୁ ଗୁହ୍ୟସ୍ଥ ପରଯନ୍ତେ ଜଳତତ୍ତ୍ୱ କଲା । ଗୁହ୍ୟସ୍ଥୁଁରୁ ନାଭି ପରଯନ୍ତେ ଅଗ୍ନିତତ୍ତ୍ୱ କଲା । ନାଭିରୁ ହୃଦସ୍ଥ ପରଯନ୍ତେ ବାୟୁତତ୍ତ୍ୱ କଲା । ହୃଦସ୍ଥରୁ କଣ୍ଠ ପରଯନ୍ତେ ଆକାଶ ତତ୍ତ୍ୱକଲା । କଣ୍ଠରୁ ମୂର୍ଦ୍ଧ୍ନ ପରଯନ୍ତେ ବ୍ରହ୍ମ-ଜ୍ୟୋତି କଲା । କର ଶରୀର ଶୁଦ୍ଧକଲା । (୨) ଲଘୁମାତୃକା ନ୍ୟାସକର ମୂଳ କମଳକୁ ଚିନ୍ତାକଲା । ବାଦଶାନ୍ତ (୩) ପର୍ଯ୍ୟନ୍ତେ ସେପି ପୃଥ୍ୱୀକୁ ସମକର ଜ୍ୟୋତି ଅରୁଣ ବର୍ଣ୍ଣ କର ବାଦଶାନ୍ତ ପର୍ଯ୍ୟନ୍ତ ବର୍ଣ୍ଣକୁ ବସାଇ କୋଷଗତେ ରତ୍ନପୀଠେ ବିଘ୍ନେଶ୍ୱରଙ୍କ ଅର୍ଚ୍ଚିଲା । ହାକନ୍ୟ ଦ ଅଧିଷ୍ଠାତ୍ରୀ କର (୪) ତଦୂପର ଜ୍ୟୋତିସ୍ଥାନେ ପ୍ରବାଳେ ଅଙ୍କୁର (୫) କର, ଈଶ୍ୱରଙ୍କ ପଶ୍ଚିମ ମୁଁଖକର କଲିଲ । ରୁଦ୍ରମନ୍ତ୍ରେ ଜପକଲା । ସ୍ୱାଧିଷ୍ଠାନ ଚକ୍ରରେ ଯଥୋଚିତ କର ପୂଜାକଲା ନିପୁରଙ୍କୁ । ତଦୁପର ଡାଦଶାନ୍ତ ବର୍ଣ୍ଣରେ ନୀଳଉତ୍ପଳ ସଂକାଶ କମଳରେ ବ୍ରହ୍ମାଙ୍କୁ ପୂଜିଲା । ହୃଦସ୍ଥ ପଦ୍ମେ ନାରାୟଣଙ୍କୁ ଜପକର ପୂଜିଲା । ଆସେପି ଚନ୍ଦ୍ର ସୂର୍ଯ୍ୟ ଅଗ୍ନିମଣ୍ଡଳର ମଧ୍ୟରେ ନିର୍ଧୂତ ଅଗ୍ନିର ସଂକାଶ ଚତୁର୍ଭୁଜ କର ପୂଜିଲା । ତଦୁପର କଣ୍ଠ କମଳରେ ଷୋଡ଼ଶ ଦଳ ସ୍ୱରାନ୍ତା ସରସ୍ୱତୀଙ୍କି ପୂଜାକଲା । ନବଦସ୍ଥ ଶିଖି ନାଡ଼ିରେ ନିଦ୍ରାକୁ (୬) ପୂଜିଲା । ପ୍ରାଣଚକ୍ରରେ ଈଶ୍ୱରଙ୍କ ସହସ୍ର ଦଳ ଉପରେ ଶୁଦ୍ଧ ସ୍ଫଟିକ ସଂକାଶ କର କଲି ପୂଜା କରନ୍ତେ ଅଦ୍ଭୁତ ହୋଇ ଧ୍ୱନିଏ ରଜାର କର୍ଣ୍ଣରେ ପଶିଲା ।

ଆହୋ ରଜା ଯେଉଁ ଅବଧୂତ ଆସିବ ତାହାଙ୍କ ରାଣୀଙ୍କି ଦେଖାଇଲେ ଶାନ୍ତ ପାଇ ସିନା । ଗର୍ଭର ପୁତ୍ରଙ୍କୁ ସେ ବୋଧଇ ସିନା । ଆମ୍ଭେ ତୋହର ପୁତ୍ର ହୋଇ ଜନ୍ମ ହେଉ ଅଛୁନା । ଏମନ୍ତେ ସେ ଈଶ୍ୱରଙ୍କ ଅର୍ଚ୍ଚନାଠାରେ ମାନସିକ ପୂଜା କରବାରେ ଏ ଧ୍ୱନି ଶୁଣି ରଜା ସମାଧି ଛାଡ଼ିଲା । ଅବଧୂତକୁ ନିରେଖି ରହିଁ (୭) ଏମନ୍ତରେ ସେ ଏକ ଦିନେକ ନଗ୍ରରେ ପୁରୁଷେକ ଆସି ପ୍ରବେଶ ହୋଇଲା । ସେ ପୁରୁଷର ଦେହ କେମନ୍ତ ଅଟଇ । କୃଷ୍ଣ ଧୂସର କେଶକାନ୍ତ । କେଶ କୁଟିଳ ଜଟିଳ ଖେଚର (୮) କନକଳ ଭ୍ରାନ୍ତ । ଚକ୍ଷୁ ପିଙ୍ଗଳ ଚକ୍ରାକୃତ (୯) ଶରୀର ଦୀର୍ଘ ପୃଥୁଳ (୧୦) ଆକୃତ । କଟିରେ ଅଛୁ ବଜ୍ର କାଛେଟି । ଗୃହୁଁ ଅଛୁ ଚକ୍ଷୁ ତରାଟି । ପୁଷ୍ପରସ ମଦରେ (୧୧) ହୋଇଅଛୁ ମତ୍ତ । କୁମ୍ଭଣ ଯୋଗରେ ଇନ୍ଦ୍ରିୟମାନଙ୍କୁ କରିଅଛୁ ଯତ (୧୨) । ଆକାଶର ପଦ୍ମେ ପୂରିଅଛୁ । ପବନର ମାର୍ଗ ଶୋଧିଅଛୁ (୧୩) । ଇଳା ପିଙ୍ଗଳା ସାଧିଅଛୁ । ମୂଳ କମଳ ମୁଦିଅଛୁ (୧୪) । ସପତ

---

(୧) 'ଖ'ରେ ନାହିଁ (୨) 'ଖ'ରେ ଜାନୁରୁ ଠାରୁ ଶୁଦ୍ଧକଲ ପର୍ଯ୍ୟନ୍ତ ନାହିଁ । (୩) 'ଖ'ରେ ବାସାଦ (୪) 'ଖ' ଆକାଂନୀ ଅଧିପା କର (୫) 'ଗ' ପ୍ରବାଳ ଅଙ୍କୁର (୬) 'ଖ'ରେ ନିଜକୁ । (୭) 'ଖ' ଥାଇ (୮) 'କ' ଖଚର (୯) 'କ' ଚକ୍ରାକୃତ (୧୦) 'କ' ଦୀର୍ଘହୋଇ ସ୍ଥୂଳାକୃତ (୧୧) 'ଖ' ମଦରାଏ (୧୨) 'କ' କୁମ୍ଭଣ ବୃତ ଯୋଗେ ନିରତା ନିରନ୍ତରତ କରିଅଛୁ ଇନ୍ଦ୍ରିୟମାନଙ୍କୁ ଯତ 'ଖ' କ୍ଷତ (୧୩) 'କ' ସାରିଅଛୁ (୧୪) 'ଖ' ରେ କଳକମଳ ଶୋଧିଅଛୁ ।

Digitized by srujanika@gmail.com

ଧାରୁ ମାଣଅଛୁ । ଇନ୍ଦ୍ରିୟମାନଙ୍କୁ ଜାଗଅଛୁ । ବିବେଣୀ ଛନ୍ଦଛନ୍ଦ ଅଛୁ (୧) । ଓଡ୍ଡଆଣି ମୁଦ୍ରା ଖାଂଚ ଅଛୁ । ଖେଚରୀ ମୁଦ୍ରା ଯନ୍ତ୍ରୀଅଛୁ । ଶରୀର ଯାକ ମନ୍ତ୍ରୀ ଅଛୁ । ଅଗ୍ନିମଣ୍ଡଳ ଜାଳଅଛୁ । କୁଣ୍ଡଳିନୀ ମୁଖ ଖୋଲିଅଛୁ । ଷଟ୍‌କମଳ ଫୁଟାଇ ଅଛୁ (୨) । ଆହ୍ୱାର ନିଦ୍ରା ଛୁଟି (୩) ଅଛୁ । ପବନଦ୍ୱାର ଶୋଧିଅଛୁ ମନକୁ ମନେ ବୋଧିଅଛୁ । କାଉଁରୀ ମଣ୍ଡଳ ଖୋଲିଅଛୁ । ଅନାହତ ଧ୍ୱନି ଧାରିଅଛୁ । ଠୂଲଶୂନ୍ୟ ଭେଦଅଛୁ । କାଳ ଖଡ୍ଗ ଛେଦଅଛୁ । ଚନ୍ଦ୍ର ସୂର୍ଯ୍ୟ ମିଶାଇ ଅଛୁ । ଶୂନ୍ୟମଣ୍ଡଳକୁ ଗାମୁଅଛୁ । ଭସ୍ମ ବଲେପନ ହୋଇଅଛୁ । ଜଗତଯାକ ମୋହୁଅଛୁ ।

ଏମନ୍ତ ସେ ପରମ ଅବଧୂତ ଆସନ୍ତେ, (୪) ସପ୍ତସମୁଦ୍ରକୁ ପୁଷ୍ପ କଣିକା ପ୍ରାୟେ ମଣୁଅଛୁ । ଅଣଚୁଷ ପବନକୁ ଫୁଙ୍କି ପ୍ରାୟେ ବୋଲି ଜାଣୁଅଛୁ । ପୃଥ୍ୱୀକି ଅଣୁ ପ୍ରାୟେକ ଆଣୁଅଛୁ (୫) । ମଣିଧର ପ୍ରାୟେକ ଆକାଶକୁ ପାଶୁଅଛୁ (୬) । ମନେ ମନେ ସେ ଜଗତ ଯାକ ଧରିଅଛୁ । ଦେବତାମାନଙ୍କୁ କୀଟ ପ୍ରାୟେକ କରି ଆକଳୁ ଅଛୁ । ବ୍ରହ୍ମା, ବିଷ୍ଣୁ, ମହେଶ୍ୱରାଦି ଦେବତାଙ୍କୁ ଦୁଃଖୀ ବୋଲି ଭାଳୁଅଛୁ । ଏମନ୍ତେ ସେ ଅବଧୂତର କେଶ ମୁକୁଳ । ଭସ୍ମେ ଶୁକଳ । ଅନ୍ତ ନିର୍ମଳ । ଦନ୍ତ ଉଜ୍ଜ୍ୱଳ । ହାତରେ ଅଛୁ ଦଣ୍ଡେ । କଣ୍ଠରେ ଅଛୁ ଦାଢପୋଡ଼ା ଖଣ୍ଡେ । ମୃତ ସର୍ପେକ ପଇତା କରି ଲଇଅଛୁ । ସିଦ୍ଧ ମୂଳିକା ଖାଉଅଛି । କର୍ଣ୍ଣେ ଲମ୍ବାଇଅଛୁ କୁମ୍ଭ ମୁଖ ଖଣ୍ଡେ । ମଥାରେ ଦେଇ ଅଛୁ ଅନ୍ନ ସମେତ ଭାଣ୍ଡେ । ବଡ ବଡ (୭) ହୋଇ ଆସୁଅଛୁ । ଶଙ୍ଖିନୀ ନାଳେ ହାସୁଅଛୁ (୮) । ଦବ୍ୟାନ୍ନମାନ ଯାଚଲେ (୯) ନିନ୍ଦୁଅଛୁ । ପଡ଼ିଲା ଅନ୍ନ ଚୁଣ୍ଡିଆଇ ଭୁଞ୍ଜୁଅଛୁ । ଆସନେ ବସିଲେ ବାର ବର୍ଷ ବସଇ । ଅହଙ୍କାର ଲୟରେ ପୁଣି ବ୍ରହ୍ମରେ ମିଶଇ । ଦେହାଭିମାନେ (୧୦) ହୋଇଅଛୁ ସିଦ୍ଧ । ଏ ସେ ଅଟଇ ଆସୁରିକ ମତବୃଦ୍ଧି (୧୧) ।

ଏମନ୍ତେ ସେ ଅବଧୂତ ଆସନ୍ତେ. ନରେ ପଶନ୍ତେ; ସିଂହ ମତେ ଗମନ୍ତେ, ଅନୁଭବ କରନ୍ତେ, ମନଶାନ୍ତ (୧୨) ମତେ ଇନ୍ଦ୍ରିୟନ୍ତ ପୂଜନ୍ତେ, ପଞ୍ଚଜ୍ୟୋତି ଚଳନ୍ତେ, କୋଟି ବ୍ରହ୍ମାଣ୍ଡ ପୂରନ୍ତେ, ସୂକ୍ଷ୍ମାନୁସୂକ୍ଷ୍ମେ ଧୂନିର ଅନ୍ତେ ମନ ଯାନ୍ତେ (୧୩), ତତ୍ତ୍ୱ ଆଶ୍ରୟନ୍ତେ, ବୁଦ୍ଧି ଶୁଦ୍ଧ କରନ୍ତେ, ଶାନ୍ତ ସମାଚରନ୍ତେ (୧୪), ପରମାତ୍ମା ହୁଲୁପନ୍ତେ କରି ଜ୍ଞାନାନନ୍ଦ ପଦ ହୋଇନାହିଁ ଯାବତ୍ । ଅହଙ୍କାର ଦେହାଭିମାନ ନାଶ କରି ଗୁଡ଼ନାହିଁ ତାବତ୍ ।

---

(୧) 'ଖ'ରେ ସପତଠାରୁ ଛନ୍ଦଅଛୁ ପର୍ଯ୍ୟନ୍ତ ନାହିଁ । (୨) 'ଖ'ରେ ନାହିଁ (୩) 'କ'ରେ ଫୁଟାଇ । (୪) 'କ'ରେ ପୁରୁଷ ଆସିବାର ସମୟେ (୫) 'କ' ପୃଥ୍ୱୀକୁ ରେଣୁ ପ୍ରାୟେକ ଆକଳୁ ଅଛୁ (୬) ଏ ମହାଆକାଶ ଗୋଟାକୁ ମଣିବନ୍ଧ ପ୍ରାୟେ ମଣୁଅଛୁ (୭) 'ଖ'ରେ ବୃଦ୍ଧ ବୃଦ୍ଧ (୮) 'ଖ' ରେ ନାହିଁ । (୯) 'ଖ' ବାଢ଼ିଲେ (୧୦) 'କ' ଦେହାଶ୍ରମାନେ (୧୧) 'କ' ଅସୁରୀ ଜ୍ଞାନର ବାଧ (୧୨) 'କ' ମନଃଶକ୍ତ ମତେ (୧୩) 'ଖ' ସୂର୍ଯ୍ୟାଂଶୁ ତପ୍ତ ତପ୍ତାନ୍ତେ ବାଧ ଶ୍ରିୟଧ କରନ୍ତେ (୧୪) ସମଦ-ମାଚରନ୍ତେ ।

Digitized by srujanika@gmail.com

ଚାତକ ଦୁଃଖସୁଖ ହିଂ ସେ ପାଉଥାଇ । ଉନମତ୍ତ ହୋଇ ଖାଉଥାଇ । ଆହାରହିଂ ତଣ ଖାଉଥାଇ । ବଡ଼ ଅଭରଷ୍ଟ ପାଉଥାଇ । ପୁଣ ପୁଣ ଦେହକୁ ଚାକୁଥାଇ । ବେତ ସ୍କନ୍ଧକୁ ଚାକୁଥାଇ । ପର୍ବତ ଗୁହାରେ ପଶିଥାଇ । ପଗକୃତ ଷୋଷା ହିଂସୁଥାଇ । ଅଭୟ ସ୍ୱଭ ପ୍ରକାଶୁଥାଇ (୧) । ଭସ୍ମେ ହୋଇ ବଡ଼ରେ ନ ସ୍ମ୍ରଲଇ ପଠା ବା ଲଗିବା ଡରେ ଦେହରେ ବହୁ ଅମୃତ ଷସ୍ଥ ହେବା ଡ଼ରେ ନ କହଇ କଥା । ଏମନ୍ତେ ସେ ଅହଂକାର ସେଣ ଅବଧୂତ ପଦକୁ ବ୍ରୁଲଣ ପବନ ଖେଚର । ଅଜଟ ଆରମ୍ଭ ଧାରଣା । ଆସନ ଉଜାଣି । ତାଟକ, ରେଚକ, ପୂରକ, କୁମ୍ଭକ, ଶୋଷଣ ଆଦିକର ସମସ୍ତ ଜ୍ଞାନ ଜାଣଇ । ବସ୍ତୁ ଭକ୍ତ ନୋହିବାରୁ କରି ପରମାନନ୍ଦର ପରମ ଗ୍ୟାଂନ ସେ ନ ଜାଣଇ । ଏମନ୍ତ ସେ ଅବଧୂତ ସିଂହଦ୍ୱାରେ ହୁଅନ୍ତେ, ଜଗତି ଉପରେ ଥାଇ ରାଜା ଦେଖିଲା । ହର୍ଷହୋଇ ସେ ରାଜା ଯାଇ ଅବଧୂତର ସମ୍ମୁଖରେ ମିଳିଲା । ଏମନ୍ତେ ସେ ଅବଧୂତ ରାଜାକୁ ଦେଖି, ମନ୍ଦ ମନ୍ଦ ହୋଇ ହସି, ଜନ୍ତୁ ଗୋଟିଏକ ପ୍ରାୟେ ମଣିଲା, ରାଜା ଅବଧୂତକୁ ନମସ୍କାର ହୋଇଲା । ଯହୁଂ ସେ ସମାଧିରେ ଅଙ୍କ ପାଇଥିଲା, ଅବଧୂତ ବୋଇଲା ରାଜା ହୋଇଲୁକ ବାଇ ବାକ୍ରୁତ ନେଉଛୁ ତୋହର ନମସ୍କାର କାହିଂପାଇଂ । ରାଜା ବୋଇଲା ତୁମ୍ଭେ ସର୍ବେଶ୍ୱର, ସର୍ବଭୂତେ ଅନ୍ତର୍ଯାମୀ । ଅନେକ ବିନୋଦ୍ଭୀ ହୋଇ ବୋଇଲା ଶୁଣିମା ଦେବ ସ୍ୱାମୀ ଈଶ୍ୱର ସେ ଶ୍ମଶାନ ଭୂମିରେ ଥାଇ । ତ ହାର ପ୍ରସନ୍ନରେ କୈବଲ୍ୟ ପାଇ (୨) । ତୁମ୍ଭେ ଈଶ୍ୱର ସିନା । ପୂର୍ବର ଭାଗ୍ୟେ ମୁଁ ଭେଟିଲି କନା (୩) ।

ଏମନ୍ତ ଶୁଣି (୪) ସେ ଅବଧୂତ ବୋଇଲା । ହେ ! ରାଜନ ତୁ କେବଣ (୫) ଅର୍ଥୀ ହୋଇଛୁ ତାହା କହ । ରାଜା ବୋଇଲା ହେ ସ୍ୱାମି ! ପାଟମହଷୀ ମୋହର ହୋଇଛୁ ଗର୍ଭବାସ । ମହାଜ୍ୱର (୬) ପାଇଲାକ ସେ ନ ପୁଣ ହୁଅଇ ବିନାଶ (୭) । ଦେହର ତେଜକୁ ସ୍ମୃହିଁ ନ ହୋଇ । ସେ ଗର୍ଭବାସ ରଣ୍ଡି ତ ହାର ବେଳେ ସନ୍ଧି ନୁହଇ । ଅବଧୂତ ରାଣୀକି ଦେଖିବା (୮) ବୋଇଲା । ରାଜା ସେହିକ୍ଷଣି ଅବଧୂତକୁ ଘେନି ଅନ୍ତଃପୁରରେ ମିଳିଲା । ନାନା ରତ୍ନେ ପୂର୍ଣ୍ଣ ସ୍ୱର୍ଣ୍ଣ (୯) ପଲଙ୍କେକ ଆସନ ଦେଲା । ସେ ପଲଙ୍କ କେମନ୍ତ ଅଟଇ । ସୂର୍ଯ୍ୟର ପ୍ରାୟେକ କାନ୍ତି ଅଟଇ । ଶରଦ ଚନ୍ଦ୍ରମଣ୍ଡଳ ପ୍ରାୟେକ ବୃଣଳକୃସ୍ୱ (୧୦) । ତ ରାମଣ୍ଡଳ ପ୍ରାୟେକ ଲମ୍ବି ଅଛି ମୁକୁତା କେଉ ଝରା । ତହିଂ ଦିବ୍ୟ ସୁପାତିଏ ଅଛି ସେଜାଇ (୧୧) । ଅମୃତ ଫେନ ଶୁକ୍ଳ ବସ୍ତ୍ର ତହିଁ ଅଛି ଆଚ୍ଛାଦନ । ତହିଁ ସେବତି ପାଖୁଡ଼ ସିଞ୍ଚି, କର୍ପୂର ଚୂର୍ଣ୍ଣ ବିଭୂତି ପ୍ରାୟେ କରିଅଛି ବିସ୍ଥଳ । ଏମନ୍ତ ପଲଙ୍କେ ଦିବ୍ୟପୁର ଭିତରେ ସେ ଅବଧୂତକୁ ବସାଇଲା । ଅଗୁରୁ ଚନ୍ଦନ ଘଷ ଲେପିଲା । ଦିବ୍ୟ ପଦାର୍ଥମାନ ଭିକ୍ଷା କରାଇଲା । ଦିବ୍ୟହାରମାନଙ୍କରେ ଶରୀର ମଣ୍ଡିଲା । ବ୍ୟଜନ ପବନରେ ପରିଶ୍ରମ ଖଣ୍ଡିଲା (୧୨) । କ୍ଷୀର ଅନ୍ନ

---

(୧) 'ଖ'ରେ ନାହିଁ । (୨) 'ଖ' ରେ ନାହିଁ (୩) 'ଖ' ରେ ଜନା (୪) 'କ' ଏମନ୍ତେ ବୋଲନ୍ତେ (୫) 'କ' କଥାରେ (୬) 'କ' ମହାଭୟେ (୭) 'କ' ରେ ହୋଇବ ନାଶ (୮) 'କ' ରେ ରାଣୀ ଦେଖା ବୋଲି । (୯) 'କ' ରେ ଏମନ୍ତ (୧୦) 'ଖ' ରେ ମଣ୍ଡଳ ନାହିଁ (୧୧) 'କ' ସେଜାଇଲା । (୧୨) 'କ' ଶ୍ରମହାରିଲେ ।

Digitized by srujanika@gmail.com

ଶାକର ପଇଡ଼ ସମକରେ ନାନା ପଦାର୍ଥମାନ ବାଢ଼ିଲ । ସେ ପୁରୁଷ ଭିକ୍ଷା ପାଇ, ପ୍ରସନ୍ନ ଚିତ୍ତ କରି, ପଲଙ୍କ ଉପରେ ବସିଲ ରାଜାର ଭୁଜ ଧରି । ରାଜା ଅବଧୂତ ଦୁହେଁ ପଲଙ୍କେ ବସିଲେ । ଶଶିପ୍ରଭା ନାମ ରାଣୀକି ନଆଇ ଏକ ପଲଙ୍କେ ସ୍ଥାପିଲେ (୧) ।

ସେ ରାଣୀ ଦୃଷ୍ଟ ପୁରୁଷେ ପୀଡ଼ା ପାଇଲ ପୃଥ୍ୱୀ ଦେବୀଙ୍କ ପାଏ ହୋଇ, ଥର ଥର ହୋଇ ଯାଇ, ନାରଦଙ୍କେ ଧ୍ୟାଇ, ରାଜା ଆଜ୍ଞା ପାଇ, ପରିଶ୍ରମ ସହିତ ହୋଇ, ହୃଦତ ବସ୍ତ୍ର କରି ନିଜ ଅଙ୍ଗ ଲୁଚାନ୍ତେ, କେମନ୍ତ ଶୋଭା ପାଉଅଛୁ କି ? ପୂର୍ଣ୍ଣଚନ୍ଦ୍ର ମଣ୍ଡଳ ସନ୍ଧ୍ୟା ମେଘରେ ପଶି ଅଛୁ । ଏମନ୍ତେ ସେ ହଂସ ସରସ (୨) ଗମନୀ ପାଟମହଷୀ ଶଶିପ୍ରଭା । ସେ ଦିବ୍ୟ ପଲଙ୍କେ ବସି ପାଇଲ ଶୋଭା । ରାଣୀଙ୍କ ଦେଖି ଅବଧୂତ ବୋଇଲ । ଏହାର ଗର୍ଭରେ ହୋ ଯୋଗେନ୍ଦ୍ର (୩) ପୁରୁଷେକ ରହିଲିଁ । ବ୍ରହ୍ମଜ୍ୟୋତ (୪) ପାଇଲ । କେବଳ ସିଦ୍ଧ ଅବା ଯୋଗଭ୍ରଷ୍ଟ ଅଇଲ । ଦେଖି ଜାଣିବା ଏହିକ୍ଷଣି । ଏମନ୍ତ ବୋଲି (୫) ପଦ୍ମାସନେ ବସିଲ । ଅନ୍ୟ ନାଡ଼ିରେ ପଶିଲ । କଳନା ସ୍ୱରୂପ ଅତ୍ମା ଯେ ଜୀବ ତାହାକୁ ହୃଦପଦ୍ମେ ନିକ୍ଷେପି, ଆକର୍ଷ ମୁଦ୍ରାରେ କ୍ଷେପି, ପରମାଣୁ (୬) ଧାରଣାଏ କରି, ପରପୁର (୭) ପ୍ରବେଶ ବିଦ୍ୟା ସୁମରି, ପ୍ରଣବ ମନ୍ତ୍ର ଉଚ୍ଚାରି, ପ୍ରାଂଚନ୍ଦ୍ର (୮) ବିସ୍ତରି, ସୂକ୍ଷ୍ମଭାବ ବିସ୍ତରି, ଶରୀରକୁ ବାହାରିକଲ । ସେ ଶରୀର ପଞ୍ଚ ପ୍ରାଣ ମନବୃତ୍ତି ଦଶ ଇନ୍ଦ୍ରିୟ ସଂବଳିତ (୯) । ପଞ୍ଚଭୂତ ଦେହ (୧୦) ସୂକ୍ଷ୍ମଅଙ୍ଗ ଗୋଟିଏ ହୋଇ, ନାସିକା ବାଟେ ବାହାର ହୋଇଲ । ହୋଇ ସେ ଶଶିପ୍ରଭା ରାଣୀର ଚନ୍ଦ୍ର ନାଡ଼ୀର ସମ୍ମୁଖ ବାମ ନାସିକା ବାଟେ ପଶିବାକୁ ବିଚାରିଲ । ଏମନ୍ତ ବିଚାରିଲ (୧୧) ଏହାର ଗର୍ଭରେ ପଶିବା । କେବଳ ମହାତ୍ମା ଅଛୁ ଏହାକୁ ଲକ୍ଷିବା ।

ଏମନ୍ତ ବିଚାରି ଦେହରୁ ବାହାର ହୋଇଲ । ଆପଣା ଦେହ ସମାଧି ସ୍ୱରୂପ ହୋଇ ସେ ପଲଙ୍କରେ ରହିଲ । ସୂକ୍ଷ୍ମାଙ୍ଗ ହୋଇ ବାମ ନାସିକା ବାଟେ ପଶିବାକୁ ଲେଉଟନ୍ତେ (୧୨), ସେ ବାୟୁଶିଖାକୁ ଭ୍ରମର ପୁଷ୍ପ ପ୍ରାପ୍ତେ ମଣି ଚୁମ୍ବିବାକୁ ଗଲେ (୧୩) ଯେମନ୍ତ ତପଢଳଗି (୧୪) ପଳାଇ ହେହ ମଡ଼ ହୋଇ ପଶି ନପାରି ପଳାଇଲ । ନ ପାରି ରାଣୀକି ମନେ ମନେ ନମସ୍କାର କଲ (୧୫) । ବିଚାରିଲ ଏଡ଼େ ତେଜ ଏ କେମନ୍ତ ସହିଲ । ଏମନ୍ତ ବିଚାରି ମହାଦେବଙ୍କର ଦକ୍ଷିଣ କର୍ଣ୍ଣରେ ଆପଣାର ଅପାନ ଭରିଲ । ସୂକ୍ଷ୍ମ ଭାବରେ କରି ରାଣୀ ତାହା ନ ଜାଣଇ । କାହାକୁ ହଂ ସେ ଦେହ ନ ଦିଶଇ । ଏମନ୍ତେ ସେ ଅପାନ ପବନ ଯେ ସେ ଚନ୍ଦ୍ର ସ୍ୱରୂପ, ସେ ପବନ ପରଶନ୍ତେ ରାଣୀ ଶୀତଳ ପାଇଲ । ନିଦ୍ରା ଅଇଲ । ସେହି ପଲଙ୍କେ ସେ ଶୋଇଲ । ତ ସେ ପବନ ପରଶନ୍ତେ ସାତମାସ ହୋଇଲାଣି । ଏବଂଭୂତ ପରୀକ୍ଷିତ

(୧) 'କ' ବସାଇଲେ (୨) 'ଖ' ରେ ନାହିଁ (୩) 'କ' ଅବଧୂତ (୪) 'ଖ' ଯୋଗ (୫) 'ଖ' ବିଚାରି (୬) 'ଖ' ପରମାଣୁ (୭) 'ଖ' ପରମପୁର (୮) 'ଖ' ପ୍ରାଣଚନ୍ଦ୍ର (୯) 'ଖ' ଶମନସ୍ଥ ।(୧୦) 'କ'ରେ 'ଦେହସ୍ଥୀ' (୧୧) 'ଖ'ରେ ନାହିଁ (୧୨) 'ଖ' ରେ ସୂକ୍ଷ୍ମାଙ୍ଗ ଠାରୁ ଲେଉଟନ୍ତେ ପର୍ଯ୍ୟନ୍ତ ନାହିଁ (୧୩) 'କ' ରେ ମନେ ମନେ ଅଧିକା (୧୪) 'କ' ରେ ତୃପ୍ତି (୧୫) 'ଖ' ରେ ନାହିଁ ।

Digitized by srujanika@gmail.com

ଯୋଗେଶ୍ୱର (୧) ପୁରୁଷ ଯେତେ ଜାଗିଲା । ଜାଣି ସାବଧାନ ହୋଇଲା । ଶବଦକୁ ଜାଗିଲ । ଅନ୍ତର୍ଦ୍ଧି ଲାଗିଲା, (୨) ମନ ପ୍ରାପ୍ତେ ଲାଗିଲା । ଅନ୍ୟସ୍ମରଣେ ହୋଇଲା ସମ୍ଭାବ । ଉନ୍ମତ ଭାବ ହୋଇଲା ଜନ୍ତୁର ସ୍ୱଭାବ । ଯୋଗବଳେ କରି ଅଜ୍ଞାନ ନୋହଇ । ଗର୍ଭ ଦୁଃଖେ କରି କ୍ଷଣେ କ୍ଷଣେ ମୋହ ହୋଇ । ଉଦ୍ୟକରି ଖଣ୍ଡେନ୍ଦ୍ର ମୌଳୀକି ସୁମରଇ । ସୁମରିବା ନ ସୁମରିବା ନ ବୁଝଇ ମାତା ଗର୍ଭର ହେତୁ ସ୍ମରଣ ବିସ୍ମରଣ (୩) ଏହା କହି ନୁହଇ । ଯେ ଅବକ୍ତ (୪) ରୂପ ମାତୃଗର୍ଭେ ପୁରୁଷ ଉନ୍ମତ ମୁଖ (୫) ହୋଇବାରୁ କରି ବାହାରେ କର୍ଣ୍ଣମୂଳେ ଆଇ ସେ ଅବଧୂତ ସ୍ୱରର କରି କଥା କହିଲା । ହେ ମହାତ୍ମା ! ହେ ମହାତ୍ମା ! ହେ ମହାତ୍ମା ! ବୋଲି ତିନି ବେଳ ଡାକିଲା । ଯହୁଁ ଇନ୍ଦ୍ରିୟମାନେ ତାହାର ଅଙ୍କୁରିଲେକ । ତହୁଁ ଶବଦରୂପେ ଚକ୍ଷୁ ହୋଇଅଛୁ ଜନ୍ମ । ଏବେ ଅନାହତ ଧ୍ୱନି ପାଇଲେ ହୋଇବ ଲୀନ । ଯେ ଶବ୍ଦ କର୍ଣ୍ଣେ ପଶିଲା ଯହୁଁ, ପୂର୍ବଜନ୍ମର ବଳେ ଇନ୍ଦ୍ରିୟମାନଙ୍କୁ ଚେତାଇଲା ତହୁଁ । ଅନ୍ତ୍ୟକାଳ ଭାବ କର୍ମ ହୋଇଲା । ଶରୀର ପ୍ରକୃତ (୬) ମାୟାବଳେ ମେହୁଲା । ଗର୍ଭେ ଥାଇ ବିସ୍ମରିଲା ଅହୋ ମନୁଷ୍ୟର ଶବ୍ଦ ତ ମେହର କର୍ଣ୍ଣେ ଶୁଭିଲା (୭) । ସଂସାର ମାୟା ମୋହିଲା । ବିଷ୍ଣୁମାୟା ମୋହିବ ଜନ୍ମ ହୋଇବା ଉତ୍ତାରେ (୮) । ଏଥିକି ତ ଜାଣି ନ ପାରିଲି ଅନ୍ତରେ (୯) । ଏବେ ଅବା ମୋହର ପ୍ରଭୁ ଶଙ୍କର, ଚେତେଆଇବେ ବୋଲି ଅବା କର୍ଣ୍ଣରେ ତହୁଁ ଡାକୁଅଛନ୍ତି ସ୍ୱରରେ । ଏହାଙ୍କୁ କଥା କହିବି । ପୂର୍ଣ୍ଣ ବିସ୍ମରିଲି (୧୦) ହୋ । ଶବ୍ଦ ଶ୍ରୁତିରେ ବଡ଼ ସୂକ୍ଷ୍ମ ଅତ୍ୟନ୍ତ ସ୍ୱର ହୋଇଲେ ହେଁ ପଶଇ । ଏବେ ଦେବତ ମାନେ କଥା କହୁଅଛନ୍ତି । ସକଳ ଜନ୍ତୁମାନେ ପିମ୍ପୁଡ଼ି ସହିତ ହୋଇ କଥା କହୁଅଛନ୍ତି । ଶୁଭି ନ ଶୁଭଇ କଥା । ପୂର୍ବ ଶ୍ରୁତିଏ କରି କେ ମୋତେ ଡକିଲା । ଏହାର ସୂକ୍ଷ୍ମ ଶ୍ରୁତି । ସୂକ୍ଷ୍ମ ଶରୀର । ସୂକ୍ଷ୍ମ ମନ । ସୁପ୍ରଦନ୍ତ ଅଛଇ (୧୧) । ନୋହିଲେ ଆନ ଶବ୍ଦ ମୋତେ କମା ନ ଶୁଭଇ ।

ତ ଏମନ୍ତ ବିସ୍ମର ମାତୃଗର୍ଭେ ପୁରୁଷ ଶବଦକଲା (୧୨) । ତ କେମନ୍ତ ପ୍ରାପ୍ତେ କରି । ନାସିକା ପବନେ କୋମଳ କରି ବଂଶୀ ବୋଇଲେ ଯେମନ୍ତ ସୂକ୍ଷ୍ମ, ବାଳ ଝିଙ୍କାରି ଶବ୍ଦ ଯେମନ୍ତ ସୂକ୍ଷ୍ମ, ଶାସ୍ତ୍ରର ବଚନ ସହସ୍ର ଥା କଲେ ଯେମନ୍ତ ଶୁଭଇ, ସେହିମତ କରି କହୁଅଛୁ । ଯହୁଁ ଏ ଯୋଗେନ୍ଦ୍ର ପୁରୁଷ ମନେ ମସ୍ତ ସୂକ୍ଷ୍ମ ଶ୍ରୁତିରେ କରି ଶୁଣୁଅଛୁ, ଗର୍ଭରେ ଥାଇଁ କୁମର ବୋଇଲା । ଆହେ ମହାତ୍ମା ମହାତ୍ମା କରି ମୋତେ କେ ଡକିଲା । ସେ ମୂର୍ଖମତ (୧୩) ସେଠି । ମହାତ୍ମାମାନେକ ଏତାଦୃଶ ନରକ ପାନ୍ତି କି । ତୁ ଅବା ବୋଲିବୁ ଆତ୍ମା ତ ନ ପାଇ (୧୪) । ତୁ ଜୀବ ଭାବ ଶରୀର ଆବୋରି

(୧) 'ଖ' ଜାଗେଶ୍ୱର (୨) 'ଖ' ରେ ନାହିଁ (୩) 'ଖ' ରେ ନାହିଁ (୪) 'କ' ଅବ୍ୟକ୍ତ (୫) 'କ' ଉନ୍ମୁଖ (୬) 'କ' ଶରୀରକୃତ (୭) 'କ' ପଶିଲା (୮) 'କ' ହୁତାରେ 'ଖ' ଉଛି ସେ (୯) 'ଖ' ଏଥିକୁ ତ ଜାଣି ନ ପାରିଲୁ ଅନ୍ତରରେ (୧୦) 'ଖ' ବିଶୋରିଲା । (୧୧) 'ଖ' ସୁହାସନ ଅଛଇ (୧୨) 'ଖ' ତ ଏମନ୍ତ ବିସ୍ମର ମାତୃଗର୍ଭେ ହେତୁ ପୁରୁଷ (୧୩) 'ଖ' ରେ ପତିତ (୧୪) 'ଖ' ଆତ୍ମା ଚୈତନ୍ୟ ପାଇ

Digitized by srujanika@gmail.com

ପାଉ (୧) ଅଛୁ ନା ବୋଲ । ହାଦେ ଆତ୍ମା ନପାଇଲେ (୨) ମୋହର କ ହୋଇଲା । ମୁହିଂତ ଜୀବ ବହି । ଯେବେ ମୁଂ ମହାତ୍ମା ହୁଅନ୍ତି, ତେବେ ମୁଂ ଶବ୍ଦ କାହୁଂ ହୁଅନ୍ତି । ଗର୍ଭଗୁହା (୩) ବାସ, ଜନ୍ମ, ମରଣ, ଭୟ, ବିଭ୍ରମ, ତନ୍ଦ୍ରା, ଶୋକ, ମୋହ, ଜ୍ୱର, ଜଡ଼ କେ ଖେଗ ଭରିବ । ମୁଂ କାହଂର ମହାତ୍ମା । ମୁଂ ତ ମହାତ୍ମା ନୁହଇ । ପଦଚ୍ୟୁତ (୪) ଅଧମ ଯେ ସେ ମୁଁ । ମୋତେ ତୁ ଅନୁଗ୍ରହ କର । ଏମନ୍ତ ବୋଲି ଯେ ଗର୍ଭ ପୁରୁଷ ସୂକ୍ଷ୍ମ ବଚନ ବୋଇଲା ।

ଏମନ୍ତ ଶୁଣି ସେ ଅବଧୂତ ମହା ଆଶ୍ଚର୍ଯ୍ୟ ପାଇଲା । ବିଚାରିଲା ହୋ ମୋହର ଧନ୍ୟ ଧନ୍ୟ ଆଜ ପୁଣ୍ୟ ସମସ୍ତ ହୋଇଲା । ଅନେକ ଜ୍ଞାନ ପାଇବ । ଏତେଡ଼ ଅଭୁତ (୫) କଥା କାହୁଂ ପାଇଲା ନାହୁଂ । ଏମନ୍ତ ବିଚାରି ଅବଧୂତ ବୋଲୁଅଛି । ବାବୁ ତୁ ନସ୍ତଶଲା ଜୀବ କଅବା ଶିବ । ମୋହର ବଚନ କର ଅମୃତ ସିଞ୍ଚୁ । ହେ ବତ୍ସ ! ମୁଁ ହାଦେ ପ୍ରଥମୁଂ ଅବଧୂତ ପୁରୁଷ । ତୋହର ମନବୃତ୍ତି ଆଜ କରନ୍ତୁ ହର୍ଷ । ଜନନୀଙ୍କ ତାପେ କଣ ନକର ତରସ । ତୋହର ତପତ ତେଜ ଗୁଲ୍ମ ହୁଅ ପୁରସ (୬) । ତୋହର ମନରେ କ ମରିଅଛୁ ବର । ଯେମନ୍ତ ବାଞ୍ଛା ତ ହୋ ମନେଶ୍ୱର । ଯାହାର ହୃଦରେ ଏତେ ବୁଦ୍ଧି, ସେହିଟିକ ତୋହର ସେବନ ଲାଗି ସିଦ୍ଧି (୭) । ସ୍ଥୂଳ ଦେହ ଦିବାକୁ ଭୟେ ପାଉଅଛ (୮) । ଏମନ୍ତ ଶବ୍ଦ ଶୁଣୁଥାଇ ଦକ ଦକ ହୋଇ, ଉଦବେଗ ପାଉଥାଇ । ତୁ ତହୁଂ କେମନ୍ତ ସ୍ୱରୂପେ ଅଛୁ । ତେତେ ତହୁଂ କ ପରକାଶ ହେଉଅଛୁ । ଏହା କହିବୁ ମୋତେ । ଜନ୍ମ ହୋଇଲା ଉତ୍ତାରୁ ଶିଷ୍ୟ କରିନେବି ତେତେ (୯) । ଏମନ୍ତରେ ସେ ଅବଧୂତ ଅହଂକାର (୧୦) କଥା କଲା । ପଚ୍ଛୁଂ । ଅନ୍ତର୍ଗତେ ଥାଇ ସେ ଗର୍ଭ ପୁରୁଷ ବିଚାରିଲା ତହୁଂ । ଏ (୧୧) ପୁରୁଷ ତ ଈଶ୍ୱର ନୁହଂଇ । ଏହାର ଅଳ୍ପବୁଦ୍ଧି । ଅଭ୍ୟାସ ଯୋଗେ କେବଳ ଶରୀର ଭରିଅଛି ସିଦ୍ଧି । ଜାଣେ ଇଧି । କାପାଳିକ ବୁଦ୍ଧି (୧୨) । ସର୍ବଥା ଆନନ୍ଦ ଶୂନ୍ୟ । ଏ ଜ୍ଞାନାନନ୍ଦ ଶୂନ୍ୟ । ଦେହାଭିମାନ ବଢ଼ୁଅଛି । ଅହଂକାର ଭାବ ସାଧୁଅଛି (୧୩) । ଏହାର ଗଢ ସ୍ଥିତ ମଠ ଆଦି କରି କର୍ମଚେଷ୍ଟା ପଚାରିବା । ଅଭ୍ୟନ୍ତର ବିଚାରିବା (୧୪) । ଦୟା କ ମାୟା ଶୁଣିବା । ବାହ୍ୟ ଭୂମି ଜାଣିବା (୧୫) । ଏମନ୍ତ ବିଚାରି ସେ ଅଭିନବ ଚୈତନ୍ୟ ନାମେ ରୁଦ୍ରଗଣ ବୋଲୁ ଅଛି । ହେ ପୁରୁଷ ତୁ କାହିଁ ଅଛୁ । ତୋତେ କ କ ଦଣଇ । ତୁ କ ବିଚାରୁଥାଉ । କ ବ ରୁଥାଉ (୧୬) । ତୋହର ଅନ୍ତର କେବଣ । ଏହା ମୋତେ କହ । ଏମନ୍ତ ବୋଲନ୍ତେ ସେ ଅବଧୂତ ବୋଇଲା । ହେ ମହାତ୍ମା ମୁଁ ଜଗତେ ଅଛି । ଜଗତ ମୋତେ ବସ୍ତୁ ପ୍ରାପ୍ତେକ

---

(୧) 'ଖ' ପୀଡ଼ା (୨) 'ଖ' ଆତ୍ମା ହାଦେ ଆନ ନପାଇ (୩) 'ଖ' ଗୁହ (୪) 'ଖ' ଶ୍ରୁତ
(୫) 'କ' ଅପୂର୍ବ (୬) ଶୀତଳ (୭) 'କ' ରେ ନାସ୍ତେ ତୋହର ହୋଇଲାନ ସିଦ୍ଧି ।
(୮) 'କ' ରେ ନାହିଁ (୯) 'ଖ' ରେ ଏମନ୍ତ ଶରୀରୁ କରିନେବ ତୋତେ ପର୍ଯ୍ୟନ୍ତ ନାହିଁ
(୧୦) 'ଖ' ଅଧିକାର । (୧୧) 'ଖ' ରେ ଏ ବାକ୍ୟ (୧୨) 'କ' କପୋଳେକ ବୁଦ୍ଧି
(୧୩) 'କ' ରେ ଭାବ ଭାର ସହିଅଛି । (୧୪) 'ଖ' ରେ ନାହିଁ (୧୫) 'କ' ରେ ନାହିଁ ।
(୧୬) 'ଖ' ରେ ନାହିଁ

Digitized by srujanika@gmail.com

ବଶଇ । ବଚନ ଭ୍ରାନ୍ତ ହୋଇ ପ୍ରକାଶୁ ଅଛୁ । ଜଗତ ମୋହିତ ହୋଇଅଛୁ (୧) ଏମନ୍ତ ବସ୍ତୁରଇ । ଆକାଶର ପ୍ରାଣ୍ଡେକ ହୋଇ, ସମସ୍ତଠାରେ ପୂରିଅଛୁ । ମହାକାଶତରେ ବସ୍ତାନ୍ତ ହୋଇଥାଇ । ମୋହ ତନ୍ତୁଂ ଆଉ ବଡ଼ ନାହିଁ । ଏମନ୍ତ ବୋଲି ସେ ଅବଧୂତ ବୋଇଲେ । ଏହା ଶୁଣି ସେ ରୁଦ୍ରଗଣ ବୋଇଲେ ।

ଜଗତ ବୋଲି କ ବସ୍ତୁ । କେମନ୍ତ ଦିଶଇ ତାହା କହ । ଯୋଗୀ ବୋଇଲେ ହେ ବତ୍ସ ! ତଳେ ପୃଥିବୀ ପ୍ରାଣ୍ଡେକ ହୋଇ ନାନାକାର ସ୍ଥୂଳ, କଠିଣ ହୋଇ ବଡ଼ ବିସ୍ତାର ସ୍ଥଳେ ନ ଦିଶଇ । (୨) ଭ୍ରମର ବୋଇଲେ ତଳ କଣ । ଯୋଗୀ ବୋଇଲେ ଉପର ଜାଣିଲେ ସେ ତଳ ଜାଣିମାନ । ତୋତେ ଏତେକ ତଳ ଉପର ନାହିଁ । ହାଦେ ପ୍ରାଣ ପବନକୁ ଶଙ୍ଖିନୀ ମାର୍ଗେ ନାଇଁ ଆକୁଞ୍ଚନ କଲେ ସେ ଯେଉଁ ଆଡ଼କୁ ଚଳଇ ତାହାକୁ ଉର୍ଦ୍ଧ୍ୱ ବୋଲି । ଏବେ ତୋର ବଚନ ଜାତ ହେଉଅଛୁ ଯେଉଁ ବାକ୍ୟରୁଂ ସେ ମଧ୍ୟ ଅଟଇ । ଅପାନ ପବନ ଯେଉଁ ଆଡ଼କୁ ପେଲିଅଛୁ ସେ ହାଦେ ଅଧ ଅଟଇ । ଏମନ୍ତ ହୋଇ ପୃଥ୍ୱୀ ସ୍ଥଳୀ ଅଛୁ । ଏ ପୃଥ୍ୱୀକି ମେଖଳାକାର ସମ୍ପୂର୍ଣ୍ଣ ହୋଇ ସମୁଦ୍ର ବେଢ଼ିଅଛୁ । ଏ ବଡ଼ ବଚନ ଅଟଇ । ଫେନ ବୁଦ ବୁଦ ବୀଚ ଆବର୍ତ୍ତ ନଡ଼ ଗମ୍ଭୀର ଅନେକ ବିସ୍ତାର । ଏମନ୍ତ ହୋଇ ନୀଳ ଉତ୍ପଳଜଳର ପ୍ରାଣ୍ଡେକ ସାଗରେକ (୩) ଆଚ୍ଛାର ଥାଇ । ଉପରେ ସୂର୍ଯ୍ୟ ହୋଇ ବୋଲି ବସ୍ତୁଏକ ପ୍ରକାଶ କରୁଥାଇ । ତାଙ୍କମାନ ନକ୍ଷତ୍ର ପଟଳ (୪) ପ୍ରାଣ୍ଡେକ ହୋଇ ଦିଶୁଥାଇ । ଗ୍ରହ ଦିବସ ମାସ କାଳ ଋତୁ ଗଣନା ହେଉଥାଇ । ଏଥିମଧ୍ୟେ ପବନ ଅନେକ ସଞ୍ଚରୁ ଥାଇ । ଅନ୍ତରୀକ୍ଷ ମଣ୍ଡଳ ବଡ଼ ବିସ୍ତାର । ଏମନ୍ତ ଅଧିଷ୍ଠାନ (୫) ଜଗତରେ ଅନେକ ମୂର୍ତ୍ତି ହୋଇ । ଏକପଦ । ଦ୍ୱିପଦ । ଚତୁଷ୍ପଦ । ଅଷ୍ଟପଦ । ବହୁପଦ ହୋଇ କୀଟ ପତଙ୍ଗ ସ୍ଥାବର ଜଙ୍ଗମ ମନୁଷ୍ୟ ରାକ୍ଷସ ଗନ୍ଧର୍ବ କିନ୍ନର ପକ୍ଷୀ ମଧ୍ୟ କରି ଅନେକ ଜନ୍ତୁମାନେ ଉଦେ ହୋଇଥାନ୍ତି । ବୃଷ୍ଟି ହୋଇ ରତୁକେ । ଜଳଧାରମାନେ କେଉଁ ସମୟରେଟି ବରଷୁଥାଇ । ଆହୁରି ବଚନେକ । ବିଜୁଳି କେଁାଠ ଏକ । ସେ କାହିଁ ଥାଇ ନ ଜାଣି । ପରମଶୂନ୍ୟରୁ (୬) ଟୁଟୁଟୁ (୭) ମାରୁଥାଇ । ଗର୍ଜନମାନ ଆକାଶରେ (୮) ଶୁଭୁଥାଇ । ପଥର ସ୍ୱରୂପେ ପରମ ଶୂନ୍ୟରୁ ପଡ଼ୁଥାଇ । ଏ ଗଗନମଣ୍ଡଳ ଗୋଟି (୯) ବଡ଼ ବଚନେକ । ହାଦେ ଶୀତ ପୀତ ହରିତ ଲୋହିତ ଧୂମ ସତ୍ତ୍ୱ ରଜ ତମ (୧୦) ପାଣ୍ଡୁର ହୋଇ ନାନା ବର୍ଣ୍ଣ ଧରୁଥାଇ । ସେ ଏମନ୍ତ ଜଗତ ଧାରଣାରେ ଆମ୍ଭେ ଜୀବମାନେ ଅଛୁ । ଆମ୍ଭଙ୍କୁ କେବଳ ଥୋକାଏ ବେଳ (୧୧) ଜାଗ୍ରତ ହୋଇ (୧୨) ଅବସ୍ଥା ଏକ ହୋଇ । ଥୋକାଏକ

(୧) 'କ' ଜଗତ ମୋହନ ତହିଁ ଅଛୁ । (୨) 'କ'ରେ ପୃଥିବୀ ବୋଲି ସ୍ଥୂଳ, କଠିଣ ଗନ୍ଧ ପାଣ୍ଡବର୍ଣ୍ଣ ହୋଇ ବଡ଼ ବିସ୍ତାରେକ ହୋଇ ସ୍ଥଳେ ନ ଦିଶଇ (୩) 'ଖ' ରେ ନାହିଁ (୪) 'ଖ' ରେ ନାହିଁ (୫) 'ଖ' ରେ ଅଧିକ ଅଛି (୬) 'ଖ' ରେ ପୂରଣ (୭) 'କ' ଟୁଟୁକର (୮) 'କ' ଆକାଶରୁ । (୯) 'ଖ' ଘୋଟାର (୧୦) 'କ' ରେ ନାହିଁ । (୧୧) 'ଖ' ରେ କେବଳ ନାହିଁ । (୧୨) 'କ' ରେ ବୋଲି

Digitized by srujanika@gmail.com

ବେଲ ସ୍ୱପ୍ନ ହୋଇ (୧) ପ୍ରକାଶ ହୋଇ । ଏଥି ସୃଷ୍ଟ ଶରୀର ଯେଉଁ ଏହି କଥାମାନ ବିଚାର କରି ଦେଖୁଥାଇ । ତହୁଁ ସୁଷୁପ୍ତି (୨) ବୋଲି ଅବସ୍ଥାଏ ହୋଇ । ସେହି ଅଜ୍ଞାନ ଅବସ୍ଥା ତହୁଁ କିଛି ହୁଁ ଭାବ ନଜାଣି । ଏମନ୍ତ ହୋଇ ଶରୀରକୁ ଗ୍ରହଣ କରୁଥାଇ । ଏକଥା ଶୁଣି ଗର୍ଭ ପୁରୁଷ ବୋଇଲେ । ଶରୀର କେମନ୍ତ ।

ଯୋଗୀ ବୋଇଲେ ଏ ବଡ଼ ବିଚାର । ହାଡ଼େ ଚତୁର୍ବିଂଶତି ତତ୍ତ୍ୱ ପୁଣ୍ଡ ହୋଇ ଶବ୍ଦରେକ ହୋଇ (୩) । ସ୍ଥୂଳ ଗୋଟିଏ ଉଦେ ହୋଇ । ସେ ସ୍ଥୂଳହୁଁ ଆପଣ ହୋଇଥାଇ । ସେ ଶରୀର କଥା ହାଡ଼େ ଶୁଣ । ନବ କୋଟି କଳା (୪) ହୋଇଥାଇ । ଏଥି ଉପର ଖଣ୍ଡ କଠିନ ହୋଇ ଶିର ବୋଲି (୫) । ତହୁଁ କୃଷ୍ଣ ବର୍ଣ୍ଣ ହୋଇ ଲୋମ ଲେଖ୍ୱଏ ଥାଇ । ତହୁଁ ତଳକୁ ହୋଇ ଦ୍ୱାର ଦୁଇ ଗୋଟା ଦିଶଇ । ତାହା ବଡ଼ ଅଦ୍ଭୁତନ କରି ନିର୍ମାଣ କରିଅଛି (୬) । ସେ ତଳ ହିଳ ପାଣିଫୋଟକା ପ୍ରାୟେକ ଦୁଇଗୋଟି ଅଛି । ତେଣେ ଭଳ (୭) ଏ ବସ୍ତୁମୟ ପ୍ରପଞ୍ଚ ଜଗତ ଦିଶଇ । ତାହାକୁ ଚକ୍ଷୁ ବୋଲି । ସେ ଚକ୍ଷୁଦ୍ୱାରର ବେନି ପାର୍ଶ୍ୱେ କର୍ଣ୍ଣ ବୋଲି ଦୁଇ ରନ୍ଧ୍ର (୮) ଗୋଟା ଅଛି । ସେ ରନ୍ଧ୍ର ଫେଡ଼ିଲେ ସକଳ ବର୍ଣ୍ଣ ଉଚ୍ଚାରଣ ଶବ୍ଦମାନ ଶୁଭଇ । ହସ୍ତେ କରି ବୁଜିଲେ କିଛି ହୁଁ ନ ଶୁଭଇ । ଏକା ଘଁ ଘଁ ହୋଇ ଧ୍ୱନିଏ ବାଜଇ । ତହୁଁ ମଧ୍ୟରେ ଚଢ଼େଇ ଅଣ୍ଡ ପରି (୯) ହୋଇ ନାସିକା ବୋଲି । ଖଣ୍ଡେ ସେ ପୁଟ ଦ୍ୱୟ ହୋଇ (୧୦) । ସେ ଦୁଇ ପୁଟରେ ପବନ ସଞ୍ଚରୁଥାଇ (୧୧) । ସେ ପବନ ରହିଲେ ମନୁଷ୍ୟ ମରଇ (୧୨)

କୁମର ବୋଇଲେ ମରିବାର କେମନ୍ତ । ଅବଧୂତ ବୋଇଲେ. ସକଳ ଚେଷ୍ଟା ନ ଜାଣଇ । ସେ ଶରୀର ପଡ଼ିଗଲି ହୋଇ । ସେ ଯେଉଁ ପୃଥ୍ୱୀ ତଳେ କହିଲି ତହୁଁ ଲୀନ ହୋଇ । ଆଉ ବେଳେ ନହୁଁ ଚହଲିବ ନ ଦେଖି । ଶାସ୍ତ୍ରେ ବୋଲଇ ଲେଉଟି ଦେହ ପାଇ କର୍ମବଶେ । କୁମର ବୋଇଲେ ଶାସ୍ତ୍ର କିସ । ଯୋଗୀ ବୋଇଲେ··ସବ ସ୍ୱରୂପ କଥାମାନ କହୁଥାଇ । ତାହା କର୍ଣ୍ଣ ଦ୍ୱାରେ ଶୁଣୁଥାଇ । ତାହା ଅନ୍ତସ୍ଥଳେ ବିଗ୍ଭରୁଥାଇ । ଏଥି ତଳରେ ସେ ନାସିକା ତଳେ ବଦନ ବୋଲି ଦ୍ୱାରେକ ଅଛି । ସେ ଦ୍ୱାରେ କହୁଥାଇ । ସେ ଦ୍ୱାର ସବୁ ଦ୍ୱାର ହୁଁ ବଡ଼ ଅଟଇ । ଏହା କଥା ବଡ଼ ଆଶ୍ଚର୍ଯ୍ୟ (୧୩) । ତାହାର ଘୃଣ ପାର୍ଶ୍ୱରେ କେମନ ବେଢ଼ାଇ ଅଛି । ଜୀର୍ଣ୍ଣ କୂପ ଘୃଣ ପାର୍ଶ୍ୱରେ ଯେମନ୍ତ ଘୃଣମାନେ

(୧) 'କ' ବୋଲି (୨) ସମୁଦ୍ର (୩) 'ଖ' ଚତୁର୍ବିଂଶସ୍ୱାନ୍ତ ବ୍ରହ୍ମ ହୋଇ ପିଣ୍ଡପ୍ରାୟେକ ହୋଇ (୪) 'କ' ଦଳ (୫) 'ଗ' ରେ ଶିର ବୋଲି ନାହିଁ । (୬) 'କ' ତାହା ବଡ଼ାସ୍ଥିତ ନ କରି ନିର୍ମଳ କଲା (୭) 'କ' ଯେଣୁ କରି (୮) 'କ' ରେ କଳା ଦୁଇ ଗୋଟି (୯) 'କ' ପ୍ରାଏ (୧୦) 'ଖ' ରେ ସେ ରନ୍ଧ୍ର ଫେଡ଼ିଲା ଠାରୁ ଦ୍ୱୟ ହୋଇ ପର୍ଯ୍ୟନ୍ତ ନାହିଁ (୧୧) 'କ' ପ୍ରସରୁଥାଇ (୧୨) 'କ' ବକୁଟମ୍ଭ ମରଇ । (୧୩) 'ଗ' ରେ ସେ ଦ୍ୱାର କଥା ସବୁହୁଁ ବିଚାର ବଡ଼ ଆଶ୍ଚର୍ଯ୍ୟ ।

Digitized by srujanika@gmail.com

ଲଗିଥାନ୍ତି ସେହି ପ୍ରକାର । ସେ ବକ୍ଷ ଦ୍ୱାର ସବୁ ଦ୍ୱାରଙ୍କଠାରୁ ବଡ଼ ଅଟଇ । ତହିଁ ଭିତରେ ଅମଙ୍ଗଳ ଅଛି ଯେ ଅଟଇ ହାଡ଼ (୧) । ଏତେ କରି ଅର୍ଗଳ ଦେଇ ଅଛି । ତାହାକୁ ଦାନ୍ତ ବୋଲି । ତହିଁ ଭିତରେ ଜିହ୍ୱା ବୋଲି ବସ୍ତୁଏକ ମର୍କଟୀ ଖଟାଇଛି ଅଛି । ସେ ମର୍କଟୀର ଶରୀର ସର୍ପର ପ୍ରାୟେକ ଅଛି । ନିରନ୍ତରେ ସ୍ୱାଦୁ ପଦାର୍ଥ ହିଁ ସେ ଲୋଡ଼ଇ । ଜଳେ କରି ନ ଧୋଇଲେ ପୂତି ଗନ୍ଧ ଗନ୍ଧଇ । ଏଥିତଳେ କଣ୍ଠ ବୋଲି ଶରୀର (୨) ଅଙ୍ଗ ଗୋଟିଏକ ଅଛି । ତହିଁ ତଳେ ମର୍ଦ୍ଦଳାକୃତି (୩) ହୋଇ ଟୋଟିଏ କର ଚରଣ ବିକାର ହୋଇ ଅଛି । ଏକ ସ୍ଥୂଳେକ ବିକାର ହୋଇଅଛି (୪) । ଏମନ୍ତ ସ୍ୱରୂପ ହୋଇ ଦେହ ଅଟଇ । ଏଥିକୁ ପଞ୍ଚଭୂତଙ୍କର ସମ୍ବନ୍ଧ ଆହାର ପଦାର୍ଥମାନ ଯେ ବକ୍ଷ ବିମ୍ବର ଭିତରେ ଭରି ଦେଉଥାଇ । ଘଣ୍ଟିକା (୫) ବୋଲି ଯେ ତାଳୁକା ଦ୍ୱାରେ ଲମ୍ବିଅଛି, ସେ ପବନର ବଳେ ଆହାର ଭିତରକୁ ନେଉଥାଇ । ନେଇ ନାଭି ଚକ୍ରେ ଚୂର୍ଣ୍ଣ କରୁଥାଇ । ଏଥି ଏମନ୍ତ ବିଚକ୍ଷେଣ ଅଛି । ଜଠରାଗ୍ନି ବୋଲି ପଦାର୍ଥେକ ଯେ ନ ଦିଶଇ । ପାଣି ପଡ଼ିଲେ ଆନ ଅଗ୍ନି ଲିଭଇ । ସେ ଅଗ୍ନି ଅଧିକ ଜଳଇ । ସେ ଆହାର ମାନଙ୍କୁ ପାକ କରୁଥାଇ । ମଳ ମୂତ୍ର ଦ୍ୱାରେ ଶେଷ ବାହାର ହେଉଥାଇ । ଏମନ୍ତ ପ୍ରକାରେ । ଦେହ ହୋଇ । ଏ ଦେହ ଇନ୍ଦ୍ରିୟ ସୁଖ ଆବୋର (୬) ଦୁଃଖ ସୁଖ ପାଉଥାଇ ।

ଏ କଥା ଶୁଣି ସେ କୁମର ବୋଇଲା । ଆହୋ ତୋତେ ଏମନ୍ତ ବିକାର ହୋଇ । ଅବିଦ୍ୟା ପ୍ରପଞ୍ଚ (୭) ଯେ ଭୂମିରେ ପ୍ରକାଶ ହେଉଅଛି । ଏ ଭ୍ରମିତ୍ର ସ୍ୱପ୍ନ ସେହି । ଏ ହାଦେ କିଛି ନୋହଇ । ଏକା ଶୁଦ୍ଧ ଚୈତନ୍ୟ ମାତ୍ରକ ସେ ଜଗତରେ ଅଛି । ଭ୍ରମ ବୁଦ୍ଧିରେ (୮) ତୋତେ ଅବସ୍ଥା ସ୍ୱପ୍ନରେ ଏମନ୍ତ ଦିଶଇ । ହାଦେ ଯେତେ ଲୋଗୁନ (୯) କହିଲୁ ଏସବୁ ଅନ୍ତଃକରଣ ଭିତରେ ଅଛି । ପୁଣି ବାହ୍ୟ ପ୍ରକାର (୧୦) ଦିଶଇ । ଏବଂ-ଭୂତ ଚରସ (୧୧) ସଂଯୋଗ ଯେନନ୍ତେ ଇନ୍ଦ୍ରିୟମାନନ୍ତ ତୁଷ୍ଟ କରଇ । କଳ୍ପନା ନିଦ୍ରାକୁ ବୀଜ ସ୍ୱପ୍ନ ପ୍ରକାଶ ହେଉଅଛି । ଏସବୁ ମନୋମୟ ବିକାର ସେହି । ମାୟାକୁ ମାୟା ଦର୍ଶିଲ (୧୨) ପ୍ରାୟେକ ହେଉଅଛି (୧୩) ସ୍ୱପ୍ନେ ଇନ୍ଦ୍ରଜାଲ ପରି ପ୍ରଳାପ ପ୍ରାୟେକ ସେହି । ଏହା-ଶୁଣି ମନେ ମନେ ପୁଣି ଆଶ୍ଚର୍ଯ୍ୟ ପାଇଲା । ଆମ୍ଭାକୁ ଧାଇଁ ବୁଦ୍ଧିରେ ଭାଳିଲା । ଗର୍ବ ଗଳିଲା । ବଣା ପାଇଲା । ସ୍ତମ୍ଭୀଭୂତ ହୋଇଲା । କୁମରକୁ ବୋଇଲା ବାବୁ ତୋତେ ତହିଁକି ପ୍ରକାଶ ହେଉଅଛି । ମୋତେ କହ । ତୁ କି ଜାଣୁ, କି ଦିଶଇ, ଗୁପ୍ତ ଦିବସ ତୋତେ କି ପ୍ରକାଶଇ । ମାତାର ଜାଗ୍ରତ ସ୍ୱପ୍ନ ସୁଷୁପ୍ତି ତୋତେ କି ଦିଶଇ କହ । ଏବଂଭୂତ ବଚନ ଶୁଣି ସେ ଗର୍ଭ ପୁରୁଷ ବୋଲୁଅଛି ଆହୋ ତୁ ଯାହା ପଚାରିଲୁ (୧୪) ।

---

(୧) 'ଖ' ରେ ହାଡ଼ (୨) 'କ' ରେ ସବୁ (୩) 'କ' ସ୍ଥୂଳାକୃତି (୪) 'ଖ' ରେ ନାହିଁ (୫) 'କ' ଘଟିକା (୬) 'କ' ସୁଖ ସେନ (୭) 'ଖ' ରେ ନାହିଁ (୮) 'କ' ଅଣିମା ଚେଷ୍ଟାରେ (୯) 'କ' ଲେକ (୧୦) 'କ' ପୂର୍ଣ୍ଣ ବାହାର ପ୍ରକାର ପ୍ରାୟେକ (୧୧) 'କ' ପଞ୍ଚଭୂତଙ୍କର (୧୨) 'କ' କପିଳ (୧୩) 'ଖ'ରେ ଏସବୁ ଠାରୁ ହେଉଅଛି ପର୍ଯ୍ୟନ୍ତ ନାହିଁ (୧୪) 'ଖ' ରେ 'ଆହୋ' ନାହିଁ, ତୁ ଯେତେକ କହିଲୁ ।

Digitized by srujanika@gmail.com

ହାଦେ କଛୁ ତବସ ପଶସନ୍ତେ (୧) କାହୁହିଂ ନ ଦଶଇ, ନ ଜାଣଇ । ଜଗତ ଅଜଗତ ମୁହିଂ ମୋହର ଏମନ୍ତ ଭାବ ନ ଜାଣଇ । ପରମ ଅବ୍ୟକ୍ତ (୨) ସେହି ଜାଣି ନୁହଇ । ମୁହିଁ ଜ ଲାବରେ ଥିଲ । ପୁଣି କ ହୋଇଲି ଏହା ନ ଜାଣଇ । ସୁ-ଷମେ (୩) ଭ୍ରମର କାଷ୍ଠ ଗୁହାରେ ପଶିଲେ ଯେମନ୍ତ ଧ୍ୱନି ଏକ ଶୁଭଇ, ତେମନ୍ତ ଶବେକ ଏ ରୂପେକ ହୋଇ ଜାତ ହୋଇଲା । ହୋଇ ନାନା ପ୍ରକାରେ ତହିଂ ଶବ୍ଦ ଶୁଭିଲା । ଏମନ୍ତ ଭାବ ଶବ୍ଦରୁ ଏବେ ହିଂ ମୋହର ଆସୃତ ନୁହଇ (୪) । ଏ ମାୟାକୁ ମୂଳ ହୋଇ ଯେ ବଶ୍ୟକର୍ତ୍ତା ଈଶ୍ୱର ଅଛି । ସେ ଏହା ଜେମନ୍ତ କଶ କା କରଇ କହି ନୋହଇ । କର୍ମେ ହାଦେ ପୂର୍ବ ମୋତେ ବିଯୋଗ ସ୍ମରଣ କଶ (୫) ମୁଁ ଏତେ ଦୂର ଚକୋଇଲି । ହାଦେ ଏଥିରେ ଯେଉଁ ମବନ ପ୍ରକାଶ ହେଉଅଛି, ସେ ମାତାଗର୍ଭ ପବନ ବେଗ ହୋଇ ବହିଲେ ମାତାର ସ୍ୱପ୍ନ ବୋଲି ଜାଣେ । ନାଡ଼ୀଚକ୍ର ଚଳଲେ ତାହାର ବଚନ ବୋଲି ଜାଣଇ । କଡ଼ ଲେଉଟାଇଲେ ବଡ ଦୁଃଖ ପାଇ । କ୍ରମେ ଶୀତଳ ଉଷ୍ଣ ହିଂ ସହି ନୋହିଲା (୬) ଏ ଉଦରେ । କେଉଂ ସମୟରେକି ଶୀତଳ ହୋଇ ତା ଭାବେ କମ୍ପଇ । କେଉଂ ସମୟରେ ଉଷ୍ଣ ହୋଇ । ଏଥିକୁ (୭) ଅଧିକ ପତନମାନେ କର୍ଣ୍ଣ ନାସିକା ଦ୍ୱାରେ ପଶୁଥାନ୍ତି । ହାଦେ କହିଂଣସି ବେଳେ ଅନ୍ଧକାର ଯେ ତେଜୋମୟ ହୋଇ ଜ୍ୟୋତି ପ୍ରତ୍ୟେକ ପ୍ରକାଶଇ । ସେ ଉବସ ହୋଇବଟି ଭ୍ରମର ମତେ । ଅହୋ ଏଥିକୁ ହୁରଜାତ ହୋଇଲିଉଂ ମୁଂ ଦୁଃଖୀବୋଲି ଜାଣଇଂ । ଶିର ତଳକୁ ହୋଇଲେ ଜନନୀ ସ୍ଥଳବାର ଜାଣଇ । କେଉଂଣିସିବେଳେ ପୂର୍ବ ଦକ୍ଷିଣକୁ ଯାଇ । କାହିଂ ନ ଲାଗଇ । ସମସ୍ତ ଭାବ ବିଲକ୍ଷଣକୁ ଯାଇ । ସେ ଅବୀଜ ବିଜ୍ଞାନ ସୁଖ ଅଟଇ । ତହିଂ ବୁଦ୍ଧି ଜ୍ଞାନ ହୋଇବା ମାତ୍ରକେ ଜଗତ ଭାବ ଆବୋରଇଟି । ହାଦେ ଅହଂକାର ଜାତ ହେବା ମାତ୍ରକେ ସକଳ ଦୁଃଖ ହୋଇଟି ।

ଏମନ୍ତ ବୋଲି ରୁଦ୍ରଗଣ ବୋଇଲା । ଏ ଜଗତ ସ୍ୱପ୍ନସିଦ୍ଧି ସେହି । ଭ୍ରମିବା ମାତ୍ର । ଏଥି ବାହାର ହୋଇଲେ ଦ୍ୱିବିଧା ଭାବେ ମୋହ ପାଇ । ଭ୍ରମ ସ୍ୱରୂପେ ପ୍ରକୃତିମୟୀ ମାୟା ବଳେ ଆବୋରଇ । ମୁହିଂ ହାଦେ ତାହାକୁ ଭୟ ପାଇଅଛି । ହାଦେ ଦର୍ପଣ ଭିତରେ ଯେମନ୍ତ ପର୍ବତ ଦଶଇ । ବଟ ବୃକ୍ଷରୁ ବୀଜ ପଶ ଯେସନେ ବୃକ୍ଷ ପ୍ରକାଶଇ (୮)। ସେହି ମତ ପ୍ରଚଣ୍ଡ (୯) ମାତ୍ରକେ ଏ ଜଗତ ଆଶ୍ରୟଇ । ପ୍ରତିଭା ପ୍ରାପ୍ତ ପ୍ରତିବିମ୍ବ ଅଛି । (୧୦) ବୁଦ୍ଧିରୁ ବାହା ଶୁଦ୍ଧ ଭାବୁଂ କଶ କଳ୍ପି ଅଛି । ବସ୍ତୁମଧ୍ୟେ କଶ ଏ କଳ୍ପନାରୁ ଭିନ୍ନ

(୧) 'ଖ' ଳି କହିବୁ ସେ ପର୍ଯ୍ୟନ୍ତ (୨) ଆଦକୃତ (୩) 'ଖ' ସୂକ୍ଷ୍ମେ (୪) 'ଢ' ରେ ତଦନ୍ତରେ ଶ୍ରବଣ ଦ୍ୱାରୁଂ ମୂର୍ତ୍ତିବିବେକ ଜାତ ହୋଇଲା । ସେ ଅନ୍ଧକାର ଭିତରୁ ଶୀତ, ପୀତ, ଲୋହିତ, ପାଣ୍ଡୁର ହୋଇ, ହରିତ ହୋଇ ଜ୍ୟୋତି କଣାମାନେ ନାନା ପ୍ରପଞ୍ଚମାନେ ହେଇ ସ୍ଫୁରୁଥାଇ । ମୁଂ ପୁଣି ତାହା ଦେଖୁଥାଇ । ଏମନ୍ତ ବୁଦ୍ଧି ହୋଇବାର କଶ ଅନ୍ତଃକରଣ ଭାବେ ହୋଇଲା । (୫) 'କ' ସ୍ମରଣ କଶ । (୬) 'କ' ସହି ନ ହୋଇ (୭) 'କ' ଏଥିହୁ (୮) 'କ' ବଟ ବୀଜ ଭଣିବାରୁ ଯେମନ୍ତ ବୃକ୍ଷ ପ୍ରକାଶଇ (୯) 'କ' ପ୍ରମାଣୁ (୧୦) 'କ' ପ୍ରତିବିମ୍ବ ହୋଇ ଅଛି ।

Digitized by srujanika@gmail.com

ନାନା ପ୍ରପଞ୍ଚ ଜଗତ ଉଦେ ହୋଇଅଛି । ଜଳରୁ ବିବିଧ ତରଙ୍ଗ ଭ୍ରାନ୍ତି ଯେମନ୍ତ ସେହିମତ କଳ୍ପିତ ସେତି । ଆପଣା ଭାବୁଁ ସ୍ଫୁରିଲା ମାୟା । ଆପଣାକୁ ଅଜ୍ଞାନ ଭାବ କଲା । ଜୀବ କଲା । ଜନ୍ମ ମରଣ ଦେଲା । ଭୋ ମହାତ୍ମା ମୁଁ ଏଥୁ ବାହାର ହୋଇବା ସମସ୍ତେ କେଉଁ ଉପାୟେ ଅଜ୍ଞାନ ନେ ହିବ । ଏହି ସୁମରଣା ଥିବ । ଏହା ଜାଣିଥିଲେ (୧) କହ । ଏହା ଶୁଣି ଅବଧୂତ ବୋଇଲା । ହେ ବତ୍ସ ! ନାଭିପଦ୍ମ ଆଡେ ବରି କୁଣ୍ଡଳିନୀ ନାମ ଶକ୍ତି ଏ ଅଛି । ସେ ଶକ୍ତି ଚଆଁ ସ୍ୱରୂପ ଅଟଇ । ଚୈତନ୍ୟ ଏହା ସକାଶୁଁ ହୁଅଇ । ଏ ନିଦ୍ରା ଯାଇଥିଲେ (୨) ଅଜ୍ଞାନ ପୁରୁଷ ଆବେରଇ । ଏ ଫେରୁ (୩) ଧରି ଉନ୍ନିଦ୍ର ହୋଇଲେ ଅଟକ ରହିଲେ ବାହାରେ ବାହ୍ମର ସହସ୍ର ନାଡ଼ୀରେ ପବନ ସଞ୍ଚରଇ । ମନର ଚଞ୍ଚଳ ଭାବୁଁ କରି ନିଦ୍ରା ଯାଇ । ଏହି ର ଇନ୍ଦ୍ରି ଅଗ୍ନ କରି ସାବଧାନ (୪) ଥିଲେ ଅଜ୍ଞାନ ଲୁହଇଟି । ଏହା ଶୁଣି ସେ କୁମର ବୋଇଲା । ଯାହା କହିଲୁ ଦେଖିବା (୫) । ଏହି ସମାନ (୬) ମତ ସେତି । ହାଦେ ମୋହ ମତ ଏମନ୍ତ । ଅଜ୍ଞାନ ସେ ସେ କାଳ ସ୍ୱରୂପ ମାୟା । ଏ ମାୟା ଜଗତକୁ ଆକର୍ଷି ଧହରଇ । ଜାତ କରଇ । ଏକାଳ ଲକ୍ଷ ପ୍ରକୃତ ସେ ଚୈତନ୍ୟ । ପରମେଶ୍ୱରଙ୍କୁ ଆଶ୍ରେ କରି ଏହି ର ଏତେ ଶକ୍ତି । ଏ ମାୟା ପରମେଶ୍ୱରଙ୍କ ଦାସୀ (୭) ଅଟଇ ।

ତ ପରମେଶ୍ୱରଙ୍କୁ ଆଶ୍ରେ କରି ଅନବରତ ଚିନ୍ତା କରୁଥିଲେ କୁଣ୍ଡଳିନୀ ତାହାର ଗ୍ରାସ ଚଆଁଇନ (୮) । ଅଜ୍ଞାନ ଆକ୍ରମଇ ନାହିଁ । ଯେମନ୍ତ ସୂର୍ଯ୍ୟ ଥିଲେ ଅନ୍ଧକାର (୯) ନଥାଇ ତେମନ୍ତ ପ୍ରାୟେକ ଅଟଇ (୧୦) । ହାଦେ ସେ ପରମେଶ୍ୱରଙ୍କୁ ଶାସ୍ତ୍ରମାନେ କହିଅଛନ୍ତି । ନୀଳେ ପୂର୍ଣ୍ଣ ଦଳ ସ୍ୱରୂପ କମଳ ପତ୍ରାକ୍ଷ ବୋଲି (୧୧) ଏହାଙ୍କୁ ସନ୍ଦି କଲେ କୁଣ୍ଡଳିନୀ ଚଏଇଟି । ଆଜ୍ଞା ଆକ୍ରମଇ ନାହିଁ (୧୨) । ଏମନ୍ତ ବୋଲି ସେ କୁମର ବୋଇଲା । ଏହା ଶୁଣି ସେ ଅବଧୂତ ଚମତ୍କାର ପଇଲା । ମନେ ମନେ ବୋଇଲା । ଏମନ୍ତ ଗର୍ଭିତ କାହିଁ ଦେଖିଲି ନାହିଁ ।

ତ ଅବା କେଉଁଶିପି ଦଗପାଳ ଗୋଟିଏ ଏଥେ ରହିଲା । ତା ପ୍ରତକ୍ଷେ (୧୩) ଇଶ୍ୱର ଅବା ଅଇଲା । ଦେଖି ଧର୍ମ ସ୍ଥାପନ ନିମିତ୍ତେ ଏହିକୁ ପରମ ଗୁପତ କଥା ଏ ପଚାରିବା । ଏମନ୍ତ ବୋଲି ସେ ଗର୍ଭପୁରୁଷକୁ ତ କଲା । ଆହୋ ପୁରୁଷ ! ମୋହ ମତେ କାହିଁ ସୁଖ ନୋହିଲା ପ୍ରାୟେକ ଲଗିଲା । ହାଦେ ମନ୍ୱାଦ (୧୪) ଧର୍ମଶାସ୍ତ୍ରମାନ ବୋଲନ୍ତି ପୁଣ୍ୟ କର୍ମମାନ କରି, ପରଲୋକକୁ ଶ୍ରେଷ୍ଠ କରି ପାଇ । ଏଥି ଅହଙ୍କାର ସେତି । ପ୍ରଥମୁଁ ଧର୍ମ କରିବାର ତ ଦୁଃଖ । ତଦୁପରି ପରଲୋକ ଶ୍ରେଷ୍ଠ ବୋଲି କଲ୍ପି ଦୁଃଖ ପାଇ । ସାଂଖ୍ୟମତେ କହଇ ।

---

(୧) 'କ' ଏମନ୍ତ ଉପାୟେ ଜାଣିଥିଲେ (୨) 'କ' ପାଇଲେ (୩) 'ଖ' ଫେର (୪) 'ଖ' ଅବଧାରି (୫) 'ଖ' ରେ ନାହିଁ (୬) 'କ' ମ ଇନ ମତ (୭) 'କ' ଦାସ୍ୟ (୮) 'ଖ' ରେ ନାହିଁ (୯) 'ଗ' ରେ ପ୍ରବକାରକ (୧୦) 'କ' ସେହିମତ ଅଟଇ (୧୧) 'ଖ' ନୀଳୋତ୍ପଳ ଦଳ କମଳ ପ୍ରତାକ୍ଷ ବୋଲି (୧୨) 'ଖ' ରେ ନାହିଁ (୧୩) 'କ' ପ୍ରତ୍ୟକ୍ଷ । (୧୪) 'ଖ' ସ୍ମର୍ତାଦ

Digitized by srujanika@gmail.com

ଦେହ ଇନ୍ଦ୍ରିୟ ବନ୍ଧୁଁ ବିରକ୍ତ ହୋଇ ଆତ୍ମା ମୁକ୍ତ ସ୍ୱରୂପେ ସର୍ବଦା ଅଛୁ ବୋଲି ବିଚାରିଲେ । ଏ ପଦହିଁ ମରଣ ଦୁଃଖ ସେହି । କେବଳ ସ୍ୱଭାବେ ଅନେକ କାଳ ନ ଥାଇ । ଅନେକ କାଳ ଏହି ମତ ଥିଲେହେଁ ଏହି ତ ଦୁଃଖ ସିନା । ପାତଞ୍ଜଳ ମତ ବୋଲଇ କିଛିହିଁ ନାହିଁ । ଜ୍ଞାନ ହିଁ ବୁଝଇ । ଚୈତନ୍ୟ ହିଁ ମାୟା ସେହି ବୋଲି ଏମନ୍ତ ବିଚାରିବା । କିଛି ହିଁ ନ ଜାଣିଲେ ତ ଜନ୍ତୁ (୧) ପ୍ରାୟେକ ହୋଇ ଅଜ୍ଞାନ ଲୟ (୨) ହୋଇଲେ ହେଁ ଏହି ତ ଭଲ ନୋହିଲା (୩) । ଶ୍ରେୟ ତ ନୋହିଲା । ମୀମାଂସାମତ ବୋଲଇ । କର୍ମ କଲେ ଈଶ୍ୱର ଆପଣ ହୋଇ ବୋଇଲେ (୪) କର୍ମେ ଦୁଃଖ ମହାଶ୍ରମ । ଏ ଦୁଃଖ କି ସହି ହୁଅଇ ନାହିଁ ଈଶ୍ୱର ହୋଇ । ଈଶ୍ୱର ଚଢ଼ନ୍ତି ବୃଷଭ ଗୋଟିଏ ଚଢ଼ି ଡମ୍ବରୁ ଗୋଟାଏ ବଜାଉ ଥାଇ (୫) । ଘରକରି କୈଳାସ କନ୍ଦରେ ରହିଥାଇ । କାମ କ୍ରୋଧେ ତ ଥାନ୍ତି । ସେବା କଲ ଲୋକଙ୍କୁ ତ ସଂସାର ସୁଖ ଦେଇ (୬) । ପୁତ୍ର, ଦାର ମମତା ଥାଇ । ପ୍ରଳୟମାନଙ୍କରେ ଦୁଃଖ ସହି । ଦେହ ଗୋଟିଏ ଯେନ ଅଚଳ ସମାଧିରେ ବସିଥାଇ । ଏହି ତ ଦୁଃଖହିଁ ହେଟି । ଏଥି କି ଫଳ ହୋଇଲା । ବୈଶେଷିକ ମତ ବୋଲଇ । ଜଗତସାକ କେମନ୍ତ ଗୋଟାଏ ଜନ୍ତୁ ପରିଏକ ହୋଇଅଛୁ । ପରମେଶ୍ୱର ତ ଏ । ଏଥିରେ କି ସୁଖ ପାଇ ହୋଇଲା । କୌମାରି ମତ ବୋଇଲା । ଏ ବ୍ରହ୍ମାଣ୍ଡ ସ୍ୱରୂପ ପୁରୁଷ ଯେ ବସ୍ତୁ । ଏହାର ପାତାଳମାନେ ଚରଣ । ସମୁଦ୍ରମାନେ ପେଟ । ବଡ଼ବାନଳ ଜଠରାଗ୍ନି । ଅନ୍ତରୀକ୍ଷ ଶରୀର । ଉପର ସାତଲୋକ ମୁକୁଟ (୭) । ଚନ୍ଦ୍ର ସୂର୍ଯ୍ୟ ଚକ୍ଷୁ । ପାତାଳ ବିବର ନାସିକା । ଅଣବୃଣ ପବନ ନିଶ୍ୱାସ । ଧର୍ମ ଶ୍ରୋତ୍ର । ଯମ ଜିହ୍ୱା । ସରସ୍ୱତୀ ବଚନ । ବ୍ରହ୍ମା ଇନ୍ଦ୍ର ଦୁଇଭୁଜ । ପରମାତ୍ମା ବସ୍ତୁ । ମନ ଈଶ୍ୱର । ଚେଷ୍ଟା ମହାମାୟା । ଏମନ୍ତେ ଆତ୍ମା ପରମେଶ୍ୱର ବୋଲି କଲି ଏହାକୁ ଭାବିବା । ଏହାକୁ ଭାବନା ସିଦ୍ଧ କରି ବ୍ରହ୍ମାଣ୍ଡ ମତେ ଦେହ ଗୋଟିଏ ପାଇଲିଟି । ପାଇଲେ କି ଫଳ ହୋଇଲା । ତଦନ୍ତରେ ପାଶୁପତ ମାନେ ବୋଲନ୍ତି । ଜଗତ ଶିବ ଶକ୍ତି ହୋଇ ।

ତ କେମନ୍ତ ପ୍ରାୟେ ହୋଇ । ଚନ୍ଦ୍ର ଶକ୍ତି, ସୂର୍ଯ୍ୟ ଶିବ । ଆତ୍ମାଶକ୍ତି ପରମ ଶିବ । ପୃଥ୍ୱୀ ଶକ୍ତି, ମେରୁ ଶିବ । ସମୁଦ୍ର ଶକ୍ତି, ବଡ଼ବାନଳ ଶିବ । ଶରୀର ଶକ୍ତି, ପବନ ଶିବ । ପବନ ଶକ୍ତି, ମନ ଶିବ । ମନ ଶକ୍ତି; ଚୈତନ୍ୟ ଶିବ । ଚୈତନ୍ୟ ଶକ୍ତି, ମନ ଶିବ । ଏବଂ ଭୂତ ପ୍ରକାରେ ମନ ଶିବ କରି ଜଗତ ଚଳନ୍ତି । ଏମନ୍ତ କରି କଳ୍ପି ମରୁଥିଲେ କି କାର୍ଯ୍ୟ ହୋଇବଟି । ନ୍ୟାୟଶାସ୍ତ୍ରମତେ ବୋଲଇ । ପରମେଶ୍ୱରହିଁ ସେ ଅଛୁ । ଆନ ବସ୍ତୁ ନାହିଁ । ଏହି କି ହୋଇଲାଟି ? ଯେବେ ପରମେଶ୍ୱର ଅଛୁ ଆନ ବସ୍ତୁ ନାହିଁ, ଏହାର ଦୁଃଖ ସବୁ କାହିଁପାଇଁ । ପରମେଶ୍ୱର ଥିଲେ ନ ଥିଲେ ହେଁ ଏହାର ହାନି ବୃଦ୍ଧି ନାହିଁ । ପରମେଶ୍ୱରଙ୍କୁ ଜାଣି ଏହା ଜୀବତ୍ତ୍ୱ ତ ନ ପାରେ ଶଲା । ତର୍କଶାସ୍ତ୍ରମତେ ବୋଲଇ । ଆକାଶର ପ୍ରାୟେ ଆତ୍ମା ସର୍ବବ୍ୟାପ୍ତ ସଦାନନ୍ଦ ସର୍ବ ସମ୍ପୂର୍ଣ୍ଣ ହୋଇ ପୂରିଅଛୁ । ଏମନ୍ତ ବୋଲି ଆତ୍ମାଙ୍କୁ ଆକାଶ ମତକରି । ଆକାଶକୁ ଧ୍ୟାନ କରି ଆକାଶ ଖଣ୍ଡେ ହୋଇବଟି । ଏହି କି

---

(୧) 'କ' ଜଡ଼ (୨) 'ଖ' ଲକ୍ଷ (୩) 'ଖ' ହିତ ଉପ୍ତ ହୋଇଲା (୪) 'କ' ଈଶ୍ୱରର ପଦ ପାଇ (୫) 'କ' ବାଉଥାଇ । (୬) 'ଖ'ରେ ନାହିଁ । (୭) 'କ' ଶିର ।

Digitized by srujanika@gmail.com

ସବ ହୋଇଲା । ତହୁଁ ଅନ୍ତରେ ବୌଦ୍ଧମତ ବୋଲନ୍ତି ଦେହ ଥିଲେ ସେ କାର୍ଯ୍ୟ । ଏ ଦେହ ସୁଖମାନଙ୍କର ସଦନ । ଏ ଥିଲେ ହେଁ ଅବା କି କାର୍ଯ୍ୟ । ପୁଣି ଆତ୍ମ ବ୍ୟସ୍ତ ଏ ତ କିଛି ହିଁ ନୁହଇ ।

ତ ଆତ୍ମା ମିଛ ହୋଇଲା ସ୍ୱେଗ ତ ବସ୍ତୁଗଲେ ନରକ । ଏତେକେ ଏଣେ କି କାର୍ଯ୍ୟ । ତ ଆବହତ ମତ ବୋଲଇ । ଆତ୍ମାଟି ସତ୍ୟ ସ୍ୱରୂପ । ଚୈତନ୍ୟ ହୋଇ ଶବ୍ଦ ଗୋଟାଏ ହୋଇଲେ ହେଁ ଅବା କି କାର୍ଯ୍ୟ । ଚୈତନ୍ୟ କାଶିମା ପଦାର୍ଥ । ଏମନ୍ତ ହୋଇଲେ ହେଁ କାଣି କାଣି ମଲ୍ଲ ଅନେକ କାଳଯାଏ । ତ ଏହ୍ନ ସୁଖ । କାପାଳିକ ମତ ବୋଲଇ । ଦେହ ସିଦ୍ଧହୋଇ । ଆସନ ଯୋଗ ଅଭ୍ୟାସେ ଉଡ଼ିବା ଆକାଶେ ପବନ ହୋଇ (୧) । ଏଥିତ ଧର୍ମକଥା ନାହିଁ । ଚଢ଼ଇ ପ୍ରାପ୍ତ ହୋଇ ଆକାଶ ମଣ୍ଡଳେ ବୁଲୁଥିଲେ ହେଁ କି କାର୍ଯ୍ୟ ହୋଇଲାଟି । ଶାଗୁଣା ଉଡ଼ୁନଥାଇ କି (୨) । ଏ ଈଶ୍ୱର ସ୍ୱରୂପ ଭ୍ରମ ସିନା । ତଦନ୍ତରେ ଲୌକିକ ମତ (୩) ବୋଲଇ । ପ୍ରାଣ ପବନ ସଙ୍ଗତେ (୪) ସେ ଚୈତନ୍ୟ ଅଛି । ନୋହିଲେ ଜଡ଼ (୫) ପ୍ରାପ୍ତେକ ଲପ୍ତେ ହୁଅନ୍ତା । ପ୍ରାଣ ପବନକୁ ନିରନ୍ତରେ ଜାଗିଥାଇ । ଏ ସ୍ଥିର ହୋଇଲାଟି (୬) । ଜଗି ଜଗି ମହାଶ୍ରମ ପାଇ ମଲବ । ତଦୁପରି (୭) ବୁଦ୍ଧାନୁପାସନ ମତ ବୋଲଇ । ଜୀବ ବ୍ରହ୍ମ ହୋଇ କଲ ଜୀବ ବ୍ରହ୍ମ ବୋଇଲେ ହେଁ ଜୀବ ଗୋଟାକୁ ବ୍ରହ୍ମ ବୋଲି ଖାଉଥାଇ । କି ସୁଖ ହିଁ ହୋଇଲାଟି (୮) । ପାଷଣ୍ଡ ମତେ ବୋଲନ୍ତି । ଦେହ ଆତ୍ମା ଏ ସ୍ଥିର ରହି କସ ଅବା । ସ୍ୱପନକୁ ସତ ବୋଲଇ । ନବଦ୍ୱାର ଘରର ମେରଦା ମଧ୍ୟରେ ଆତ୍ମାଦୀପ (୯) ପ୍ରାପ୍ତେକ ହୋଇ ଘୂରଅଛି । ଏମନ୍ତ ବୋଲି ଆତ୍ମାକୁ ଦୀପର ପ୍ରାପ୍ତେକର କରୁଥିଲେ ହେଁ କି କାର୍ଯ୍ୟ । ଶାକ୍ତିକ (୧୦) ମତେ ବୋଲଇ ସମସ୍ତ ପାଶୋରିଲେ ଯେ ରହଇ ସେ ଆତ୍ମା । ଏମନ୍ତ ବୋଇଲେ କି ସବ ହୋଇଲା । ଲଗ୍ନ ସିଦ୍ଧି ବୋଲଇ (୧୧) । ଉପନିଷଦ ମତେ ବୋଲଇ ଚୈତନ୍ୟ ମାତ୍ର ହିଁ ସେ ଏ ଜଗତରେ ଅଛି । ଆତ୍ମା ପ୍ରଭବ ଏ ଜଗତ ଏମନ୍ତ ହୋଇଲେ । ଆତ୍ମାର ପ୍ରତିଭାସ କଥା ଜଗତ ବୋଲି କଳ୍ପି ମଜ୍ଜୁଥିଲେ ହେଁ କି ସୁଖଟି । ବେଦାନ୍ତ ଶାସ୍ତ୍ର ବୋଲଇ । ଆନନ୍ଦ, ଅନନ୍ତ, ଅମୃତ, ଅଭୟ, ସତ୍ତ୍ୱ ବ୍ରହ୍ମମୟ ଜ୍ଞାନ । ଏମନ୍ତ ବ୍ରହ୍ମ ହୋଇଲେ ହେଁ ସୁଖ । ଏହା ଜାଗ୍ରତରେ ନ ଜାଣେ । ସ୍ୱପ୍ନ ହୋଇଲେ ହେଁ ନୁହଇ । ସୁଷୁପ୍ତିରେ ତ ଜ୍ଞାନ ବୋଇଲେ ଶିଷ୍ୟ ମିଥ୍ୟା ଗୁରୁ ପାଇଲା । ନାଏକ କାଣ, ଶିଷ୍ୟ ଜଡ଼, ପଢ଼ାଇବା ଗ୍ରନ୍ଥ କାଳ । ଏହାଙ୍କର ତାହାଙ୍କର ଯେମନ୍ତ ସବୁ ଏମନ୍ତ ପସ ଲେଖିଏ ଯେତି । ଗଧ (୧୨) ମାନଙ୍କୁ ଦାଉଣୀ ପନ୍ଥେ ବାନ୍ଧି ବୁଲାଇବା ପରିଏ ଯେତି । ନବଡ଼ ଛନ୍ଦାରେ କେହି ତ ଧୂଷ୍ଟ ନ ଜାଣିଲେ । ଦେବତା ପଦନ୍ତି କସ ପଦ । ଯେବେ ସମ୍ବନ୍ଧ କର ବାଞ୍ଛା କରିବା । ଯେମାନେ

---

(୧) 'ଖ' ଆସନକୁ ଯେ ଗ ହଠଇ । (୨) 'ଖ' ରେ ସାଗୁଣା ଉଡ଼ୁନଥାଇ କି ନାହିଁ
(୩) 'କ' ମତରେ (୪) 'କ' ସଙ୍ଗମେ (୫) 'କ' ଜଡ଼ (୬) 'କ' ହୋଇଲାଟି ସିଟି
(୭) 'କ' ତଦନନ୍ତର (୮) 'କ' ହୋଇବ (୯) 'କ' ଦୀପ୍ତ (୧୦) 'କ' ସାଙ୍ଖ୍ୟିକ
(୧୧) 'ଖ' ରେ ନାହିଁ (୧୨) 'କ' ଅଜ୍ଞମାନଙ୍କୁ

Digitized by srujanika@gmail.com

ହେଁ ଗୁରୁଦତ୍ତ ବାଞ୍ଛିତ ଧର୍ମ ସିନା । ସ୍ୱର୍ଗରୁ ତ ଚ୍ୟୁତ ହେଉଥାନ୍ତି । ଚିନ୍ତାମଣି ମତ ବୋଲଇ ଏମନ୍ତ । ଯହିଁକି (୧) ଧ୍ୟାନ କରିବ ସେହି ଭାବ ହୋଇ । ହୋଇଲେ କୃତ-କାର୍ଯ୍ୟ କର୍ତ୍ତା ବ୍ରହ୍ମା, ଏହାଙ୍କୁ ତ ବଡ଼ପଦ ନାହିଁ । ବ୍ରହ୍ମପଦକୁ ବିଶ୍ୱର ମନଧ ନ ଦେବା ।

ମନ ଦେଇକରି ବ୍ରହ୍ମ ହୋଇବା ତେଣେ କରି କି କାର୍ଯ୍ୟଟି । ମୃତ୍ତ ଲୂରନୋଟା ହୋଇ । ହଂସ ଗୋଟିଏ ଚଢ଼ି ସୃଷ୍ଟି କରନ୍ତେ କରିବାରେ ଅବସର ନଥାଇ । ପ୍ରଳୟେ ପୁଣି ସନ୍ନିପାତ ବ୍ୟାଧି କରି କାଳର ବଶକୁ ଯିବ । ଏହା କି କଥାଟି । ଏତେକେହେଁ କଉଣସି ମତରେ ହେଁ କେହି ଧର୍ମ ସୂକ୍ଷ୍ମ ନ ଜାଣି ଭୁଲି ମରୁଥାନ୍ତି । ଅହଂକାରୁ ଋଷିମାନେ ଯେ ଯାହାର ମତ ବଳାଇ ପରୀକ୍ଷା କରି ଗ୍ରନ୍ଥ ଲେଖିଏ କଲେ । ଏତେକ କହି ସେ ଅବଧୂତ କୁମରକୁ ବୋଇଲା, ବାବୁ ! ଏବେ ପରମ ଶ୍ରେଷ୍ଠ ପରମ ଶାନ୍ତି (୨) ପରମାନନ୍ଦ, ପରମ ସୂକ୍ଷ୍ମ ସ୍ୱରୂପ ହୋଇ କେଉଁ ପଦେ ଅଛନ୍ତି ତାହା ମୋତେ କହ । ତୁହି ମୋହର ଗୁରୁ ଏହା ମୋତେ ଅନୁଗ୍ରହ କର । ସେ ଅବଧୂତ କୁମର ତହୁଁ ପୂର୍ବ ସମ୍ବାଦ ଶୁଣିଲା ଯହୁଁ । ବିରକ୍ତ ପାଇ ତାହାର ଏତେ ବୁଦ୍ଧି ହୋଇଲା ତହୁଁ । ଏମନ୍ତେ ସେ ଅବଧୂତ ପୁରୁଷ ବିରକ୍ତ ପାଇ, ଜ୍ଞାନାନନ୍ଦ ପାଇ ଅମୃତ ଖାଇଲା ରାକ୍ଷସ ପରି ହୋଇ (୩) କଉଣସି ମତରେ ବିଶ୍ରାନ୍ତ ଜ୍ଞାନାନନ୍ଦ ସୁଖ ପାଇଲା ନାହିଁ । ଏହା ଶୁଣି ସେ କୁମର ବିଚାରିଲା । ଏହାର ବୈରାଗ୍ୟ ଜାତ ହୋଇଲା । ଏ ବଡ଼ ଦୁଃଖୀ ଅଟଇ । ପରମାନନ୍ଦ ପଦ ଏ ପାଇନାହିଁ । ଏମନ୍ତ ବୋଲି ସେ କୁମର ଅବଧୂତକୁ ବୋଲୁଅଛି । ଆହେ ମହାତ୍ମା ତୁ ମୋତେ ଯେତେ ମତ (୪) ମାନ ଭିନ୍ନ ଭିନ୍ନ କରି କହିଲୁ । ଏ ହାଦେ ସବୁ ଏକାମତେ । ଏହା ସୂକ୍ଷ୍ମମତ ପଣ୍ଡିତମାନେ ଜାଣନ୍ତି । ଏସବୁ ମତମାନଙ୍କରେ ଅମୃତଜ୍ଞାନ ରସ ଅଛି । ତୁ ଯହୁଁ ପରିପର ପାଇନାହୁଁ ଏ ମତମାନଙ୍କୁ ଅଦର (୫) କଲୁ । ହାଦେ ଜ୍ଞାନ କହିଲେ ହେଁ ନ ଜାଣିଲୁ ଅଧିକାରୀ ନ୍ୟାୟେ, ପିପିଲିକା ମତେ, ଯୋଗ ଯୁକ୍ତେ, ବାସୁଦେବ ଉକ୍ତେ, ବଚସ୍ପା-ତ୍ୟକ୍ତେ (୬) ପାଇ । ତୋହର ଅନ୍ତଃକରଣ ଅଶୁଦ୍ଧ ଭାବୁ କରି ରଜ, ତମ ଯହୁଁ ନାଶ ହୋଇନାହିଁ । ତେଣୁ ଅମୃତଜ୍ଞାନ ଆନନ୍ଦ ରସ ପାଇନାହୁଁ (୭) । ହାଦେ ଜ୍ଞାନାନନ୍ଦ ରସ ଶୁଣ । ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ, ରୁଦ୍ର, ବ୍ରହ୍ମା, ବିଷ୍ଣୁ, ସାର୍ବଭୌମ ଚକ୍ରବର୍ତ୍ତୀମାନଙ୍କ, ଦକ୍ଷ, କିନ୍ନର, ଗନ୍ଧର୍ବ, ଦଶଦିଗପାଳ, ଏମାନଙ୍କର ହିଁ ସୁଖମାନ ଗୁଣ୍ଡ କରି କଲେ ହେଁ ସେ ପରମ ନନ୍ଦ ପଦକୁ (୮) ନ ଅଣ୍ଟଇ । ତରଣିକୁ (୯) ମେରୁ ଯେତେ ଅନ୍ତର, ପୃଥିବୀକୁ ଅଣୁ ଯେତେ ଅନ୍ତର (୧୦) । ଯେଉଁ ଜ୍ଞାନର କ୍ଷମା ଶକ୍ତିରୁ କଉଣସି ହିଁ କଣା (୧୧) ମାତ୍ରକେ ଏ ଚନ୍ଦ୍ରାଦି ଦିଗଶାଦ (୧୨)

---

(୧) 'ଖ' ରେ ଯାହାକୁ (୨) 'କ' ରେ ପରମ ବିଶ୍ରାନ୍ତ କହ (୩) 'ଖ' ରେ ଜ୍ଞାନାନନ୍ଦଠାରୁ ହୋଇ ପର୍ଯ୍ୟନ୍ତ ନାହିଁ (୪) 'କ' କଥା (୫) 'ଖ' ଅଣାଦର (୬) 'କ' ବଚସ୍ପାନୁମତେ (୭) 'ଖ' ପାଇନାହାନ୍ତି (୮) 'କ' ରେ କଣିକାକୁ (୯) 'କ' ତରଣିକୁ (୧୦) 'ଖ' ପୃଥିବୀକୁ ଅଣୁଯେତେ ଅନ୍ତର ନାହିଁ (୧୧) 'ଖ' କଳନା (୧୨) 'ଗ' ସକଳ ଜଳ

Digitized by srujanika@gmail.com

ଭୂତମାନେ ବାହାରୁ ଅଛନ୍ତି । ଯେ ଆତ୍ମାର ଦାହକ ଶକ୍ତିରୂଟି ପରମାଣୁ କଣାକେ ସକଳ ଚେତନ ହେଉଅଛନ୍ତି ।

ସେ ଆତ୍ମାର ହାଦେ ବଡ଼ପଣ ଶୁଣୁ । ଅଶେଷ କୋଟି ବ୍ରହ୍ମାଣ୍ଡମାନେ ହେ ଭ୍ରାନ୍ତିରୁ ଏମନ୍ତ ସବେ (୧) ଦିଶନ୍ତି । ହାଦେ ବ୍ରହ୍ମାଣ୍ଡେ ଦ୍ରଷ୍ଟା । ସର୍ବ ଶ୍ରୋତା । ସର୍ବଜ୍ଞାତା । ସର୍ବହନ୍ତା । ସର୍ବସହିତା ସମସ୍ତହିଁ ସେ । ତାହୁଁ ବ୍ୟତିରେକେ ବସ୍ତୁ ନାହିଁ । କୋଟି କୋଟି ବ୍ରହ୍ମାଣ୍ଡମାନେହେ ଭ୍ରାନ୍ତିରେ ପୂର୍ଣ୍ଣ ପୂରିଅଛୁ । ପୂର୍ଣ୍ଣିତ ଭକ୍ତ ସେ ନୋହନ୍ତି । ସେ ଶାର୍ଣ୍ଣ ପଣେ ସହସ୍ରଧା ପରମାଣୁ ଅଟନ୍ତି (୨) । ଚିଦାନନ୍ଦ ସୂକ୍ଷ୍ମ ସ୍ୱରୂପ । ଆନନ୍ଦ କୈବଲ୍ୟ ପରମ ଅବ୍ୟକ୍ତ ଏକାତ୍ମକ ବୋଧମୟ ସାକ୍ଷ୍ୟ ସ୍ୱରୂପ ଅଟଇ । ଏହି ରୂ କହିଲେ ହେଁ କାହୁଁ ଜାଣିବୁ ? ଯେମନ୍ତ ଯେ ପଥର ଉପରେ ବୀଜ ବୁଣିଲେ ନ ଉଠଇ । ସସ୍ଥାନ ଭୂମିରେ ବୁଣିଲେ ସେ ଉଠଇ । ତୁ ମାତ୍ର ଜନ୍ମାଇ ହୋଇ । ତୋତେ ବୋଧ କାହୁଁ ହୋଇବ । ଯେଉଁ ଭୂମି ଉପ୍ତରେ ଯେଉଁ ଭୂମି ହୁଅଇ ତାହା କହି ନୁହଇ । ସମସ୍ତ ଜାଣି ଶିଷ୍ୟଙ୍କୁ ଏହା ଇଚ୍ଛାଏ ପ୍ରକାଶ ହୁଅଇ । ଯହୁଁ ମନ ବୁଦ୍ଧିକ ଅଗୋଚର କହି ନୁହଇ (୩) ।

ଏହା ଶୁଣି ସେ ଅବଧୂତ ବୋଇଲା । ହାଦେ ମୁଁ ସାତ ସହସ୍ର ବର୍ଷ ଯୋଗୀ । ତୁ ପେଟର ପୁଅ । ମୁଁ ତୋତେ ଗୁରୁକରି ତୋହର ପାଦପଦ୍ମକୁ ବନ୍ଦୁଅଛୁ । ମୋତେ ଅନୁଗ୍ରହ କର । କେମନ୍ତେ ଆତ୍ମାକୁ ଲଭିବି ତାହା କହ । ଏହା ଶୁଣି ସେ ଗର୍ଭପୁରୁଷ ବୋଇଲା । ଯେମନ୍ତ ଓଝା ଏକାବେଳକେ ଶିଷ୍ୟଙ୍କୁ ପଢ଼ାଇ ପାରଇ ସେହିମତ ଏକାବେଳକେ ବୋଧେ ଉଦେ କରାଇ ନୁହଇ । ଗଡ଼ମାନ ଯେମନ୍ତ ରାଜାମାନେ ଅଙ୍କେ ଅଙ୍କେ କରି ସାଧନ୍ତି ତେମନ୍ତ କରି ସେ ସାଧନା କରି ହୋଇ । ଏବେ ତୁ ନିଷ୍କାମ କରି ପୁଣ୍ୟ କର । ବାସୁ-ଦେବଙ୍କୁ ପରମ ଭକ୍ତି କର । ଭକ୍ତି କରୁଁ କରୁଁ ତୋହର ରଜ ତମ ନିବର୍ତ୍ତି ହୋଇବ । ଅନ୍ତଃକରଣ ଶୁଦ୍ଧ ହେବ । ସତ୍ତ୍ୱାଂଶ ରହିବ (୪) । ସର୍ବଭୂତ ସାତ୍ତ୍ୱିକ ଶରଧାକୁ ଯେନ୍ନ ଜତନ୍ତରେ ଯତ୍ନ କର । କରି ଗୁଣମାନ ଆଚର । କେମନ୍ତ ଗୁଣମାନ । ହାଦେ ମାନ ଗ୍ଲାଡ଼ି, ଦମ୍ଭ ଗ୍ଲାଡ଼ି, ହିଂସା ଗ୍ଲାଡ଼ି, ଶାନ୍ତ ହୋଇ ଆର୍ଜବ ହୋଇ ଆଚାର୍ଯ୍ୟ ଉପାସନା କର । ଶୁଚି ହୋ । ମନକୁ (୫) ନିଗ୍ରହି ଥା । ସ୍ଥିର ହୋ । ଧୈର୍ଯ୍ୟ ହୋ । ଇନ୍ଦ୍ରିୟମାନଙ୍କୁ ବୈରାଗ୍ୟ ପାଆ । ଅନହଂକାର ଅଧ୍ୱଜାସ୍ତି ହୋ । ଜନ୍ମ ମରଣ ଜରା ବ୍ୟାଧି ବୃତ୍ତାଦି ତାପତ୍ରୟ ଦୁଃଖ ନିରନ୍ତର ସୁମରୁଥା । ଅନବରତେ ଈଶ୍ୱରଙ୍କୁ ଶରଣ ଯା । ସମସ୍ତ ଭାବରେ ଆସକ୍ତ ନ ହୋ । ଆତ୍ମାଶକ୍ତ ହୋ । ଅନଭିଷଙ୍ଗ ଏକା ହୋଇଥା । ସମଚିତ୍ତ ହୋ । ସତ୍ୟାଚରଣ କର (୬) । ମୁଁ ଯାହା କହିଲି ସେହିମତ ଆଚର । ଅବ୍ୟକ୍ତ

---

(୧) 'ଖ' ରେ ଅଜ୍ଞାନସ୍ଥ ମନୋଭାବେ ନ ଦିଶନ୍ତି । (୨) 'କ' ସେ ସାନପଣେ ସହସ୍ରଧା ପରମାଣୁହିଁ ପରମାଣୁ ଅଟନ୍ତି (୩) 'କ' ଯହୁଁ ସେ ମନ ବଚନକୁ ଅଗୋଚର କହି ନୁହଇ । (୪) 'ଖ' ରେ ନାହିଁ (୫) 'କ' ଆତ୍ମାକୁ (୬) 'ଖ' ରେ ଆତ୍ମାଶକ୍ତ ହୋ ଠାରୁ ସତ୍ୟାଚରଣ କର ପର୍ଯ୍ୟନ୍ତ ନାହିଁ

Digitized by srujanika@gmail.com

ଆଚରଣ ଭକ୍ତି କର । କନ୍ଦର୍ପୀ ମନୁଷ୍ୟ ସଙ୍ଗରେ ପ୍ରୀତି ନକର । କନ୍ଦର୍ପୀ ବସ୍ତୁରେ ସ୍ନେହ ନକର । ଏମନ୍ତ ଗୁରୁଙ୍କ ନ ଆଚରୁ ଆଚରୁ ହୃଦେ ଉଦ୍ଭୂତ ହୋଇ ବିବେକ ଜାତ ହୋଇ । ସେ ବିଷୟରକୁ ବିବେକ ବୋଲି । ସେ ବିବେକ କେମନ୍ତ ଅଟଇ । ନିତ୍ୟାନିତ୍ୟ ବସ୍ତୁ ବିଚାରଇ । ସେ ନିତ୍ୟାନିତ୍ୟ ବସ୍ତୁ ବିଚାରଇ କିସ । ଏ ଜଗତ ପ୍ରପଞ୍ଚ ଗୋଟା । ଦେହ ସହିତ ହୋଇ ଏ ନିତ୍ୟ କି ଅନିତ୍ୟ ଏହା ବିଚାରି (୧) ଜାଣଇ । ବସ୍ତୁଁ ବସ୍ତୁରୁଁ ଯୁକ୍ତି ପ୍ରକାଶ କରଇ । ଯୁକ୍ତି କିସ । ଏ ରୋଗ, ଶୋକ, ଉତ୍ପତ୍ତି, ବିପତ୍ତି ଏ ଶରୀର ବୃଦ୍ଧ । ଏମନ୍ତମାନ ଯହୁଁ ପ୍ରକାଶ ହୋଇ ହୋଇଲେ ସତ୍ୟ ବୋଲି ସେ ଅଛି ଅଛୁ କି (୨) । ଏହା ମିଥ୍ୟା ପଣ ନ ଜାଣଇ । ଏ ଦେହେ ଦୋଷ, ମୋହ, ଭ୍ରମ, ଅଶୁଭ, ପ୍ରପଞ୍ଚ ନରକ କୁତ୍ସିତ ଏମନ୍ତ ଜାଣଇ । ଜାଣିଲେ ହୃଦେ ବୈରାଗ୍ୟ ଜାତ ହୋଇ । ସେ ବଇରାଗ୍ୟ ଚାରି ପ୍ରକାର । ଶୁଷ୍କ ବଇରାଗ୍ୟ, କୋମଳ ବୈରାଗ୍ୟ ତୀବ୍ର ବଇରାଗ୍ୟ ପ୍ରୌଢ଼ ବଇରାଗ୍ୟ । ହୃଦେ ଚାରି ବୈରାଗ୍ୟର ମଧ୍ୟେ ପ୍ରୌଢ଼ (୩) ବଇରାଗୀ ହୋଇ । ସେ ପ୍ରୌଢ଼ ବୈରାଗୀ କେମନ୍ତ । ବ୍ରହ୍ମାଦି ତୃଣ ପର୍ଯ୍ୟନ୍ତ ଜଗତକୁ ଦେହ ସହିତ କରି ବାନ୍ତ କଲ ଅନ୍ନପ୍ରାୟ ପ୍ରଭାଶଇ । ଏବମ୍ଭୂତ ବୈରାଗ୍ୟରେ ଗୋଟିଏ (୪) ଗୃହ ବ୍ୟକ୍ତ ଆଶ୍ରମ ତ୍ୟାଗ ହିଁ କରଇ । ଶାନ୍ତ, ଦାନ୍ତ, ଉପରତି, ତିତିକ୍ଷା, ଚାରି ପ୍ରକାର ସାଧନ କରଇ । ଏ ଚାରି ପ୍ରକାର ଶୁଣ । ହସ୍ତ ପ୍ରାପ୍ତ ବସ୍ତୁକୁ ବାଞ୍ଛା ନ କରଇ । ଯୁକ୍ତି ନ୍ୟାୟ ଯେ ସତ୍ୟାସତ୍ୟ ହୋଇ । ତାହା ଯଥାକ୍ରମ କରି ଗ୍ରହଣ କରଇ । ଏହାକୁ ଶାନ୍ତ ବୋଲି । ଅନ୍ତଃକରଣ ବହିଦ୍ୱାର ଅନ୍ତଃକରଣ ଦୁଇଠାରେ ବିଷୟ ଗ୍ରହଣକୁ ଅବକାଶ ନିବୃତ୍ତି ହୋଇ । ଏହାକୁ ଦାନ୍ତ ବୋଲି । ବିଷୟ ଭିନ୍ନ (୫) ନୁହଇ । ଯାହାର ଶ୍ରଦ୍ଧା ପ୍ରୀତି ହୋଇ ତାହାକୁ ଉପରତି ବୋଲି । ସୁଖ ଦୁଃଖ, ଭୟ ଅଭୟ, ଉତ୍ପତ୍ତି ଲୟ, ଶୁଭ ଅଶୁଭ, ପାପ ପୁଣ୍ୟ, ପ୍ରିୟ ଅପ୍ରିୟ, ଶୀତଳ ଉଷ୍ଣ, ସ୍ତୁତି, ନିନ୍ଦା, ଜୟ ଅଜୟ ଇତ୍ୟାଦି ମନଙ୍କରେ ଯେବେ ଅନପେକ୍ଷ ବୃତ୍ତି ପାଇଲ (୬) । ଏହାକୁ ତିତିକ୍ଷା ବୋଲି । ଏ ଚାରି ସମ୍ପତ୍ତି ହୋଇଲେ । ସେ ଆତ୍ମଜ୍ଞାନ ଜାଣିବାକୁ ପ୍ରଥମ ଅଧିକାରୀ ହୋଇ । ତାହାକୁ ସଦ୍‌ଗୋଷ୍ଠୀ ସେବା କରି ଆଚାର୍ଯ୍ୟମାନଙ୍କ ଠାରୁଁ ଶ୍ରୁତି ଅର୍ଥମାନ ଶୁଣିମାରୁ (୭) କରି ଅସଦ୍‌ଭାବନା (୮) ବିପରୀତ ଭାବନା ନିବୃତ୍ତି ହୋଇ । ରୂ ଅବା ବୋଲୁ ଅସମ୍ଭାବନା ନିବୃତ୍ତି କେମନ୍ତ, ହୃଦେ ଇନ୍ଦ୍ରିୟ ଭିନ୍ନ ପ୍ରାୟେ । ଏମନ୍ତ ଭାବ ଜାଣି ନୁହଇ । ଏହାକୁ ସେ ଅସମ୍ଭାବନା ବୋଲି ଯେତେବେଳେ ଦେହୁଁ ଭିନ୍ନଭାବ ଆପଣାର ଜାଣଇ । ତେତେବେଳେ ପର ଦେହକୁ ତ ଯେମନ୍ତ ଦେଖଇ । ଆପଣ ଦେହକୁ ହିଁ ତେତେ କରି ଅପେକ୍ଷ କରଇ । ଦେହକୁ ଉଦାସୀ ହୋଇ । ଏହାକୁ ସେ ଅସମ୍ଭାବନା ନିବୃତ୍ତି ବୋଲି । ବିପରୀତ ଭାବନା ନିବୃତ୍ତି ଶୁଣ । ହୃଦେ ଈଶ୍ୱର ଜୀବ ଜଗତ ହେଇ

(୧) 'ଖ' ରେ ଗୋଟାଠାରୁ ବିନ୍ଦୁର ପର୍ଯ୍ୟନ୍ତ ଜାଡ଼ନ୍ତ୍ରେଂସ୍ଥ (୨) 'ଖ' ଆଚରି ନିନ୍ଦା
(୩) 'ଖ' ରେ ଶ୍ରେଷ୍ଠ (୪) 'ଖ' ରେ ପ୍ରୌଢ (୫) 'କ' ରେ ବିଷୟକ ଭିନ୍ନ ହୋଇ
(୬) 'କ' ଜନ୍ମ ହୋଇଲେ (୭) 'କ' ଶୁଣିମା କରି (୮) 'ଖ' ଅସମ୍ଭାବନା

Digitized by srujanika@gmail.com

ପ୍ରକାଶୁ ଅଛୁ ଆତ୍ମା (୧) । ଏହାକୁ ନ ଜାଣିମାନ୍ତୁ କହ । ଏମନ୍ତ ବସ୍ତୁତତ୍ତ୍ୱ (୨) ହୋଇ ଜଗତ ଦିଶଇ । ଆତ୍ମା ଜଗତକୁ ବସ୍ତୁମୟ କରି କରିଛୁ ଅଛୁ । ଅନାତ୍ମା ଯେ ଶରୀର । ଏହାଙ୍କୁ ମୁଁ ଅପରକେ ଦେଖୁଅଛୁ । ପୁତ୍ର ଦାରା କଳତ୍ରକୁ ମୋହର ବୋଲି ପରକେ ଦେଖୁଅଛୁ । ଏଥୁ ଏହା ଭାବକୁ ଗ୍ରହଣକଲେ ଉପଶାନ୍ତ ଭାବନା ନିବୃତ୍ତି ବୋଲି । ଏଥି ନିମନ୍ତେ ଶ୍ରବଣ ମନନ ନିଦିଧ୍ୟାସନ କରିବ । ସମ୍ପ୍ରଦାୟ ପ୍ରକାରେ ସଚ୍ଛା ଶାସ୍ତ୍ରମାନ ଶୁଣିବ । ଯେଉଁ ଶାସ୍ତ୍ରାର୍ଥ ଜାଣିକେ ସେ ଗୁରୁବଚନକୁ ସାକ୍ଷ ଅଟଇ । ଭଜି ପୁନଃ ପୁନଃ କରି ସକଳ ଏ ବୁଦ୍ଧିରେ ଭାବ ଏକ କରି ଜାଣିଲେ ଭୂମି ଏକ ହୋଇ । ମନ ନ ଚଳିବ (୩) । ଏହା ଦୃଢ଼ କରି ନିରନ୍ତରେ ମଣିଲେ ଦ୍ୱିତୀୟ ଭୂମି ବୋଲି । ଜନ୍ମ ଅର୍ଥ ବିଚାରିବ । ମୁକ୍ତି କେ, ଏହା ଅର୍ଥୀ ହୋଇ ଜାଣିବ (୪) । ପୃଥ୍ୱୀ ଅବା ମୁଁ (୫) । ଜଗତ ଅବା ମୁଁ । ଗଗନ ଅବା ମୁଁ ଇନ୍ଦ୍ରିୟମାନେ ଅବା ମୁଁ । ପ୍ରାଣ ଅବା ମୁଁ । ବୁଦ୍ଧି ଅବା ମୁଁ (୬) । ଚୈତନ୍ୟ ଅବା ମୁଁ । ଅବସ୍ଥା ତ୍ରୟ ଅବା ମୁଁ । ସେ ଜଳ ଅବା ମୁଁ ଅଗ୍ନି ଅବା ମୁଁ । (୭) ଏମାନ ଜାଣୁଅଛି ସେ ଅବା ମୁଁ । ଏମନ୍ତ ଭାବକୁ ତୃତୀୟ ଭୂମି ବୋଲି । ଏ ଭୂମିରେ ଯମନିୟମ, ଆସନ, ପ୍ରାଣାୟାମ, ଧ୍ୟାନ ଧାରଣା ସମାଧି ଆଚରିଥିବ । ଏହା ଅନବରତ ଅଭ୍ୟାସକୁ ନିଦିଧ୍ୟାସନ (୮) ବୋଲି । ଚତୁର୍ଥ ଭୂମି ଯେ ସେ ଏମନ୍ତ ବିବୃଦ୍ଧ ଚିତ୍ତ ମନୋକ୍ତ ଉଦ୍ୟାସକ (୯) ଭୂମିରୁ ବିଳାସିନୀ ବୋଲି ଭୂମି ଏ (୧୦) ଜାତ ହୋଇ । ସେ ଭୂମି କେମନ୍ତ ହୁଏ । ବାସନାଦି ନ (୧୧) ହୋଇ । ତ ବାସନା ଥିବାରୁ ବୋଲୁ ଅଛୁ ନା କେଉଁସବୁମତେ ସୂକ୍ଷ୍ମ ନାହିଁ (୧୨) ବୋଲି । ତ କେମନ୍ତେ ହେଁ ନ ଦେଖିବୁ ଟି । ମେରୁ ପର୍ବତର ପ୍ରାୟକ ସେବକ ଅନ୍ଧକାର ମୂଳ । ଏହା ଜଗତ କଥା ବୋଲି (୧୩) । ଜଗତବ୍ୟାପୀ ଉଦେ ହେଉଅଛୁ । ସେ ଶାନ୍ତକ (୧୪) ନଗରେ ସୂକ୍ଷ୍ମ କହିଁ ଅଛି । ଏ ନ୍ୟାୟରୁ ଏ ଶରୀରକୁ ଅଦୃଶ୍ୟ (୧୫) କ୍ଷ ବୋଲି । ଏହା ନିଃସଙ୍ଗ ଶବ୍ଦେ କହନ୍ତି । (୧୬) ହୁଏ ଇନ୍ଦ୍ରିୟମାନଙ୍କର ସଙ୍ଗ ଗୁଣକଲେ ନିଃସଙ୍ଗ ବୋଲି । ଏମନ୍ତ ଯେ ଚତୁର୍ଥ ଭୂମି ନାମର ବିଳାସିନୀ (୧୭) । ସେ ଭୂମିରୁ ଟି ସକଳ ଭୂମି ଜାତ ହୋଇ । ଯେମନ୍ତ କ୍ଷୀର ସମୁଦ୍ରୁଁ ସମସ୍ତ ଜାତ ହୋଇଲା । ବାସନା ମନ ଅଜ୍ଞାନ ସପ୍ତଭୂମି ଆଦି କରି ଯହିଁ ଆତ୍ମାରେ ଲୀନକୁ ଯାଇଥାନ୍ତି ସ୍ୱଭାବ ଅଯତ୍ନେ

---

(୧) 'ଖ' ରେ ଏ ଜଗତେ ଜୀବ ଆତ୍ମା ଈଶ୍ୱର ହୋଇ ପ୍ରକାଶୁ ଅଛୁ । (୨) 'କ' ରେ ବସ୍ତୁମୟ । (୩) 'କ' ରେ କରିବ । (୪) 'କ' ଅର୍ଥ କରି ଜାଣିବ (୫) 'କ' ମୁକ୍ତି (୬) 'କ' ରେ ନାହିଁ (୭) 'ଖ' ରେ ଜଳ ଅବା ମୁଁ ଅଗ୍ନି ଅବା ମୁଁ ନାହିଁ । (୮) 'ଗ' ନିଦିଧ୍ୟାସନ (୯) 'କ' ଅବ୍ୟକ୍ତ ବିଦ୍ୟା ଦର୍ଶିତ (୧୦) 'କ' ବିଦ୍ୟା । (୧୧) 'କ' ବିଳସ୍ତ, ବନ୍ଧୁ ବିକାର (୧୨) 'କ' ନୋହିଲା (୧୩) 'କ' ଜଗତକୁ ଆବେଶ (୧୪) 'କ' ଶାନ୍ତ ନଗରେ (୧୫) 'କ' ଅଶ୍ୱତ୍ଥ (୧୬) 'କ' ନିଗମ ଶାସ୍ତ୍ରେ (୧୭) 'ଖ' ବିଷୟନା

Digitized by srujanika@gmail.com

ଏହାକୁ ତେଣୁ କରି ଜଳସ୍ୱିନୀ ବୋଲି । ସେ ଭୂମିରେ ଚଉଥାଇ ଉକ୍ରମତେ ଶୁଦ୍ଧ ସମାଧି ଆନନ୍ଦ (୧) ହୋଇ ରୂପେକ ହୋଇ ଏହାକୁ ପଞ୍ଚମ ଭୂମି ବୋଲି । ଏ ଭୂମିରେ ଅନେକ ମାୟାମାନେ ଉପଦ୍ରବମାନେ ଅଛନ୍ତି । ସେ ଉପଦ୍ରବ କେମନ୍ତ । ଅବଦା ଯେ ପ୍ରକୃତ ଏ ଯେତେବେଳେ ମରି ନଥାଇ । ଏହାର ଯେତେ ବଳ ତେତେକଯାକ ଦରଶାଇ କରି ଏ ଭୟ ମେ ହ ଚନ୍ଦ୍ରାଏ (୨) କରି ଆକୁଳ କରଇ । ପାଣି ଆବର୍ତ୍ତି ପ୍ରାୟେ କରି ଚଉ ଭ୍ରମୁଥାଇ (୩) । ଏଠାକୁ ଖସିଲେ (୪) ହାଦେ ଦେବତା ହୋଇ । ବାସୁଦେବର ଭକ୍ତ ନିଷ୍ଫଳ କରି କଲେ ବସ୍ତୁର ଅଷ୍ଟାଦଶ ମାୟା ଅବୋରଇ । ଯେ ମାୟାମାନେ କେମନ୍ତ । ପ୍ରଥମେ ଜାଗ୍ରତ ସ୍ୱପ୍ନ, ସୁଷୁପ୍ତି, ଏ ନରକ ଏ ତିନମାୟା ଜିଣିଲେ ଦିବ୍ୟମାୟାମାନେ ଆବୋରନ୍ତି । ସ୍ୱପ୍ନ ନିମିତ୍ତେ ଦିବ୍ୟମାୟା ଆବୋର ସମାଧିରେ ପ୍ରକାଶ କରନ୍ତି । ମୋହିନୀ (୫) ମାୟା । ୪ । ମଧୁମତୀ ମାୟା । ୫ । ବିଷୟଦର୍ଶିନୀ (୬) ମାୟା । ୬ । ଶବ୍ଦମୟୀ ମାୟା । ୭ । ସତସ୍ୱତୀ ମାୟା । ୮ । ଦେବଯୋନ (୭) ମାୟା । ୯ । ଅଣିମାଦି, ଐଶ୍ବର୍ଯ୍ୟ ମାୟା । ୧୦ । ଜାଳନ୍ଧରୀ ମାୟା । ୧୧ । ଲୌକିକ ମାୟା । ୧୨ । କାମମୟୀ ମାୟା । ୧୩ । ସିଦ୍ଧମୟୀ ମାୟା । ୧୪ । କଲ୍ଲୋଳିନୀ ମାୟା । ୧୫ । ରୁଦ୍ର ଅହଂକାର ମାୟା । ୧୬ । ପାର୍ବତୀ ମାୟା । ୧୭ । ସର୍ବମନୋହରୀ ମାୟା । ୧୮ ।

ତ ଏବଂଭୂତ ଅଷ୍ଟାଦଶ ମାୟା ଆବୋରଇ । ଐଶ୍ବର୍ଯ୍ୟ ସମାଧିରେ ସ୍ୱପ୍ନ ପ୍ରାୟେ ହୋଇ । ହାଦେ ଚଉ ସନ୍ଧି । ସକଳ କାମନାମାନ ଗୁଢ଼ ପ୍ରକୃତ ସହିତ ହୋଇ । ଇନ୍ଦ୍ରିୟମାନଙ୍କୁ ଘେନି ଯେତେବେଳେ ଅନ୍ତର୍ମୁଖ ହୋଇ ଦିବ୍ୟସୁଖ ପାଉଥାଇ । ଯେଉଁ ଚତୁଃପଥରେ ହୋଇ ନବାଂତ ଦୀପଶିଖା ପ୍ରାୟେ ସେଠାରୁ ଅବସ୍ଥାନ୍ତେ ଲୀନ ହୋଇ । ସେ ସଙ୍କଟ ପଥ କେମନ୍ତ ଅଟଇ । ମଥନଶ୍ଚ ଏ ମାୟାମୟୀ ସ୍ୱପ୍ନ ସ୍ଫୁରଇ (୮) । ପଥକରି ଉପସର୍ଗ ଭୟରୁ ଚହ୍ନିମୁଂ ହୋଇ । ଘୋରତର ଅନ୍ଧକାର ସ୍ୱରୂପେକ ହୋଇ । କାଳ ସେଠାରେ ଥାଇଁ । ସେ ଆବୋର ଅଜ୍ଞାନ କରି ସୁଷୁପ୍ତି କ ନଥଇ । ଏହିନ ପଥଟା କ ଜାଣିଲେ ଅଜ୍ଞାନ ପଥରେ ପଶଇ । ଯେଉଁ ପଥରେ ମନ ମୂର୍ଚ୍ଛା (୯) ଯାଇ । ଏମନ ଏକ ଜାଳାନ୍ଧର ଜଗତ ଈଶ୍ବର । ଏହି ମଣବା ପଥରେ ଦିବ୍ୟ ମାୟାମାନେ ମନବିକାରେ ଉଦେହୋନ୍ତି । ହାଦେ ଏ ମାୟାମାନେ କେମନ୍ତ ଅଟନ୍ତି ଶୁଣ । ଏ ହାଦେ ଋଷିମାନେ, ଦେବତାମାନେ, ସିଦ୍ଧଯୋଗୀମାନେ କଷ୍ଟେ କଷ୍ଟେ କୋଟି କୋଟି ଲୋକେ ସେ ଜଣେ ଜଣେ । ନୋହିଲେ ଏଥି ଭିତରେ ଏହି ମାୟାମାନଙ୍କୁ ରସିଥାନ୍ତି । କେବ୍ଦ୍ରମାୟା । କେ ପାଞ୍ଚମାୟା । କେ ସପ୍ତମାୟା । କେ ଅଷ୍ଟମାୟା । ଏତେ ଦୂର ସେ ଜୟକରି ଅଛନ୍ତି । ସମସ୍ତେ ହେଁ ବ୍ରହ୍ମାଦି ଈଶ୍ବର ଦିହତେ ବସ୍ତୁମାୟାରେ ପଡ଼ିଅଛନ୍ତି । ତୁ ଅବା ବୋଲୁ ଏମାନେ ସେ

---

(୧) 'କ' ଶୁଦ୍ଧ ସଚ୍ଚିଦାନନ୍ଦ (୨) 'ଖ' ଏ ମେହ ଚନ୍ଦ୍ରାଏ (୩) 'ଖ' ଦ୍ରବଇ (୪) 'କ' ଖସିଲେ ହେଁ (୫) 'କ' ମୋହ (୬) 'କ' ବିଶ୍ବଦରଶିନୀ (୭) 'ଖ' ଦେବଜ୍ୟୋତି ମାୟା (୮) 'ଗ' ସର୍ପ ପୂରଇ (୯) 'କ' ମୂର୍ଚ୍ଛା ।

Digitized by srujanika@gmail.com

ଯହିଁ ଯାଇ ନ ପାରିଅଛନ୍ତି ମୁଁ ହିଁ ଆଉ କାହିଁକି ଯିବି ବୋଲି । ଏଥିକୁ ଭ୍ରାନ୍ତ ନକର । ତାହେ ମୁଁ ତୋତେ ପରମଜ୍ଞାନ କହୁଅଛୁ ଶୁଣ । ଏ ମାୟା ଈଶ୍ୱର ସେ ଜଗନ୍ନାଥ । ଏହାଙ୍କ ଅନୁଗ୍ରହ ହେଲେ ବ୍ରହ୍ମାଦି ଯାଇ ନଥାନ୍ତି ଯହିଁ ଜୀବହିଁ (୧) ଅନ୍ତର୍ଦ୍ଧାନ ହୋଇ (୨) ଯାଇ । ଏ ହିଁ ଦେବ ଭବଗ୍ରାହ୍ୟ ଅଟନ୍ତି । ସମସ୍ତ କଥାର ମୂଳ ଏ । ଏହା ଶୁଣି ସେ ଅବଧୂତ ବୋଇଲା । ହେ ମହାତ୍ମା ଧନ୍ୟ ତୁ । ଏ ମାୟାମାନେ କି କି କରନ୍ତି ଏହା ମୋତେ କହ ।

ସେ କୁମର ବୋଇଲା । ମୁଁ ଆଉ ବହୁତ ବେଳ କଥା କହି ନ ପାରଇ । ଗର୍ଭ-ନିଦ୍ରା ମୋତେ ପୁନ ପୁନଃ (୩) ଆକର୍ଷୁ ଅଛୁ । ତୁ ଅଳ୍ପରେ ଶୁଣ । ତୋତେ ଅନୁକମ୍ପିତ (୪) କରି କେବଳାନୁଗ୍ରହ ଧର୍ମିବେ କହୁଅଛୁ । ଯହୁଁ ତୁ ବଡ଼ ଦୁଃଖୀ ଅଟୁ ତାହେ କଉଣସି ମାୟାରେ ଇନ୍ଦ୍ରପଦ ପାଇ । ବ୍ରହ୍ମାପଦ ପାଇ । କଉଣସି ମାୟାରେ ସକଳ ଜଗତ ଦେଖୁଥାଇ (୫) । କଉଣସି ମାୟାରେ ସପ୍ତ ସମୁଦ୍ର ସ୍ୱର୍ଗମାନେ ଦେଖିଥାନ୍ତି । କଉଣସି ମାୟାରେ ଶୂନ୍ୟରେ ଯାଉଥାଇ । କଉଣସି ମାୟାରେ ଦିବ୍ୟ ବିମାନମାନଙ୍କରେ ଚଢ଼ିଥାଇ (୬) । ଇନ୍ଦ୍ରପ୍ରାୟେ ହୋଇ ଐଶ୍ୱର୍ଯ୍ୟମାନନ୍ତ ସେବନ କରୁଥାଇ । କଉଣସି ମାୟାରେ ସର୍ବଦେଶୀୟ ଜନ୍ତୁ ବାରତା ଜାଣଇ । କୌଣସି ମାୟାରେ ଦେବତାମାନଙ୍କ କଥା କହୁଥାଇ । କେତେ କହିବା ଅନନ୍ତ (୭) ପ୍ରପଞ୍ଚମାୟା । ଦେବତାମାନଙ୍କୁ ଅଗୋଚର ଅଟଇ । ଈଶ୍ୱର ଅତିରେକ କରି ଯେଉଁ ଜୀବକୁ ଅନୁଗ୍ରହ କରନ୍ତି । ସେ ଜାଣି ତାହାର ପରମ ଭାବ ପାଇ । ତାହେ ଯେତେବେଳେ ଅଷ୍ଟାଦଶ ଜନ୍ମ ହୋଇ ତେତେବେଳେ ଷଷ୍ଠ ଭୂମି ହୋଇ । ସେ ଭୂମି କେମନ୍ତ ଅଟଇ । ଆନନ୍ଦ ଘନ ଜ୍ୟୋତିର ସ୍ୱରୂପ । ଏହାକୁ ଅଚଳ ରୂପ (୮) ବୋଲି । ଏ ଅବସ୍ଥା ହୋଇ ହୋଇ ପ୍ରଥମେ ଅନ୍ତର୍ଗତରେ ଶବ୍ଦମାନ ଶୁଭଇ । ସେ ଶବ୍ଦ କେମନ୍ତ । ଜଗତ ଚରାଚର ଯାହେ ସେ ଶବ୍ଦକୁ ଲୟେ ହୋଇଥାନ୍ତି । ଏ ଶବ୍ଦ ଅନନ୍ତ ପରମ କୋଟି ସୂର୍ଯ୍ୟ, କୋଟି ଚନ୍ଦ୍ର, କୋଟି ବୈଦ୍ୟୁତ (୯), କୋଟି ତଡ଼ିତ, କୋଟି କୋଟି ନକ୍ଷତ୍ର ଏକ ରାଶିଭୂତ କଲେ ଯେମନ୍ତ ଜ୍ୟୋତିଏ ପ୍ରକାଶ ହୋଇ, ସେ ଜ୍ୟୋତିରୁ କ୍ରମେ ଅନ୍ତର୍ଲୀନ ହୋଇଲେ ନିର୍ମଳ ଆକାଶେକ ପ୍ରକାଶ ହୋଇ । ସେ ଆକାଶର ଅନ୍ତର୍ଗତ ତଦ (୧) ୦ବୋଲି ଆକାଶେକ ଅଛି । ସେ ଆକାଶ ସତ୍ତ୍ୱ ମାତ୍ର । ସଦା ସମ୍ପୂର୍ଣ୍ଣ । ସେଠାରେ ସପ୍ତମ ଭୂମି ହୋଇ । ଆନନ୍ଦକନ୍ଦୈକ ରସ ଚନ୍ଦ୍ର ନିବିଡ଼ ବୋଧ ଉଦୟ ଚୈତନ୍ୟ ସ୍ୱରୂପର ପ୍ରାପ୍ତେକ ହୋଇ ଯେଉଁ ଅବସ୍ଥା ସେଠାରେ ଗୁରୁବଚନ ଅଛି । ଏ ଅବସ୍ଥା ପରମ ନିର୍ବାଣ ପର୍ଯ୍ୟନ୍ତ (୧୧) । ଏ ସପ୍ତଭୂମି ପ୍ରକାଶ କରି ନୋହଇ । ନିବିଡ଼ ବହଳ ପରମ ଆନନ୍ଦରୁ ହିଁ ଆନନ୍ଦ । ପରମ ସୁଖ ହିଁ ସୁଖ । ସମୁଦ୍ର ଜଳର ଯେମନ୍ତ ଅନ୍ତ ନାହିଁ । ସୁଖର ହିଁ ତେମନ୍ତ ଅନ୍ତ ନାହିଁ । ଅତ୍ୟନ୍ତ ସୁଖ । ଯହିଁକି ବ୍ରହ୍ମା ଈଶ୍ୱରାଦି ହିଁ ଚିରକାଳେକ ହୋଇ ଉପାସନା କଲେହେଁ ନ ପାନ୍ତି ।

---

(୧) 'ଖ' ରେ କେହି (୨) 'କ' ରେ ନାହିଁ (୩) 'କ' କରି (୪) 'କ' ଅନୁପ୍ଲୁତ କରି (୫) 'କ' ରେ ଜଗତ ନାହିଁ (୬) 'କ' ରେ ବିମାନରେ ଚଢ଼ୁଥାଇ (୭) 'କ' ଅତିଅନ୍ତ (୮) 'ଗ' ଚଳୁ (୯) 'ଚ' ରେ ନାହିଁ । (୧୦) 'ଖ' ପଦ (୧୧) 'କ' ରୂପନ୍ତି

Digitized by srujanika@gmail.com

ଏବଂଭୂତ ଯୋଗିଣ ବସ୍ତୁରୁ ପରମ ପଦ କେ ପାଇବ । ଯହିଁ ପାଇଁ ଯଜ୍ଞ ପୂଜାଦାନ ତୀର୍ଥ ତପଯୋଗ ଭକ୍ତି ଏମାନ କରି । ବେଦମାନେ ଯାହାକୁ ସ୍ତୁତି କରୁଅଛନ୍ତି । ଯେଉଁ ପଦରେ ଥିଲେ କୋଟି କୋଟି ବ୍ରହ୍ମାଣ୍ଡମାନେ ପ୍ରଳୟ ହେଉଥିଲେ ନିଶ୍ୱାସ ପ୍ରଶ୍ୱାସ ମଣି । କାଳର ଅନ୍ତଭୂମି ଯେ କାଳକୁ ସଂହରଇ । ଯେଉଁ ଭୂମି ତାହା କହିବାକୁ ମନ ବୁଦ୍ଧିରେ ଶକ୍ତି ନାହିଁ ଏବଂଭୂତ ହୋଇ ଯେଉଁ ପଦ ତହିଁକି ଶରଣ ଯା । ତ ଏବଂଭୂତ ଉପଦେଶ ପାଇ ସେ ଅବଧୂତ ନିଷ୍କଳ ପ୍ରାପ୍ତେକ ହୋଇ, ତର୍ଭ ପ୍ରଭୁଙ୍କୁ ଗୁରୁ ମାନନା କରି ପାଦେ ପଡ଼ି ଶୋଇ ଅଜ୍ଞା ମାଗିଲା । ବୋଇଲା ମୁହିଁ ତୋହର ଆଜ୍ଞା ପ୍ରତିପାଳନ କରିବାକୁ ଅନୁକୂଳ କରୁଅଛୁ । କୁମର ବୋଇଲା ମୁଁ ଆଉ ଅଳ୍ପଦିନେ ଜନ୍ମ ହୋଇବି (୧) କ୍ଷିତି । ମୁହିଁ ମୌନି (୨) ନିଷ୍କଳ ଧାରଣାରେ (୩) କରି ଆଜହୁଁ ମାତାକୁ ଶୀତଳ ହୋଇବ । ଏବେ ମୁଁ ନିଦ୍ରା ଯାଉଅଛୁ । ତୋହର ମୋହର (୪) କାଳାନ୍ତର ପର୍ଯ୍ୟନ୍ତେ ଭେଟ ହୋଇ ସିନା । ଏମନ୍ତ ଆଜ୍ଞା ପାଇ ସେ ଅବଧୂତ ପୁରୁଷ ଆସି ଆପଣାର ସ୍ଥୂଳ ଦେହରେ ପଶିଲା । ରାଜାକୁ ଉଠିଲା । ରାଜାଦେଖି ମଥାରେ ହାତ ଦେଲା । ଏତେବେଳ ପର୍ଯ୍ୟନ୍ତ କଲା ଧ୍ୟାନ । ମୃତ୍ୟୁପିଣ୍ଡରେ ପ୍ରାପ୍ତେ ଶରୀର କରିଥିଲା । ଅବାପ୍ତମନ । ରାଜା ଏମନ୍ତ ବୋଲନ୍ତେ ସେ ପୁରୁଷ ପଲଙ୍କ ତଳକୁ ଓହ୍ଲାଇଲା । ରାଜାର କର ଧଇଲା କର୍ଣ୍ଣମୂଳେ କହିଲା । ଆଜହୁଁ ତୋର ରାଣୀ ଶୀତଳ ହୋଇଲା । ବଡ଼ ବିଚକ୍ଷଣ ପୁରୁଷେ ଜନ୍ମ ହୋଇବ ବୋଲି ବୋଇଲା । ଗୁରୁପିତା ବୋଲି ରାଜାଙ୍କ ମନେ ମନେ ନମସ୍କାର କଲା । ମହାପୂଜ୍ୟ ପାଇଲା (୫) । ପରମ ଆନନ୍ଦ ହୋଇଲା । କୁମର କହିଲା କଥାମନଙ୍କରେ କରି ଅମୃତ ପାନ (୬) କଲା ପ୍ରାପ୍ତେ ହୋଇଲା । ଅରଣ୍ୟକୁ ଗମିଲା । ଏଥି ଉତ୍ତାରେ ରାଣୀର ନିଦ୍ରା ଭାଜିଲା । ସେହି କ୍ଷଣି ଉଶ୍ୱାସ ଲାଗିଲା । ହରଷ ହୋଇଲା । ମୁଖମଣ୍ଡଳ ରାହୁର ବଦନରୁ ଚନ୍ଦ୍ରମା ମୁକ୍ତ ହେଲା ପ୍ରାଏକ ଶୋଭା ପାଇଲା । ମହା-ଦେବୀର ହର୍ଷ ଦେଖି, ରାଜା ହୋଇଲା ଅତ୍ୟନ୍ତ ସୁଖୀ । ସେ ରାଣୀକି ଚାହିଁ, ପରମ ହର୍ଷ ହୋଇ, ଶଙ୍କା ଖଣ୍ଡନ ନିମନ୍ତେ ବିବିଧ ଧନ (୭) ମାନନ୍ତ ଦେଲା ।

ତ ଏଥି ଉତ୍ତାରେ । କେତେ ହେଁ ଦିନେ ଦିବସ ଅନ୍ତରରେ ସେ କୁମର ଜନ୍ମ ହେଲା । ସେ ବୈଶାଖ ଶୁକ୍ଳ ତ୍ରୟୋଦଶୀ ଦିବସରେ, କର୍କଡ଼ା ଲଗ୍ନେ ଅଛନ୍ତି ବୃହସ୍ପତି ଚନ୍ଦ୍ରେ । ମକର ପରମ ଉଚ୍ଚ ମଙ୍ଗଳ ପାଇଅଛୁ । ବୃହସ୍ପତି କେନ୍ଦ୍ର ମଙ୍ଗଳ ସପ୍ତମ କେନ୍ଦ୍ରେ । ମିଥୁନ ରାଶିରେ, ଉନ୍ନତ ଅପୂର୍ବ, ଅକଳୁଷ, ଅଣଅସ୍ତ ହୋଇଅଛୁ ଶଶିପୁତ୍ର ବୁଧ । ଉଦୟ ନିର୍ମଳ, ରବିଙ୍କ ଘରର ମୀନ ରାଶିରେ, ଶୁଦ୍ଧ ହୋଇଅଛୁ ଷଡ଼ବର୍ଗ ଶୁଦ୍ଧ । ତୁଳରାଶିରେ ଶନିଶ୍ଚର କଳାଯୁକ୍ତ ହୋଇଅଛୁ ଶୁକ୍ର । ସଂଯୋଗ ପାଇଅଛୁ ଚତୁଃଯାରର ଦାମ । ଚନ୍ଦ୍ର-

---

(୧) 'ଖ' ହୋଉଅଛୁ (୨) 'ଖ' ରେ କ୍ଷିତି । ମୁହିଁ ମୌନୀ ନାହିଁ (୩) 'ଖ' ରେ ଏହି ନିଷ୍କଳ ଧରଣୀରେ (୪) 'କ' ତୋହୋ ମୋହୋ (୫) 'ଖ' ରେ ପଲଙ୍କ ତଳକୁ ଓହ୍ଲାଇଲାଠାରୁ ମହାପୂଜ୍ୟ ପାଇଲା ପର୍ଯ୍ୟନ୍ତ ନାହିଁ । (୬) 'ଗ' ଦାନ (୭) 'ଚ' ଦାନ

Digitized by srujanika@gmail.com

ପୂର୍ଣ୍ଣ ମଣ୍ଡଳରେ, ଉଚ୍ଚାଧିପତିର ସଙ୍ଗେ, ଆପଣାର ଭୁବନେ, ଅତ୍ୟନ୍ତ ଶୋଭନେ, ଚତୁଃଷଷ୍ଟୀ କଳାଯୁକ୍ତେ, ପାପଗ୍ରହ ମୁକ୍ତେ, ପଦ୍ମପୁଷ୍ପ ଅଛୁ । ପୁଷ୍ଟିଯୁକ୍ତେ ବର୍ଗୋତ୍ତମ ପାଇଅଛୁ । ଗୁରୁଚନ୍ଦ୍ର ଯୋଗ ହୋଇ ବୃହସ୍ପତି ପୁତ୍ରଙ୍କ ଯୋଗ ହୋଇ ରହିଥିଛୁ । ମେଷରାଶିରେ ପରମ ଉଚ୍ଚ ଅଂଶେ, ଦୈବର ବଶେ, ପରମ ଜଗତେ, ଅତ୍ୟନ୍ତ ମତେ, ମିତ୍ର ଦର୍ଶନେ, ଆପଣାର ମାର୍ଗେ, କୁମର ବୟସେ, ଅପ୍ରାରବ୍ଧ ଅଂଶେ, ମାଣବସ୍ତ୍ରେ, ସାଧୁସଂଯୁକ୍ତ କରଣଙ୍କର ସପୂର୍ଣ୍ଣେ, ପ୍ରତୀ ଯୋଗେ, ଆକାଶ ଗଙ୍ଗାର ଜଳେ, ସେ ଗ୍ରହରାଜା ହୋଇଅଛୁ ରୁଙ୍ଗ ।

ତ ସେ ପାପଗ୍ରହମାନଙ୍କୁ ଜିଣିଅଛୁ ଭଙ୍ଗ । ଏମନ୍ତ ସେ ନ ଡକ ଗୁରୁଚନ୍ଦ୍ର । ଉଚ୍ଚୈଃସ୍ଥ ଗର, କେନ୍ଦ୍ରେ ପୂର୍ଣ୍ଣରୁଙ୍କ, ଚତୁର୍ଗ୍ରହ (୧) କନକ ଦଣ୍ଡ ମକର ମଙ୍ଗଳୀ, ଚନ୍ଦ୍ର ଅଞ୍ଚଳ, ଐଶ୍ବର୍ଯ୍ୟ (୨) ସମ୍ଭବ । ଚକ୍ରବର୍ତ୍ତୀ ମହତ୍ ଯୋଗମାନ ପାଇଅଛୁ । ସେ ସନ୍ଧ୍ୟା ସ୍ଥାନେ ବିଶୁଦ୍ଧ ଭାବେ (୩) ରହିଅଛୁ । ଏମନ୍ତ ଭାବେ କୁମର ଜନ୍ମ ହୋଇଲା । ସେ ପୃଥ୍ବୀରେ ପଡ଼ିବାର ସମୟେ ଅଜ୍ଞାନ ନୋହିଲ । ତ କେଣ୍ଡ୍ କଣ ନୋହିଲ । ସନ୍ଧୁଁ ବାସୁଦେବଙ୍କୁ ଅନବରତେ ସେବନ୍ତେ (୪) ପ୍ରସବନ ଲ ହୋଇଲା । ଆପ୍ୟାନ (୫) ପବନ ତଳକୁ ହେଉଇଲା । ନାଡ଼ୀଚକ୍ର ବାମାବର୍ତ୍ତେନ (୬) ହୋଇ ବୁଲିଲା । ସପ୍ତଧ ରୁ ଚଳିଲା । ମଳଖଣ୍ଡ ଗଳିଲା । ମୂତ୍ର ପୁଟିକା ଭଲିଲା । ତ ଏମନ୍ତ ଦେଖି କୁମର ବ୍ରହ୍ମରନ୍ଧ୍ର ମଧ୍ୟେ ଅର୍ଦ୍ଧମାତ୍ରା ସ୍ଥାନ ନାସିକା ଅନ୍ତର୍ଗତ, ପ୍ରାଣେନ୍ଦ୍ର ସଙ୍ଗତେ, ଚତୁର୍ବିଂଶତ ତତ୍ତ୍ୱାନ୍ତେ, ଶୁଦ୍ଧ ଚୈତନ୍ୟ ପଦ ନେଲ ସନ୍ଧୁଁ ତ ବ୍ରହ୍ମ ଭକ୍ତିର ବଳେ କଷ୍ଟେ କଷ୍ଟେ ଅଜ୍ଞାନ ନୋହିଲ ତହୁଁ । ତ ଏମନ୍ତ ପ୍ରକାରେ ପୃଥ୍ବୀରେ ପଡ଼ିଲ । ମନେ ମନେ ବିଚାର ବୋଇଲା । ହେ ତ୍ରିଭୁବନେଶ୍ୱର ବିଶ୍ୱନାଥ । ତୋହର ପାଦପଦ୍ମେ ଦେଉଅଛୁ ମାଥ । ଏମନ୍ତ ବୋଲି ସେ କୁମର ନରକମୟ ଜଠରୁ ବାହାର ହୋଇଲ । ମନେ ମନେ ଧ୍ୟାଇ ଅଷ୍ଟା ଶୁଦ୍ଧି ନିମିତ୍ତେ ଅନୁଲୋମ ପ୍ରତିଲୋମ ପ୍ରକାର ମାନସିକ ଶୁଦ୍ଧ ଧାରଣା କରିଅଛୁ । ତ କେବଣ କେବଣ ପ୍ରକାରେ । ପ୍ରଥମେ ଚରାଚର ଅଂଶେ (୭) ଜଗତ ବସ୍ତୁ ସ୍ୱରୂପ କଳ୍ପିଲ । ତଳେ ଅନନ୍ତର ବକ୍ତ୍ର (୮) ଏକ ଚକ୍ଷୁ ଅଗ୍ନିମୟ କରି ଜାତ କଲା । କରି ସ ତ ଲୋକସକଳ ମନେ ମନେ ପୋଡ଼ିଲ । ଉପର ଆକାଶରେ ଦ୍ୱାଦଶ (୯) ଆଦିତ୍ୟ ଉଦେ କରାଇଲା । କରି ସେ ବନ, ପର୍ବତ, ନଦୀ, ସାଗର, ଲତା, ଗୃହ, ବୃକ୍ଷାଦି କରି ସମସ୍ତ ଭୂତନ୍ତ (୧୦) ପୋଡ଼ିଲ । ତଦନ୍ତେ ସେ ଅଗ୍ନିରେ କରି ଜଳଡ଼ାକ ଉପୁଜିଲା । ବୃଦ୍ଧିରେ କରି ସେ ଜଳ ଚନ୍ଦ୍ରମାକୁ ଉଦେ କରାଇଲା ।

---

(୧) 'କ' ରେ ଚତୁଃ ଗ୍ରହାନେକ ଦଣ୍ଡ (୨) 'କ' ରେ ଅଇଶ୍ୱର୍ଯ୍ୟ (୩) 'କ' ରେ ବିଶୁଦ୍ଧ ହୋଇ (୪) ହୃଦସ୍ଥରେ ସେବନ୍ତେ (୫) 'କ' ରେ ଅଜ୍ଞାନ (୬) 'ଖ' ରେ ସାବର୍ତ୍ତିକ (୭) 'ଖ' ଅଙ୍ଗେ (୮) 'କ' ରେ ଅନନ୍ତ ବ୍ରହ୍ମରୁ 'ଖ' ଅନନ୍ତର ଭକ୍ତ । 'ବହ୍ନି' ଅନ୍ତରର ବକ୍ତ୍ର । (୯) 'ଗ' ଏକାଦଶ (୧୦) 'କ' ଦୂତମାନଙ୍କୁ

Digitized by srujanika@gmail.com

କରି ପ୍ରଳୟ ମେଘମାନ (୧) କଲି ବୃଷ୍ଟି ମୁଷଳଧାର ପ୍ରମାଣେ କରାଇଲ । ସେ ଜଳ ଫେନ ବୁଦ୍‌ବୁଦ୍ କରି ଆବର୍ତ୍ତ କରି କଲି ଲ । ଚତୁର୍ଦ୍ଦଶ ଲୋକଯାକେ ପୂରିଲ । ଆଉଅନ୍ତ ସବୁ ଜଳ କରି ଦେଖିଲ (୨) । ଜଳ ବ୍ୟତିରେକେ ଆନ ନାହିଁ ଜଗତେ ଏମନ୍ତ କରି ଜ୍ଞାନ ଧ୍ୟାନ କଲ, ଦଣ୍ଡେ ପର୍ଯ୍ୟନ୍ତେ । ଦଣ୍ଡକ ଭିତରେ ଅନେକ କାଳ ଗଲ ପ୍ରାୟ କରି କଲି ଲ । ତହିଁ ଉତ୍ତାରେ ଜଳ, ବ୍ରହ୍ମ, ଅଗ୍ନି, ବଡ଼ବାନଳ ଧାରଣା କରି ସେ ସମସ୍ତ ଅଗ୍ନି (୩) କରି ଦେଖିଲ । ସେ ଅଗ୍ନି ସଂଯୋଗେ ଆପଣ ହିଁ ଅଗ୍ନି ହୋଇଲ । ୪ଥ ଉତ୍ତାରେ ଜଗତକୁ ପବନ କରି ଧ୍ୟାନ କଲ । ପବନ ହିଁ ସମସ୍ତଙ୍କଠାରେ ପୂରିଅଛୁ । ଆନ ନାହିଁ (୪) । ସେ ପବନ ସଙ୍ଗେ ଆପଣହିଁ ପବନ ହୋଇଲ । ସେ ପବନର ଅବଶେଷ (୫) ନୀଳବର୍ଣ୍ଣ କରି ଧ୍ୟାନ କଲ । କରି ତହିଁ ଉତ୍ତାରେ ସେ ପବନକୁ ପବନେ ସଂହରି (୬) କେବଳ ନିର୍ମଳ ଆକାଶେକ କରି ଜଗତକୁ ଦେଖିଲ । ଏମନ୍ତ ଦେଖିଲ । ଆଉ କିଛୁ ନାହିଁ । ଏକା ଆକାଶ ହିଁ ସେ ସମସ୍ତଠାରେ ପୂରିଅଛୁ । ଏ ଆକାଶ ସଙ୍ଗେ ଆପଣ ହିଁ ଆକାଶ ହୋଇଲ । ଏଥି ଉତ୍ତାରେ ଦଣ୍ଡେ ରହିଲ । ଦଣ୍ଡେକ ଭିତରେ ଅନେକ କାଳ ଗଲ ପ୍ରାୟେ କଲି ଲ । ସେ ଆକାଶକୁ ସର୍ବମାନ କରି ଅନ୍ତେ ସ୍ୱରୂପ କରି (୭) ଅବସ୍ଥିବ ବ୍ୟାପୀ (୮) ନିର୍ମଳ ପରମ ପୁରୁଷ (୯) ହୋଇ ଯିଏ ସର୍ବେତ୍ତ (୧୦) ତାହାଙ୍କୁ କହନ୍ତେଯିମାନେ ଶିବ ବୋଲନ୍ତି । କେ ବ୍ରହ୍ମ ବୋଲି ବୋଲନ୍ତି । କେ ପରମେଶ୍ୱର ବୋଲନ୍ତି । କେ ସ୍ୱଭବ କହିଲ । ତହୁଁ କଳି କଳି ଚେତନା ଜାତ କଲ । ଏହାକୁ ବିଶ୍ୱଚନ୍ତା (୧୧) ବୋଲି । ସେ ବେଶ୍ୱ ନିର୍ଯ୍ୟାତ ସମସ୍ତରୁ ଯେ ଜଗତ ଧାରଣା ହୋଇ । ପୃଷ୍ଠ ସମୁଦ୍ରେ ପବନ ବହିଲେ । ଯେମନ୍ତ ଚଳନ ହୋଇ । ତେମନ୍ତ ସ୍ୱଭବକୁ ସ୍ଥୂଳ (୧୨) ପ୍ରକୃତି କରି କଲ । ସେ ପ୍ରକୃତି ସତ୍ତ୍ୱ, ରଜ, ତମ, ସମବସ୍ଥାନ (୧୩) କଲ । ତହିଁର ମଧ୍ୟେ ସତ୍ତ୍ୱଗୁଣ ଯେ ସେ ନିର୍ମଳ; ତହିଁ ତଦ୍‌ଭବ ପ୍ରତି ବିମ୍ବାଇ ମହତ୍ ଭବ (୧୪) କଲ । ମହତ ଅହଂକାର କଲ । ହେତୁ (୧୫) ଈଶ୍ୱର ଭବ କଲ । ଯାବରେ ପ୍ରତିବିମ୍ବ ଜୀବ ହୋଇଲ । ହୋଇ ଆପଣ ର ପୃଷ୍ଠି (୧୬) ଭବ ଗ୍ରହି ମନ ଭବକୁ ଗଲ । ସେ ମନର ତହୁଁ ଆକାଶେକ କଲି ଲ । ଆକାଶୁଁ ପବନ କଲି ଲ । ପବନରୁ ଅଗ୍ନି କଲି ଲ । ଅଗ୍ନିରୁ ଜଳ କଲି ଲ । ଜଳରୁ ପୃଥ୍ୱୀ କଲି ଲ । କଲି ଚତୁର୍ଦ୍ଦିଶ ଲୋକ ଯାକେ ଯେ ଯେଉଁଠାରେ ଅଛୁ ତାହା ମନେ ମନେ ବ୍ରହ୍ମ ସ୍ୱରୂପ କରି ଆର୍ପିଲ । ସମସ୍ତ ଜଗତ ଯାକ ନୂଆକରି (୧୭) ଭିଆଇଲ । ଭିଆଇ ଆପଣ ବସ୍ତୁର

---

(୧) 'କ' ମାଳ (୨) 'ଖ' ରେ ନାହିଁ (୩) 'କ' ଅଗ୍ନିମୟ (୪) 'ଖ' ରେ ପନ ହିଁ ଟାରୁ ଆନ ନାହିଁ ପର୍ଯ୍ୟନ୍ତ ନାହିଁ (୫) 'କ' ଅଶେଷ କରି (୬) 'ଖ' ପବନ ଦେହ (୭) 'କ' କାରୁଣ୍ୟସ୍ୱରୂପ (୮) 'କ' ଅବ୍ୟୟ ରୂପ (୯) 'କ' ପୁରୁଷ (୧୦) 'ଖ' କୃପ ସର୍ବେ କଟି (୧୧) 'କ' ସୃଷ୍ଟି ଚନ୍ତା (୧୨) 'କ' ମୂଳ (୧୩) ସମ୍ଭାବ ଅବସ୍ଥା (୧୪) 'କ' ମହତ୍ ତତ୍ତ୍ୱ (୧୫) 'କ' ଚେତନ୍ୟ (୧୬) 'କ' ପୃଥ୍ୱ୍ୟ (୧୭) 'ଖ' ରେ ନୂଆକରି ନାହିଁ

Digitized by srujanika@gmail.com

ପଦାରବିନ୍ଦରୁ ଚ୍ୟୁତ ହୋଇଲା । ପ୍ରଜାରେ ଗର୍ଭରୂପେ ରହିଲା । ରହି ତହୁଁ ଜନ୍ମ ହୋଇଲା । ହୋଇ ଈଶ୍ୱରଙ୍କ ଲୋଚନାଗ୍ନିରେ (୧) କରି ପାପ ପୁରୁଷକୁ ପୋଡ଼ିଲା । ପୋଡ଼ି ନିର୍ମଳ ହୋଇଲା । ମନେ ମନେ ଏମନ୍ତ ହୋଇ ଶୁଦ୍ଧ ହୋଇଲା । ଜଗତକୁ ନୂଆ କରି ଶୁଦ୍ଧ କଲା ।

ଏମନ୍ତ (୨) ଜଗତରେ ଏବଂଭୂତ ସମୟରେ ବିଧାତା କଳ୍ପନାରେ, ମାହେଶ୍ୱରଙ୍କ ଅଂଶେ, ଯୋଗିନୀଙ୍କ ବଂଶେ, ଲୀଳାମତେ, ପୁରାଣ ସନମତେ (୩) ଆପଣାର କୃତ୍ୟେ, କୌତୁକ ମତେ, ଅମଙ୍ଗ ନଷ୍ଟରେ, ଖେଚର ବଶରେ, କାମରୂପା ସଙ୍ଗେ, କ୍ରୀଡ଼ାରସ ରଙ୍ଗେ, ପୂତନା ହରଣୀ ବୋଲି ଯେ ଗ୍ରହ ଏକ ଅଛି । ସେ ଜଗତରେ ବାଳପୁଅମାନଙ୍କୁ (୪) ପାଳିଥାଉ ଅଛି । ଏ ନ୍ୟାୟରୂପୀ ଷଷ୍ଠୀ ରାତ୍ର ଦିନରେ ପୁଅମାନଙ୍କୁ ଜଗିଥାଇ (୫) ତଥାପି ସେ ପାଳିଠ କରି ନଥାଇ । କମାନା (୬) ଏଣୁ କରନ୍ତି ଜଗତଯାକେ କେହି କାହାର ଜନ୍ମ କଲାର ପୁଅ ନୁହନ୍ତି (୭) । ଏମନ୍ତେ (୮) କରି ବନ୍ଧନ ହୋଇଥାଇ । ଏମନ୍ତ କୌତୁକ ଦେଖିବାକୁ ଯାହା ଇଚ୍ଛାଏ କରି ଚେଷ୍ଟୁଥାଇ । ସେ କୁମର ଜନ୍ମ ଦେଖି, ବିକୃତ ନୟନେ ନିରେଖି, ସୁବର୍ଣ୍ଣ ଯୋଗୁଣୀ ରୂପେ ବସି, ଶିଶୁରୂପକୁ ରସି, ନବତନ ଚନ୍ଦ୍ରକଳାକୁ (୯) ଯେମନ୍ତ କାଳ ମେଘ ଆକର୍ଷଇ ସେହିମତ କରି କୁମରକୁ ପାଳିଠାଇବାକୁ ଆକର୍ଷି ଅଇଲା । ସମସ୍ତ ପୁରଜନମାନଙ୍କର ଜୀବନ ହରିଥାନ୍ତି ଆପଣାର ପଣନ୍ତେ ମନ୍ତ୍ରୀ ଗଣି ପାଡ଼ିଲା । ସମସ୍ତେ ମୃତ ଶବ (୧୦) ପ୍ରାୟେକ ହୋଇଲେ । ଏମନ୍ତ ସମୟେ ସେ ପୂତନା ହରଣୀ ସମ୍ପୂର୍ଣ୍ଣ ଭୟଙ୍କର ମୂର୍ତ୍ତି, କୁମରକୁ ନେବାକୁ ବସିଛି ଅଛି । ସେ ପୂତନା ହରଣୀ କେମନ୍ତ ଅଟଇ ।

ଦେହ ଅନ୍ଧକାରକୁ ସଦୃଶ କଲା । ଚକ୍ଷୁ ଦୁଇ ପିଙ୍ଗଳା । ଚନ୍ଦ୍ରକୁଣ୍ଡ ବିଶାଳ (୧୧) । ଆୟୁତ ସରଳ ବିରଳା । ଅପାଙ୍ଗ ତରଳ ତରଳା (୧୨) ବିଜୁଳି ପ୍ରାୟେକ ଜିହ୍ୱା ଦିଶଇ । ବାଳଚନ୍ଦ୍ର (୧୩) ପ୍ରାୟେକ ଦନ୍ତପନ୍ତ ପ୍ରକାଶଇ । ଭ୍ରୂଲତା ଦୁଇ ଧନ୍ୱୀ ଅଛି । ସ୍ତନ ଦୁଇ ଲମ୍ବ ହୋଇ ଅଣ୍ଟୁ ପର୍ଯ୍ୟନ୍ତେ ଲମ୍ବି ଅଛି । କୃଷ୍ଣ ବସ୍ତ୍ର ପିନ୍ଧିଅଛି । ଲଣ୍ଡା ବଗୁଲି ଫୁଲେ କବେସ୍ୱର ବାନ୍ଧିଅଛି । ଜଘନ କଳାକା ପ୍ରାୟେକ ଶୋଭେ । ମଧ୍ୟଦେଶ ମୃଦଙ୍ଗ ପ୍ରାୟେକ ଅଛି । ଅଧର ଜମ୍ବୁ କୋଳର ପ୍ରାୟେକ କଳା । ଭ୍ରୂଲତା କୃଷ୍ଣ ସର୍ପିଣୀ ପ୍ରାୟେକ ଲୀଳା । ଚକ୍ଷୁ ଗମ୍ଭୀର ଚନ୍ଦ୍ରକୁଣ୍ଡର କୋଟର । ରୋମାବଳୀମାନେ ପ୍ରକାଶ ତପ୍ତ ହାଟକ । ଗଭୀର ଉଦର । ନୂପୁର ଶବ୍ଦ କରଇ (୧୪) ଯେଉଁ ଅଙ୍ଗୁଳି ଭେଦ । ଏମନ୍ତ ବେଶ ହୋଇ କୁମରକୁ ନେବାକୁ ଥିଲା । ଆଗେ ଅଟେ ମୂର୍ଖ ହୋଇ ଭୂମିକି ଲମ୍ବିଲା । ତ କେମନ୍ତ ଦିଶିଲା । ଯେମନ୍ତ ମୃତ୍ୟୁ ଦେବତା କାଳପାଶି ଯେନ ମୃତ୍ୟୁ ପିଣ୍ଡକୁ (୧୫) ଆକର୍ଷିଲା ।

---

(୧) 'କ' ଅଗ୍ନିଲୋଚନେ କରି (୨) 'କ' ଏଥି (୩) 'ଗ' ସେତେମତେ
(୪) 'କ' କୌତୁକ ବାଳକମାନଙ୍କୁ (୫) 'କ' ଜଗାଇ ଥାଇ (୬) 'କ'ରେ ଏ ନ୍ୟାୟ
(୭) 'କ'ରେ ନୁହଇ (୮) 'କ' ରେ ମମତା (୯) 'ଖ' ରେ ନାହିଁ
(୧୦) 'ଖ' ମୃତ୍ୟୁପ୍ରାୟ (୧୧) 'ଗ' ରେ ନାହିଁ (୧୨) 'ଖ' ରେ ନାହିଁ (୧୩) 'କ' ଚନ୍ଦ୍ର
(୧୪) 'କ' ନୂପୁର ବଚନେକ କହଇ (୧୫) 'ଖ' ରେ ମଣିଷ ଲୋକଙ୍କୁ

Digitized by srujanika@gmail.com

ତ ଏମନ୍ତ ଦେଖି କୁମର ହୃଦଗତେ ବିସ୍ମରିଲା । ଅହୋ ଏ ପିଶାଚୀ କେ । ମୁଁ ତ କୈଳାସ (୧) କନ୍ଦରେ, ପର୍ବତାଙ୍କ ଗହ୍ୱରେ, ଅନେକ ଯୋଗୀମାନଙ୍କ ଦେଖିଅଛି । ଏମନ୍ତ ରୂପ ଚରିତ ଦେଖି ନାହିଁ । ଏ ମୋତେ ନେବାକୁ ବସିଅଛି । ତ ସେ କୁମର ଏମନ୍ତ ବିସ୍ମର, ପାର୍ବତୀଙ୍କି ସୁମରି, ପବନ ଧାରଣାରେ କରି, ମେରୁ ମୁଦ୍ରା ଆଚରି, ଅଚଳ ଭାବେ ରହିଲା ।

ଏମନ୍ତେ ସେ ପିଶାଚୀ କୁମରକୁ ଧରି ଟେକିଲା । କୁମର ଭୂମିରୁ ତିଳାଏ ନ ଚଳିଲା । ପୁଣ ପୁଣ ଆକର୍ଷି ହୁଁକାର ନାଦେ ଟେକିଲେହେଁ ନ ଉଠିଲା । ମୁଖନେତ୍ର କର୍ଣ୍ଣ (୨) ନାସିକାଦ୍ୱାରେ ରୁଧିର ସରିଲା । ଏତେ ଶ୍ରମେ ନ ଉଠିଲା ଯହୁଁ, କୁମରକୁ ବଳେକରି ହତ (୩) କରିବାକୁ ବିସ୍ମରିଲା ଚହୁଁ । ସେ ସୂତକ ହରିଣୀ ଏମନ୍ତ ବିସ୍ମର ଜାଣି ସେ କୁମର ଟହଟହ ହୋଇ ହସି ଉଠିଲା । ସେ କୁମର ସୁସ୍ୱର ବାଣୀ ଶୁଣି, ମନେ ମନେ ଗୁଣି, ସେ କୃତାନ୍ତ ଯୋଗୀ ସୂତକ ହରିଣୀ ମହା ଆଶ୍ଚର୍ଯ୍ୟ ପାଇଲା । ସେ ସ୍ତମ୍ଭୀଭୂତ ହୋଇ କୁମରକୁ ଚାହିଁଲା । ଭୟ ମାଡ଼ିଲା । ଶ୍ୱାସ ଛାଡ଼ିଲା । ରୁଞ୍ଜି ସ୍ଥିରକରି ତାହାର ଅନ୍ତର୍ଗତେ ବିଚାରିଲା । ଅହୋ ଏ ତ ବଡ଼ ଶଠ । ସୁର, ନର, ଗନ୍ଧର୍ବ, ଯକ୍ଷ, ରାକ୍ଷସ, କିନ୍ନର ସହିତ କରି ମୋହର ବିଘ୍ନ ଶକ୍ତିରେ କରି ସମସ୍ତ ବାଳପୁଅମାନଙ୍କୁ ପାଳଟାଇ ଥାଇ । ଏମନ୍ତ ପୁଣ ତ କାହିଁ ଦେଖିଲି ନାହିଁ । ଜନ୍ମ ହୋଇଲା ପୁଅ ହସଇ କାହିଁ । ପୂର୍ବେ ମୋତେ ଦେବତାମାନେ କହିନାହାନ୍ତି କି, ବାସୁଦେବଭକ୍ତ ଲୋକମାନଙ୍କୁ ପାଳଟାଇ ନ ପାରିବୁ ବୋଲି । ଏ ନିଶ୍ଚୟ ବୈଷ୍ଣବ ଅଟଇ । ମୋହର ମନକୁ ଘଟଇ । ନୋହିଲେ ପର୍ବତ ଉଠଇ ମୋହର ଚହଲେ । ଏ କିମ୍ପା ନ ଉଠିଲା ଅତ୍ୟନ୍ତ ବଳେ । ଏହାକୁ ମୁଁ ସମ୍ଭାଷଣ (୪) କରିବି । ତଦନ୍ତ କଥା ପଚାରିବି । ଏମନ୍ତ ବିଚାରି ସେ ଯୋଗୀ ନ ପଚାରୁହୁଁ ଏଥିକୁ କୁମର ବୋଲୁଅଛି । ଆଗୋ କେ ରୂ ମାସୁ । ନ ଡରଇ ତ୍ରାସୁ । କାଳବର୍ଣ୍ଣ କାୟା (୫) । ମୋତେ ନେବାକୁ କିମ୍ପାଇ ହେଉଅଛୁ ଏତେ ଉତ୍ସାହ । ଏ ପ୍ରପଞ୍ଚ ଦେହ ଗୋଟାକୁ ଆବୋରି । ପ୍ରକୃତ ଭାବେ (୬) କରି କାଳର ବଳକୁ ଯାଉଅଛୁ । ଅବ୍ୟାପାସ୍ତ ହୋଇଲୁ । ବିଶ୍ରାନ୍ତିକି ନ ଗଲୁ । ପିଶାଚୀ ରୂପ ବହି, ସକଳ ଦୁଃଖ ସହି, ମନେ ମନେ ହର୍ଷ ପାଉଅଛୁ । ଚୈତନ୍ୟ କଥାରେ ଧାଉଁଅଛୁ । ନିରନ୍ତରେ ଚଞ୍ଚଳ ହୋଉଅଛୁ । ପ୍ରାଣୀମାନଙ୍କୁ ମୋହୁଅଛୁ (୭) । ଅଜ୍ଞାନ ଧ୍ୱଂ । ଚହୁଁଅଛୁ । ଏଥୁଁ ଅବା କି ସୁଖ ପାଉଅଛୁ । ଶ୍ରେସ୍କରତ ଲେଶ ହିଁ ନ ଜାଣୁ ଜୀବ ବା ଚରାଚର ନ ମଣୁ (୮) । ତୋତହୁଁ ଦୁଃଖୀ କେହୁ (୯) ନାହିଁ । ସୁଖର ଲେଶ ଅଧ ପାଇବୁ କାହିଁ । ଅରଣ୍ୟେ ମାଳତୀ ପୁଷ୍ପ ଯେମନ୍ତ ଯେହ୍ନ ମତ ଏ ନବ ଯୌବନ ଅବସ୍ଥା ତୋହର ବ୍ୟର୍ଥ

---

(୧) 'ଖ' କପିଳାସେ (୨) 'କ' ଶ୍ରବଣ (୩) 'ଖ' ନାଶ (୪) 'ଖ' ସମ୍ଭାଷଣ (୫) 'ଖ' ନ ଡରଇ ଭୟଙ୍କର କାୟା । କାଳବର୍ଣ୍ଣ ରୂପା । (୬) 'ଖ' ବଶେ (୭) ଅବ୍ୟାପାରେ-ମୋହୁଅଛୁ ପର୍ଯ୍ୟନ୍ତ 'ଗ' ରେ ନାହିଁ । (୮) 'କ' ଜୀବସ୍ୱଭାବ ଆବୋରି ଅପରମ ମଣୁ । (୯) 'କ' ଦୁଃଖୀର ଜନ୍ମନାହିଁ

Digitized by srujanika@gmail.com

ହୋଇ (୧) ହୋଇଲ ଜରତ୍ତ । ଉତ୍ତମ ବୃଦ୍ଧି ଯେବେ ପାନ୍ତୁ । କୈଳାସ ଭବନରେ ପଶୁଶ୍ବରକା ହୋଇ ପାର୍ବତୀଙ୍କର ଅର୍ଦ୍ଧଅଙ୍ଗ ପାନ୍ତୁ (୨) ଏ ରୂର ଖର୍ବୁ (୩) କଣ ଯନ୍ତୁ ହୋଇଲୁ ଅସୁସ୍ଥମତ (୪) ତନ୍ତୁ ସ୍ୱତନ୍ତ୍ରୀ ବୋଲି ତୋତେ ବୋଲନ୍ତି ସମସ୍ତ । ତୋହର ଦୁଃଖ ଦେଖି କଲି ମୁଁ ଦୟା । ଏବେହେଁ ଗ୍ରୁଡ଼ ଏ ଦୁର୍ବୁଦ୍ଧି (୫) ମାୟା । ଏହା ଶୁଣି ସେ ସୁତକ ହରଣୀ ବୋଲୁ ଅଛୁ । ହେ ବସ୍ତ୍ର ! ମୁଁ ଆଜହୁଁ ହୋଇଲି ଧନ୍ୟ । ଅବର ଦବଯ ହିଁ ମୋହର ଅନ୍ତଅନ୍ତ ପୁଣ୍ୟ । ଏ ମେ ହର ମନକୁ ତୁ ଏମନ୍ତ ଘଟୁ । ତୁ ଜଣେ ପ୍ରତ୍ୟକ୍ଷେ ଈଶ୍ବର ଅଟୁ । ଏବେତୁ ପୂର୍ବବତ ହେଇ ହସୁ କନା ? ତୋହର ବଦନ ଶଶି ଏବେ ପ୍ରକାଶୁ କନା । ମୋହର ଅଜ୍ଞାନ ତମିର ନାଶୁ କନା (୬) । ମୋତେ ଆତ୍ମା ଉପଦେଶ୍ୱ କହୁକନା । ମୋହର ପ୍ରକୃତ ବନ୍ଧ ଫେଡ଼ୁ କନା । ମୁଁ ସବୁ ତୃଣ ପ୍ରାୟେକ ମଣେ କ ନା (୭) । ତୋହର ବଦନକମଳରୁଁ ଉପଦେଶ ପୀୟୂଷ (୮) ଦେଉ କ ନା ? ମୋହର ଅକ୍ଷେପଟଳ ଛଡ଼ାଉ କନା । ତୋହର ପରଶ୍ବସ୍ତ୍ର ହୋଇ ଥାଇ କନା । ମୁଁ ଅଭୟ ପଦ ହିଁ ପାଇକନା ? ମୁଁ ଅବଲୋମହିଁ (୯) ଜାଣଇ କନା । ତୋତେ ଗୁରୁକଣ ଗଣଇ କ ନା ? କାଳଚକ୍ର କମଳ ଦୁଷ୍ଟ ଦୁର୍ବାସନା କାମଣଫୁକୁ ପ୍ରମ୍ଭଇ କନା । ଜଳ, ଅଗ୍ନି, ବାତ, ପୀତ, ଶୀତ, ହରତ, ଲୋହିତ, ଗତ ଦୁର୍ମସ୍ତ ଦୁଃଖରୁ ସୁଖ ଲଭଇ କନା । ଅତ ଅପ୍ରମେୟ ଶିବ ସାନ୍ଦ୍ର ଶାନ୍ତ ସୁଖ ଲଭଇ କନା (୧୦) ।

ତ ସେ ସୁତକ ହରଣୀ କୁମରକୁ ସ୍ତୁତି ଏବଂଭୂତ ସାତ୍ତ୍ୱିକ ଶରଧାରେ ବୋଇଲ ଯନ୍ତୁ । କୁମର ପ୍ରସନ୍ନ ହୋଇ ଅନୁଗ୍ରହ କଲ ତନ୍ତୁ । ଦରହାସ ହୋଇ କୁମର ବଚନ ବୋଇଲ । ଧନ୍ୟ ଧନ୍ୟ ଏ ତୋ ବୁଦ୍ଧି, କାହ୍ନୁ ହୋଇବ । ଏ ବଚନ ଶୁଣି ସୁତକ ହରଣୀ ବୋଇଲ । ସକଳ ଜଗତରେ ସମସ୍ତ ଋଷି ଦେବତାମାନଙ୍କର ଗୋଷ୍ଠୀରେ ପ ରୂଷ୍ୟବନ୍ତୀ ହୋଇ ଶୁଣୁଥାଇ । ଇନ୍ଦ୍ରାଦି ଦେବତାମାନେ ବ୍ରହ୍ମା ସହିତେ ଯାହା ଜାଣିବାକୁ ଙ୍କ ପ୍ରାୟେକ (୧୧) ହୋଇ ପ୍ରାର୍ଥନା କରୁଅନ୍ତି । ତାହାଶୁଣି ମୋହର ଶ୍ରଦ୍ଧା ହେଉଥାଇ । ପୁଣି ସଦ୍‌ଗୁରୁ କପାଇ (୧୨) ଆଦେଶ ନ ପାରଇ । ତୁ ଏବେ ମୋତେ ଅନୁଗ୍ରହ କର । ଏ ଜଡ଼ମନ୍ତ ବୃଦ୍ଧିରୁ ମୋତେ ଉଦ୍ଧର । ଏହାଶୁଣି କୁମର ବୋଇଲ । ପ୍ରାଣିମାନଙ୍କର ବାସନା କର୍ମବଳେ ସେ ସିଦ୍ଧ ହେଇ । ଯେହେତୁ କ୍ଷୁଧାର୍ତ୍ତୀ ଲୋକ ଦୁଇହାତେ ନ ଭୁଞ୍ଜଇ । ତୋହର ଏ ପ୍ରାର୍ଥନା ସିଦ୍ଧ ହୋଇ । ପୁଣି ଏ ସମୟେ ନୁହଇ । ତୁ ମୋହର ଧାଇ ହୋଇ ମୋତେ ପ୍ରତିପାଳନା

---

(୧) 'ଖ' ରେ ବ୍ୟର୍ଥ ହୋଇ ନାହିଁ । (୨) 'କ' ସଙ୍ଗେ ଥାନ୍ତୁ (୩) 'ଖ' ଛବେ (୪) 'କ' ଅସିମତ୍ୱ (୫) 'କ' ବଶ୍ୱବୁଦ୍ଧି ମାୟା । (୬) 'କ' ରେ ନାହିଁ (୭) 'କ' ରେ ନାହିଁ (୮) 'କ' କମଳ (୯) 'କ' ଅନୁଲୋମ ପ୍ରତିଲୋମ (୧୦) 'କ' ରେ ଜଡ଼ସ୍ୱବ ସମୁଦ୍ର ଶୁଖାଉ କ ନା ? ପାପ ପଟଳ ହନାଶୁ କନା ମୋତେ ପରମ ପଦରେ ମିଶାଉ କ ନା ! ମୁହିଁ ପରମ ମାହେଶ୍ୱରୀ ପଦ ବନ୍ଦଇ କ ନା । ଅଧିକ (୧୧) 'ଖ' କଙ୍କବା (୧୨) 'ଖ'ରେ ନାହିଁ

Digitized by srujanika@gmail.com

କରୁଥା । ମୋହର ଯୁବା ସମୟରେ ତୋତେ ଉପଦେଶ ଦେବ । ଏବେ ତୁ ବସୁଦେବର ନାମ କୀର୍ତ୍ତନ କରୁଥା । ପ୍ରଥମ ଉପଦେଶ ହିଁ ଏହିଟି । ଉପଦେଶମାନଙ୍କର, ଜ୍ଞାନମାନଙ୍କର, ଜନନୀ ଏ । ସ୍ୱଜାତିଏ । ଏଥିଁ ତି ସମସ୍ତ ଜ୍ଞାନମାନ ଜାତ ହୁଅଇ । ଯେମନ୍ତ ସେ କ୍ଷୀର ସମୁଦ୍ରୁଁ ସମସ୍ତ ରତ୍ନମାନ ଜାତ ହୋଇଲେ । ଏତକ ବୋଲି ସେ କୁମର ତୁନି ହୋଇଲା । ପୁତନା ହରିଣୀ ଧାଇଁ ହୋଇ ରହିଲା (୧) । ସେହିକ୍ଷଣି ସେ ପିଶାଚୀ ଭୟଙ୍କର ମୂର୍ତ୍ତି (୨) ତେଜି ଦିବ୍ୟ ମନୁଷ୍ୟର ରୂପ ଧଇଲା । କନକ ସମାନ ପିଙ୍ଗଳ କୁଟିଳ କ୍ଷେତର ଯେଉଁ ଖାଙ୍କର କେଶ ଦିଶୁଥିଲା, ତାହା କାଳିନ୍ଦୀ ତରଙ୍ଗ ପ୍ରାୟେକ କଲା ଦିଶିଲା । ଅତ୍ୟନ୍ତ ଜଡ଼ ତମିସ୍ର ଅନ୍ଧକାରକୁ ସଦୃଶ କଲା ଯେତେକ ସେ ଶରୀର ହୋଇଥିଲା, ତାହା ଚମ୍ପକ କେତକୀ ମଧଢଲ ପ୍ରାୟେକ ସ୍ନିଗ୍ଧ ଚିକ୍କଣ ଗଉରବର୍ଣ୍ଣ କଲା । ବିକୃତ ବିକାର ଯେତେ ସେ ମୁଖମଣ୍ଡଳ, ତାହା ଶରଦ ଚନ୍ଦ୍ର ପ୍ରାୟେକ କଲା ଉଜ୍ଜ୍ୱଳ । ତରଳ ଅପାଙ୍ଗେ ପୁରଜନ ମୋହିଲା । କୃଷ୍ଣ ସର୍ପିଣୀର ପ୍ରାୟେ ଯେତେକ ସେ ଭ୍ରୂଲତା ଦୃଶ୍ୟ ଦିଶୁଥିଲା, ସେ ଅନଙ୍ଗରେ ଧନ୍ୱା ରୂପକୁ ନିନ୍ଦାକଲା । ବିକୃତ ନୟନ ତାହାର ନୀଳୋତ୍ପଳ ପ୍ରାୟେକ କଲା । ନାସା ତିଳକୁସୁମକୁ ମୋହିଲା । ଯେତେକ ଅଧର ଜମ୍ବୁ ଫଳ ପ୍ରାୟେକ କଲା ସେ ବନ୍ଧୁଳୀପୁଷ୍ପ ପ୍ରାୟେକ ଶୋହିଲା । ବାଳଚନ୍ଦ୍ରମା ସେ ଦନ୍ତପନ୍ତି ଦିଶୁଥିଲା ତାହା କୁନ୍ଦ କଳିର କାନ୍ତି ପ୍ରାୟେକ ହୋଇଲା । ବଜ୍ରାଙ୍କୁର ପ୍ରାୟେ ଯେତେକ ସେ ରସନା ଦିଶୁଥିଲା ଆରକ୍ତ କୁମୁଦ କୁସୁମ ପାଖୁଡ଼ା ପ୍ରାୟେକ କଲା । କଣ୍ଠ ବେଢ଼ କବାଟ ପଟାନ୍ତର ଦେବା । ସେ ତାଙ୍କ ଚନ୍ଦ୍ରେ ଜଡ଼ ପାଇଲା ଶୋଭା । ଅର୍ଦ୍ଧଭଗ୍ନ ଭେଣ୍ଡ ପ୍ରାୟ ଯେତେ ବଚନ ଶୁଭୁଥିଲା, ସେ ବସନ୍ତ ଋତୁର ଶ୍ରେଣିର କୋକିଳକୁ ଗଞ୍ଜିଲା (୩) ଲମ୍ବା ବଗୁଲା ପୁଚ୍ଛ ଯେଉଁ କବରୀରେ ବାନ୍ଧିଥିଲା, ତାହା ସୁବାସ କୁସୁମେ ରଚିଲା । ସ୍ତନ ଦୁଇଟେ ଅଣ୍ଟୁ ପର୍ଯ୍ୟନ୍ତ ଲମ୍ବିଥିଲା, ତାହା ଶିଶୁ ଗଜକୁମ୍ଭୀର ପ୍ରାୟେକ ହୋଇଲା । ଜଘନ ଚକଚରଣ ତାହାର ଉଲଟରମ୍ଭା ପ୍ରାୟ କଲା । ଗମନ ରାଜହଂସୀର ପ୍ରାୟେ କଲା । କୃଷ୍ଣ ବସ୍ତ୍ରେକ ଯେ ପିନ୍ଧିଥିଲା ତାହା ସ୍ନିଗ୍ଧ ଚିକ୍କଣ ପୀନ ଶୁକ୍ଳ କଲା ।

ତ ଏବଂଭୂତ ପ୍ରକାରେ ପୁତନା ହରିଣୀ ରୂପକୁ ଧରି ଧାଇଁ ହୋଇ ରହିଲା । ସମସ୍ତ ପୁରଜନମାନଙ୍କର (୪) ଜୀବ ଅସ୍ଥା ହରି ଆଣି ଆପଣା ଅଞ୍ଚଳେ ମନ୍ତ୍ରି ଗଣ୍ଠି ପକାଉଥିଲା ତାହା ଫେଡ଼ିଦେଲା । ସକଳ ଜୀବମାନେ ଜୀବନ ପାଇ ଉଦ୍ଧ୍ରୁକ ହୋଇ ରାଣୀର ପୁତ୍ର ଜନ୍ମ ଦେଖିଲେ (୫) । ସମୁଦ୍ରଘୋଷ (୬) ପ୍ରାଏ କରି ଆନନ୍ଦ ଶବ୍ଦମାନନ୍ତ କଲେ । ନାନାତୀର୍ଥଜଳମାନନ୍ତ ସେହି କୁମରକୁ ସ୍ନାନ କରାଇଲେ । ଭୂମି, ଗୋ (୭) ଦକ୍ଷିଣା କରି ଦାନ ମାନନ୍ତ ଦେଲେ ।

---

(୧) 'କ' ରେ ପୂତନ ହରିଣୀକ ପରିଚାଣ୍ଟ କରି ନେ ହିଲା । (୨) 'ଖ' ରୂପ (୩) 'କ' ଶ୍ରେଣିଷ କୋକିଳ ପ୍ରାୟେତ ସ୍ୱରତ ଶୁଭିଲା (୪) 'ଡ' ପ୍ରାଣୀମାନଙ୍କର (୫) 'କ' ତାହା ଫେଡ଼ନ୍ତେ ହିଁ ସମସ୍ତେ ହିଁ ଉଠିଲେ । ଉତ୍ସବ ହୋଇଲା, ରାଣୀର ପୁତ୍ରଜନ୍ମ ଦେଖିଲେ (୬) 'ଖ' ଘୋର ଗର୍ଜନ (୭) 'ଖ' ଭୂ

Digitized by srujanika@gmail.com

ତ ସେ ସୁତକ ହରଣୀକି ଦେଖି ସମସ୍ତେ ଆନନ୍ଦ ହୋଇଲେ । ଧାଇ କର ରଖିଲେ । ବୋଇଲେ—କୁମରକୁ ପ୍ରଜାପାଳନା (୧) ନମିତ୍ତେ ଅବା ଷଷ୍ଠୀଦେବୀ ଅଇଲେ (୨) । ଏମନ୍ତେ ସେ ରାଜାର କୂଳନ୍ଧି ହୋଇଲା ଷୀରସମୁଦ୍ର (୩) ଜାଣି । ତହିଁକି ପୌର୍ଣ୍ଣମୀ ଚନ୍ଦ୍ର ପ୍ରାୟେକ ଜନ୍ମ ଲଭିଲା କୁମରମଣି । ଶଶିପ୍ରଭା ରାଣୀର ମନକୁମୁଦ ଫୁଟିଲା । ଅନଙ୍ଗ ପଦ୍ମାକର ରାଜାର ଚନ୍ଦ୍ରାମେଘ ଉଠିଲା । ରାଜାର ମନ୍ଦିର ହିଁ ସେ ଗଗନ ହୋଇଲା । ଅଇଥି ରାଜାମାନଙ୍କର ଗର୍ବ ହିଁ ସେ ଚକ୍ରବାକ ପ୍ରାୟେକ ହୋଇ ଶୋହିଲା । ଖଳ ଅମନାତ୍ୟମାନେ କମଳ ବନ ପ୍ରାୟେକ ହୋଇଲେ । ସାବନ୍ତ ଜନନୀମାନେ (୪) ନୀଳୋତ୍ପଳ ପ୍ରାୟେକ ଶୋହିଲେ ।

ତ ଏମନ୍ତ ଦେଖି ସେ ରାଜା ଆନନ୍ଦସମୁଦ୍ରେ ମନବୋହିତ ବୁଡ଼ିଲା । ଚନ୍ଦ୍ରାମେଘ ଉଡ଼ିଲା । ଦରିଦ୍ର ଲୋକ କି ପାଇଲା ନିଧି । ଜନ୍ମଅନ୍ଧ ପାଇଲା କି ଦିବ୍ୟାଞ୍ଜନ ମହୌଷଧି । କାମୁକ ଲୋକ ପାଇଲା କି ବଶ୍ୟକରଣ ବିଧି (୫) । ମହାବୃକ୍ଷ ପାଇଲା କି କଳ୍ପ ଔଷଧୀ । ସ୍ଥାବର ପାଇଲା କି ଚରଣଶକ୍ତି (୬) । ମୋକ୍ଷାର୍ଥୀ ପାଇଲା କି ଜୀବନ ମୁକ୍ତି ।

ତ ଏମନ୍ତ ପ୍ରକାରେ ରାଜା ଆନନ୍ଦସମୁଦ୍ରେ, ଥାଇ ଭଣ୍ଡାରମାନନ୍ତ ଦାନ ଦେଇ, ଯାଗମାନନ୍ତ କରାଇ, ହାଟ ପେଣୁ ମାନନ୍ତ ଜୁର ହେଉ ବୋଲି ଆଜ୍ଞାଦେଲେ । ଏମନ୍ତ ବୋଲି ହୁରଆଏ ମାଡଲେ । ବଣିଜାରେ ଡାକିଲେ । ତ ସେ ବସୁଧାମଣ୍ଡଳ କଟକରେ । ହୁରଆ, ତୁରଆ (୭), ଥେଣ୍ଟ (୮), କାଣ୍ଡିଆ, ଗୈର, ଜୁଆର, ପୋଖଣ୍ଡ (୯), ପେଣ୍ଡିଆ ଲିହା, ଲୁଲୁମା, ଗୁଟୁଆ, ଘଟୁଆ, ଲେଖୁଆ ଲୋକା, ଲମ୍ବହଡା, ନାଟୁଆ, ମଙ୍ଗଳ ବଢଆ, ହାଟୁଆ, ବାଟୁଆ, ଆଟୁଆ, କାଠୁଆ, ମଠିଆ, ଷଠି ଦଉଡ଼ିଆ, ରଗଡ଼ା, ଧାଣୁଆ, ବୋଲା, ପେଲା, ପାହାନ୍ତଆ, ଧଙ୍ଗା (୧୦), ମାରୁଆ, ବାଦୁଆ, ଖେଚଡ଼ା, ଶରଡ଼ା, ପୁରୁଣା, ମାଡୁଆ, ଝମାଲଆ, ଟାହିମେଲା, ଟାକେଶଆ, ରାଣ୍ଡୁଆ, ହୁଲୁହୁଲୁଆ, ହାଥିଓରା, ମେଳଆ, ମଣ୍ଡୋବସା (୧୧), ବଲ୍ଲ ଶୋଲୁଆ, ଫାସିଓରା, ଫୁଟିଆବନ୍ଧା, ଖରଡ଼ଙ୍ଗା, ଖଚଡ଼ୁଆ, ଖାଙ୍କେଶଆ, ସ୍ବରଆ, ଧଡ଼ା, ଧଣକଡ଼ା, ଧୋବାତୁଠିଆ, ଉଟଉଠା (୧୨), ପେଚଡ଼ଆ, ମୁହଁପୋଡ଼ା, ଧୂଡ଼ା, ଧୂଳାମା, ଧୋଅରା, ପଖିଆ, ପଖାଳଖିଆ, ଭେଟା, ପେଲାପେଲି ପଣା, ଅଗଡବୋଲା, ଗିଳୁଆ, ଡାହାଣ, ଡାମରକୋଆ, ଡଙ୍ଗରା, ଗେଲିଆ, ଢେଗା, ଢେଗଲୁହା, ବର୍ତ୍ତାଙ୍ଗସାନା, ଟାକରଖିଆ, ଛଇଳା, ଗୁଣ୍ଡୁଣିଆ, ନାସିକାବସ୍ତ୍ରା, ପେମ୍ପଲି, ଧାଉଁରଆ, ଛରଆ, ଯୋଡୁଡ଼ା, ପିଣ୍ଡବସା, ଟକା, ମେଲଆ ଇତ୍ୟାଦି କରି ସକଳ ନରାଧମମାନେ ଜୁର ଶବ୍ଦ ଶୁଣି ଧାଇଁଲେ ରହିଲେ ।

---

(୧) 'କ' ପ୍ରଜାପାଳିବା (୨) 'କ' ଷଷ୍ଠୀଦେବୀ ଅବା ମୂର୍ତ୍ତିମନ୍ତ ହୋଇ ଅଇଲେ ବୋଲି । (୩) 'ଖ'ରେ ନଭମଣ୍ଡଳ (୪) 'କ' ମାଆମାନେ (୫) 'ଖ' ରେ କାମୁକ ଲୋକ—ବିଧି ପର୍ଯ୍ୟନ୍ତ ନାହିଁ (୬) 'କ' ସ୍ଥାବରକୁ ଜାତ ହୋଇଲା କି ଚନ୍ଦନ ଶକ୍ତି । (୭) 'କ' ଜୁରଆ (୮) 'କ' ପେଣୁରଣ୍ଡିଆ (୯) 'କ' ଗୋଖଣ୍ଡ (୧୦) 'ଖ'ରେ ଧଂସା (୧୧) 'କ' ମଣ୍ଡୋଅବସା (୧୨) 'କ' ଉଠା ବଇଠା



Digitized by srujanika@gmail.com

ସେ କଟକେ ସେଠାରେ ପକ୍ଷୀ ଗୋଳେ ମିଶି ଧାଉଁଅଛନ୍ତି କେ କ୍ଷୁଧା ଆକୁଳେ । ଅନ୍ତ ବାକଲେ କେ ସୁସ୍ୱାଦୁ ପଦାର୍ଥମାନ ଖାଉଅଛନ୍ତି । କେ ଚକ୍ଷୁ ପସ୍ୱେ ଧାନ ପସ୍ୱେ, ଧାଇଁପଡ଼ି ମୁଣ୍ଡି ଆଣି ନେଉଅଛନ୍ତି । କେହୁ ଆଗତ ହେଉଛନ୍ତି । କେ ବାଳ ତରୁଣୀଙ୍କର କଙ୍କଣମଣି କଟିମେଖଳା ଫେଇ ନେଉଅଛନ୍ତି (୧) । ହସ୍ତୀ ଅପଗତ ହସ୍ତୀ ଆଗପଛ ନେଉଛନ୍ତି (୨) । କେ ସୁନ୍ଦରୀ ସ୍ତ୍ରୀ ମୂରୁଛୁ ନ ପାଶ ଗନ୍ଧଲେ ପକ୍ଷୀ କୋଳ କରୁଅଛନ୍ତି । କେ ବଳସ୍ୱାବଲେ ଅନ୍ତ ଗନ୍ଧଲେ ଗୁଡ଼ଖାଇ ଘୋଡ଼ ଧୋଉଅଛନ୍ତି । କେ ଜନଚହଲେ ଧନ ବହଲେ ହାତ ଆଙ୍ଗୁଳାଏ ବଣ୍ଟୁଅଛନ୍ତି । କେ କରୁଣ ସେନ ଘଣ୍ଟି ବଳିତା ଏକେ ଆରକେ କାଟୁଅଛନ୍ତି । କେ ଛେନା ଚାଉଳା ପରଫେଣ ଅଯତ ପାଇ ଟିଣ୍ଟୁଅଛନ୍ତି । କେ ବାଜଣାକେ ପକ୍ଷୀ ବଡ଼ ବଡ଼ ସେ ଡ଼ା ବାଛୁ ଚଢ଼ୁଅଛନ୍ତି । କେ ନେଇ ନପାଶ ଉଗଳ ହୋଇ ଅବଶରେ ପଡ଼ି ଗଡ଼ୁଅଛନ୍ତି । କେ ବାଡ଼ବାଟେ ପକ୍ଷୀ ପଛ ବାଟେ ବାହାର ହୋଇ ଯାଉଅଛନ୍ତି । କେ ବଳବନ୍ତ ଲୋକଙ୍କର ହାତେ ପଡ଼ି ଟାକର କହୁଣୀ ଖୁନ୍ଦା ଖାଉଅଛନ୍ତି । ଏମନ୍ତେ ସେ ବସୁଧାମଣ୍ଡଳ କଟକରେ, ବାରୁ, ଗୋଳରେ କେବଣ କେବଣ ପଦାର୍ଥମାନ ନୂର ଯାଉଅଛନ୍ତି । ଅପୂର୍ବ ସେ କ୍ଷୀରୋଦ ପାଟ । ଦାଯୀନେତ । ଗନ୍ଧଗ୍ର ବେତ । ଶ୍ୱେତ ଚାମର । ଚନ୍ଦ୍ରମଣି ରତ୍ନ । ସିଗ୍ଧ ବୈଦୂର୍ଯ୍ୟ । ପଦ୍ମରାଗ ମାଣିକ୍ୟ । ବ୍ରହ୍ମଜାତ ସ୍ୱାଲୁଜାଣ । ହାର ପାଟ୍ୟା । ଶ୍ୱେତ ଧ୍ୱଜ (୩) ଖଡ଼ଗ୍, ବନ୍ଦୀ ପାରସ । ସ୍ୟମନ୍ତ କଙ୍କଣ । ଧୂପ ପ୍ରବାଳ । ଗଜମୋତି ହାର । ମେଷ ଲୋଚନ ମାଳା । କୁହୁକୁଣ୍ଡଳ ପକ୍ଷୀ । କୁଶ ମୁଦାଙ୍କ । କାଶ୍ମୀର ସ୍ଫଟିକ । ରାଜହଂସ । ମାଣିକ୍ୟ ଦୀପ । ବ୍ରହ୍ମଜାତ ହାର । ରୁଦ୍ରଜାତ ପୋହେଳା । ଉଗିଳ ମର୍କତ । ଇନ୍ଦ୍ରନୀଳମଣି । ସ୍ଫଟିକ ସୈନ୍ଧବ । ଜାର ମସ୍ତୁରା । ସୁବର୍ଣ୍ଣ କଳଶ । ଅଭେଦ କବଚ । ରତ୍ନ କାଞ୍ଚନ । ହିରଣ୍ୟ ଗର୍ଭ ଶାମୁକ, ଡାହାଣବର୍ତ୍ତିକ ଶଙ୍ଖ । ଲକ୍ଷ୍ମୀନାରାୟଣ ଶିଳା (୪) । ନାଗେଶ୍ୱର ବାଣ । ତାରାମଣ୍ଡଳ ପତାକା । ଅମୃତକୁଣ୍ଡଳ । ମୃଗନାଭି କସ୍ତୁରୀ । ଚନ୍ଦ୍ରକାନ୍ତ ମଣି । ଶଶିଖଣ୍ଡ କର୍ପୂର । ଶ୍ରୀଖଣ୍ଡ ଚନ୍ଦନ । ତରଳ ତଇଳ । ପଞ୍ଜାର ଶାର । ପାଟବାଲି ଶୁଆ । ବଜ୍ରତାଳ ମେଣ୍ଢା । କପିଳା ଗାଈ । ନାଟୁଆ ମର୍କଟ । ରାଢମୁଖା ଉଟ । ଶ୍ୱେତ କୋକିଳ । ବେଣ୍ଟକାର ଶାମଳ । ଏକମୁଖୀ ରୁଦ୍ରାକ୍ଷ । ପାଂଶୁବର୍ଣ୍ଣ ମୃଗ । ସିନ୍ଧୁଜାତ ଅଶ୍ୱ । ଚନ୍ଦ୍ରଜ୍ୟୋତି ଶ୍ୱେତହସ୍ତୀ । ତବଳ ତରଙ୍ଗ । ସୂର୍ଯ୍ୟପ୍ରଭ ମଣି । ରୁଦ୍ରଜାତ ପୋହଳା । ଚନ୍ଦ୍ରମଣ୍ଡଳ ମର୍କତ । ପାରଭେଦ ମୁକୁତା । ରସଯୋଗ ମୋଡ । ନିର୍ମଳ ବଜାନ୍ଧ । ଚଉଷଠି ବାନ ସୁନା । ବୈଦାନ୍ତ ଲୁହା (୫) । ଅବଧୋତନା । ନେପାଳ ତମ୍ବା । ବେଙ୍ଗି ପିତ୍ତଳ । ଚୁମ୍ବକଶିଳ । ପରଶୁ ପଥର । ସୁଖିସୁନ୍ଦରୀ ବାଙ୍ଗର । ଅଗୁରସ ଗନ୍ଧ । ଘଟିକା ଦାରୁମୂର୍ତ୍ତି ଇତ୍ୟାଦି ଦ୍ରବ୍ୟମାନ କେ କେଣେ ନେଉଅଛନ୍ତି । ସଂଖ୍ୟା (୬) ନ ଜାଣି । ଏ ଉତ୍ସବରେ ସେ ରାଜା ଆସ୍ଥାନେ ବିଜେକଲେ । ସେ ଯାହାର ଯେତେ ପଦାର୍ଥ ଗଲ ସେମାନେ ଯଥୋଚିତ କଣ (୭) ରାଜା ଭଣ୍ଡାରୁ ଦେଲେ ।

---

(୧) 'ଖ' ରେ ନେଉଅଛନ୍ତି ନାହିଁ (୨) 'ଖ' ରେ ହସ୍ତୀ ଅପଗତ ହସ୍ତୀ ଆଗପଛ ନେଉଛନ୍ତି ନାହିଁ । (୩) 'କ' ରେ ଶୁଦ୍ଧ (୪) 'କ' ଶାଳଗ୍ରାମଶିଳ (୫) 'ଗ' ରେ ନାହିଁ (୬) 'କ' ଅନ୍ତ (୭) 'କ' ଉଚିତ ପ୍ରକାରେ

Digitized by srujanika@gmail.com

ଏମନ୍ତେ ସେ କୁମରଙ୍କୁ ଅନେକ ଜତମ୍ବବତୀ ସୁଲକ୍ଷଣା ସ୍ତ୍ରୀମାନେ ମିଳି ସମସ୍ତ ମଙ୍ଗଳ ମାନନ୍ତି କଲେ । କୁମର ଜନମିବେ ଷଷ୍ଠୀଦେବୀଙ୍କି ଅନେକ ସ୍ତୁତି ରଚଲେ । "ରୁଦ୍ର ସୁଧାନିଧି" ବୋଲି ନାମ ଥୋଇଲେ । ଏମନ୍ତ ସେ କୁମରଙ୍କୁ ଦେହଭାବ କ୍ଷୁଧା ଆକର୍ଷିଲି ସନ୍ତୁ ବକ୍ଷ ପଦ୍ମ ପ୍ରକାଶି (୧), କେ କାଳର ସ୍ୱନେ ବେଦନ କଲି ଛନ୍ତି । ଆନ ପୋଏ ଅଜ୍ଞାନରେ କଣ କୁହୁ କୁହୁ ବୋଲି ବେଦନ କରନ୍ତି । ଏ କୁମର (୨) କେମନ୍ତ କେମନ୍ତ କଣ ବେଦନ କରୁଅଛୁ । ଶିବୋଽହଂ । ଶିବୋଽହମ୍ । ଶିବୋଽହମ୍ । ସର୍ବଗତୋଽହଂ । ଶାନ୍ତୋଽହଂ (୩) । ଶୁଦ୍ଧୋଽହଂ । ନିର୍ବିରୋଽହଂ । ପୂର୍ଣୋଽହଂ । କେବଳୋଽହମ୍ । ସୂକ୍ଷ୍ମୋଽହଂ । ନିତ୍ୟୋଽହଂ । ନିବିଡୋଽହଂ । ଚିଦାନନ୍ଦୋଽହଂ (୪) । ପୁରୁଷୋଽହଂ । ସ୍ୱବ୍ରତନୋଽହଂ । ଚିନ୍ମୟୋଽହଂ ଆତ୍ମାଽହଂ । ଏବଂଭୂତ ପ୍ରକାରେଣ ବେଦନ କଲି ସନ୍ତୁ । ଜାଗ୍ରତ ସ୍ୱପ୍ନ ସୁଷୁପ୍ତି ମଯ୍ୟୀ (୫) ଅବସ୍ଥାଜନ୍ୟ ଆବୋରିଲି ଛନ୍ତି । ଆପଣାର ଜ୍ଞାନ ନ ପୂଣ ହୋଇବ ନାଶ । ବିଷ୍ଣୁ ମାୟା ବନ୍ଧନ ହେଉଅଛୁ ପ୍ରକାଶ । ମନ ବଚନ ଜ୍ଞାନ ଉଦେ ହେଉଥାଇ । ଦଣ୍ଡେ ହେଁ ଏ ବୁଦ୍ଧି ବିସ୍ମରଣ ନୋହୁ । ଏମନ୍ତ ବିଗ୍ଧ୍ୱଣ ସେ ବେଦନ ସମୟେ ଆତ୍ମା ଚିନ୍ତାକଲି ଛନ୍ତି । ଆନ ବାଳକ ପୁଏ ଅଜ୍ଞାନରେ ବୋଲନ୍ତି କୋଽହଂ, କୋଽହଂ, କୋଽହଂ । ଏ ଶିବଭାବ ଆବୋରି କାଢିଲି ଶିବୋଽହଂ, ଶିବୋଽହଂ, ଶିବୋଽହଂ । ଏମନ୍ତ ବେଦନ ସମୟେ ହେଁ ଶୁଣିଲେ ସନ୍ତୁ । ଆଶ୍ଚର୍ଯ୍ୟ ପାଇ ଅଶେଷକ ବୋଲି ଆକଳିଲେ ଛନ୍ତି । ଅଶେଷ ଶାନ୍ତିମାନ ଅନେକ କରାଇଲେ ।

ଏଥ ଉତ୍ତାରେ କୁମରଙ୍କୁ କ୍ଷୀରପାନ ଦେଲେ (୬) । କ୍ଷୀରପାନ କରାଇବା ବେଳେ ଜନନୀ ସ୍ତନକଳସେ ମୁଖ ଦେଲି ସନ୍ତୁ । ଭଗବତୀ ଶକ୍ତି ମହାମାୟା ବିଗୁଣିଲି ଛନ୍ତି । ଜନ୍ମ ହୋଇବା ବେଳେ ଏ ଅଜ୍ଞାନ ନୋହିଲି । ବେଦନ କରନ୍ତେ ହେଁ ଉପନିଷଦ (୭) ବୋଇଲି । ଏହଠାରେ ତ ବିଷ୍ଣୁ ମାୟା ନୋହିଲି । ଏହାର ଯେବେ ଜ୍ଞାନ ହୋଇବ (୮) । ଆଉ କାହିଁ ସଂସାର (୯) ଚେଷ୍ଟା କରିବ । ପରାଲବ୍ଧ (୧୦) ଏବେ କଣବନା ଭୋଗ । ପ୍ରାନ୍ତେ ଯିନା ଯାଇଁ ପାଇବ ଯୋଗ । ଅହଂକାର ବହି ବେଦନ କଲି ସନ୍ତୁ । ଗର୍ବ ନସହନ୍ତା ବୈଷ୍ଣବୀ ମାୟା ବଳାତ୍କାରେ ଆବୋରିଲି ଛନ୍ତି (୧୧) । କ୍ଷୀର ସଙ୍ଗତେ ମାୟା ପଶିଲି । କୁମର ଜିହ୍ୱାରେ ଲବଣ ମିଶିଲି । ପୁଣି ପୁଣି ସ୍ୱାଦୁପାଇ ସ୍ତନ ପାନ କଲକ ସନ୍ତୁ । ଅଜ୍ଞାନ ଜଡ଼ମାୟା (୧୨) ଜିହ୍ୱାଦ୍ୱାରେ ପଶିଲି ଛନ୍ତି । ତୁରୀୟା ଅବସ୍ଥାମାନଙ୍କୁ ସ୍ୱପ୍ନେ ଲାଗିଲି । ଯୋଗନିଦ୍ରା ଛାଡ଼ି ପ୍ରପଞ୍ଚେ ଭଶିଲି । ଚନ୍ଦ୍ର ଜ୍ୟୋତ୍ସ୍ନାକୁ ଯେମନ୍ତ ନୀଳମେଘ

---

(୧) 'ଖ' ବ୍ରହ୍ମପଦେ କରି ବିକାଶି (୨) 'ଖ' ରେ ଆନ ପୋଏ ଠାରୁ ଏ କୁମର ପର୍ଯ୍ୟନ୍ତ ନାହିଁ (୩) 'ଖ' ଶାନ୍ତୋଽହଂ (୪) 'ଖ' ଶାସ୍ତାନନ୍ଦୋଽହଂ (୫) 'କ' ମାୟା (୬) 'କ' କରାଇଲେ (୭) 'କ' ଉପଦେଶ (୮) 'କ' ଏହାର ଏବେହିଁ ଜ୍ଞାନଥିବ (୯) 'ଖ' ସଂସାରେ (୧୦) 'କ' ପ୍ରାଲବ୍ଧ (୧୧) 'କ' ରେ ବଳତକରେ ଆକର୍ଷିଲି ଛନ୍ତି (୧୨) 'ଖ' ରେ ଅଜ୍ଞାନମୟ ।

Digitized by srujanika@gmail.com

ଆବୋରଇ ସେହି ମଠ କଣ ତାହାର ପୂର୍ବଜ୍ଞାନ ହରିଲା । ଅସ୍ୱପ୍ନ, ଅନନ୍ତ, ଅଜଡ଼ ମହାସୁଖ ହୋଇଲା ଯେଉଁ ମତ । ତାହା ମଳିନ, ବିଭ୍ରମ ମାୟାଭସ୍ମ, ତନ୍ଦ୍ରାକଲ ଅଜ୍ଞାନ ବାଳକର ସଞ୍ଜାତ । ଅତଏବ ଆହାର ଦ୍ୱାରେ ମାୟା ଅଛି (୧) । ଏବଂଭୂତ ପ୍ରକାରେ କୁମର ଅଜ୍ଞାନ ସ୍ୱବ ପାଇଲା । ଚନ୍ଦ୍ରକଳା ପ୍ରାୟେ ଦିନେ ଦିନେ ବର୍ଦ୍ଧମାନ ହୋଇ ଶୋହିଲା । ଦିବସକୁ ଦିବସ ଗୁରୁଜନ (୨) ମାନଙ୍କୁ ମୋହିଲା ପଦ୍ମବନରେ ଯେମନ୍ତ ରାଜହଂସ ଶୋହିଲା । ପରମ ଅଭ୍ୟାସରେ କଣ ପାଞ୍ଚବର୍ଷ ହୋଇଲା (୩) । ଦେହ ଜାମ୍ବୂନଦ ଯେମନ୍ତ ପଞ୍ଚଦାହ କରି ରସାଣିଲା ପ୍ରାୟେକ ଦିଶିଲା । ପୂର୍ଣ୍ଣ ଅକଳଙ୍କ ଚନ୍ଦ୍ରମଣ୍ଡଳ ପ୍ରାୟେକ ମୁଖ ପଦ୍ମବିକାଶିଲା । ତିଳକୁସୁମ ପ୍ରାୟେକ ଦୀର୍ଘ ହୋଇ ନାସିକା ପ୍ରକାଶ ହୋଇଲା । ତରୁଣେନ୍ଦୁର ପ୍ରାୟେ କପୋଳ ଶୋହିଲା (୪) । କମଳ ଉପରେ କି ଭ୍ରମର ପ୍ରାୟେକ ଭ୍ରୂଲତା (୫) ଶୋଭା ପାଇଲା । କୁଣ୍ଡଳ ଦୁଇ ଗୁରୁଶୁକ ପ୍ରାୟେକ ଗଣ୍ଡସ୍ଥଳେ ମିଶିଲା । ବନ୍ଧୁକ କୁସୁମ ପ୍ରାୟେକ ଅଧର କାନ୍ତ । ନୀଳ ଅଞ୍ଜନକୁ ଦୂଷଣ କରୁଅଛି କେଶର ଭ୍ରାନ୍ତ । ହେଳାଲୋଳ ଚକିତ ଦୃଷ୍ଟି ଦିଶୁଅଛି ଶୋଭନ (୬) । ତରୁଣୀମାନଙ୍କ କି ସେ ପ୍ରତ୍ୟକ୍ଷେ ମଦନ । ଶିଶୁ ପଦ୍ମ ପ୍ରାୟେକ ଚକ୍ଷୁ ଦୁଇର ଶୋଭା । ଶିରୀଷ ପୁଷ୍ପ ପ୍ରାୟେକ କୋମଳକାନ୍ତ ଆଭା । କମ୍ବୁର ପ୍ରାୟେକ କଣ୍ଠର ଶୋଭନ । ଦୁନ୍ଦୁଭିର ପ୍ରାୟେକ ବଚନ ଗମ୍ଭୀର ସୁସମ (୭) । ବଳିତ ବକ୍ଷସ୍ଥଳ ସମ୍ବୃତ (୮) ଆଜାନୁ ଭୁଜଦଣ୍ଡ । ଲୀଳାଗତି (୯) ଜାଣିକ ଉନ୍ନତ ବାଳ ଷଣ୍ଢ । ଶିଶୁ ସିଂହର ପ୍ରାୟେକ ବିକ୍ରମ ଦିଶଇ । ପୂର୍ଣ୍ଣ କରଣର କାନ୍ତ ଶରୀରେ ମିଶଇ । ଜାତି ପାଖୁଡ଼ା ପ୍ରାୟେକ ନଖର କାନ୍ତ । ମତ୍ତ ଗଜେନ୍ଦ୍ର ପ୍ରାୟେକ ଗୁଳିବାର ଭ୍ରାନ୍ତ (୧୦) । ଆରକ୍ତ ପଦ୍ମ (୧୧) ପ୍ରାୟେକ ଚରଣର ତଳୀ । ଲକ୍ଷଣବନ୍ତ ହୋଇଅଛି ମୀନପଦ୍ମ ଅଙ୍କୁଶ ମଣ୍ଡଳ । ଯୋଗଭ୍ରଷ୍ଟେ ଜନ୍ମ ରୁଦ୍ର ଅଂଶ ମୂର୍ତ୍ତି । ଭିନ୍ନେ ଅଛି ଏହାର ବୈଷ୍ଣବୀ ଶକ୍ତି । ତେଣୁକରି ସମସ୍ତ ଲକ୍ଷଣ ମାନନ୍ତରେ ହୋଇବ ଆସମୁଦ୍ରାନ୍ତ ପୃଥ୍ୱୀରେ ଚକ୍ରବର୍ତ୍ତୀ । ସେ କୁମର ଲକ୍ଷଣଅନ୍ତ ବିସ୍ମିତ ଅନଙ୍ଗ ପଦ୍ମାକର ରାଜା ଉତ୍ସବ କରି କରାଇଲା ବିନାୟକ ସରସ୍ୱତୀଙ୍କ ପୂଜା । ଉଦୟନ ଆଚାର୍ଯ୍ୟ ବୋଲି ପଣ୍ଡିତେକ ଅଛି । ବ୍ରହ୍ମାଙ୍କୁ ପ୍ରସନ୍ନ କରାଇ ସେ ଅନେକ ବିଦ୍ୟା ପାଇଅଛି । ତାହା ଗୋଚରେ କୁମରକୁ ସମର୍ପିଲା । ବିଦ୍ୟା ପଢ଼ାଅ ବୋଲି ଆଜ୍ଞା ଦେଲା । ସେ କୁମର ଅକ୍ଷର ପାଠନ୍ତ ପଢ଼ି ଅଙ୍କ ଖଡ଼ିସାରି ସମସ୍ତ ବ୍ୟାକରଣ ଅଷ୍ଟାଦଶାଙ୍ଗେ ପଢ଼ିଲା । କେବଣ କେବଣ ବ୍ୟାକରଣ ମହାଭାଷ୍ୟ ବୋଲି ଯେଉଁ ବ୍ୟାକରଣ ଥିଲା । ପୂର୍ବେ ସେ ଶେଷନାଗର ବଦନରୁ (୧୨) ବାହାର ହୋଇଲା । ପାଣିନି ବୋଲି ଯେଉଁ ବ୍ୟାକରଣ ନାମ ଈଶ୍ୱର ଡମ୍ବରୁରୁ ସେ ହୋଇଅଛି ବାହାର । ଶ୍ରୁତିସାଗର ବୋଲି ଯେବଣ ସେ ବ୍ୟାକରଣ ।

---

(୧) 'ଖ' ରେ 'ଅତଏବ ଠାରୁ ଅଛି' ପର୍ଯ୍ୟନ୍ତ ନାହିଁ (୨) 'କ' ଗୁରୁଜନମାନଙ୍କୁ (୩) 'ଖ' ପରମ ଅଭ୍ୟାସ ଠାରୁ ହୋଇଲା ପର୍ଯ୍ୟନ୍ତ ନାହିଁ (୪) 'କ' ରେ ତିଳଠାରୁ ଶୋହିଲା ପର୍ଯ୍ୟନ୍ତ ନାହିଁ (୫) 'କ' ବଧୂକ (୬) 'କ' ଶୋଭବନ (୭) 'କ' ସୁସ୍ୱର ବଚନ (୮) 'କ' ସୁବଳିତ ବକ୍ଷସ୍ଥଳ (୯) 'କ' କାନ୍ତକ୍ୟୋତି (୧୦) 'କ' ରେ ମନ୍ଦଗତି (୧୧) 'କ' ରେ ପୁଷ୍ପ (୧୨) 'କ' ବକ୍ତ୍ର

Digitized by srujanika@gmail.com

ଇନ୍ଦ୍ରଦେବତା ନିମିତ୍ତେ ବୃହସ୍ପତି କଲେ ନିର୍ମାଣ (୧) । ସାରସ୍ୱତ ବୋଲି ଯେଉଁ ବ୍ୟାକରଣ ହେଲା । ତହିଁର ସୂତ୍ର ପୂର୍ବେ ସରସ୍ୱତୀ କହିଲା । ଐନ୍ଦ୍ର ବୋଲି ଯେବଣ ବ୍ୟାକରଣ । ଇନ୍ଦ୍ରଦେବତା ନିମିତ୍ତେ ବୃହସ୍ପତି କଲା ନିର୍ମାଣ (୨) । ଚାନ୍ଦ୍ରମସ ନାମ୍ନେ ଯେବଣ ବ୍ୟାକରଣ ହୋଇଲା, ଚନ୍ଦ୍ରଦେବତା ତାହା ପୂର୍ବେ ପଢ଼ିଥିଲା । ମହେଶ୍ୱର ସମ୍ବନ୍ଧେ ମାହେଶ୍ୱର ହୋଇଲା । ପୂର୍ବେ ବିଧାତା ଅଛୁ ହିଁ ଭାଗିଲା । ଶକଟ,ସ୍ୱନ, ଔଣାଦିକ, ସର୍ବଦାର୍ଶିକ, କଳାପ, ବର୍ଦ୍ଧମାନ ଆଦିକରି ବ୍ୟାକରଣମାନଙ୍କର ନାମ । ଉପବ୍ୟାକରଣମାନେ ଅଛନ୍ତି ଅନୁପାମ । ରତ୍ନକର, ଜୁମର (୩) କୌମୁଦୀ ଅଖ୍ୟାତ ଚନ୍ଦ୍ରାଦି (୪) ସମସ୍ତ ବ୍ୟାକରଣ ପଢ଼ିଲା ।

, ତ କେବଣ କେବଣ ବ୍ୟାକରଣ କେବଣ ପ୍ରକାରେ ପଢ଼ିଲା । ପ୍ରଥମେ ବର୍ଣ୍ଣ ସ୍ଥାପନ କରି (୫) । ହଣ୍ଟିବସର (୬) ହ୍ରସ୍ୱ ଦୀର୍ଘ ଜାଣି, ପାଦଦ୍ୱୟ ସନ୍ଧି (୭) ପଦମାଣି, ଆଗମ ଆଦେଶ ଉପଧା ବିସ୍ତର । ଲିଙ୍ଗ, ବିଭକ୍ତି, ନିପାତ ପ୍ରକୃତି, ଶବ୍ଦଲିଙ୍ଗ ଜସ୍, ଷଟ୍‌କାରକ ପଦ, ସମାସ, ଧାତୁରୂପାଦି କରି ଅଷ୍ଟାଦଶାଂଶେ ବ୍ୟାକରଣ ପଢ଼ିଲା । ତଦନନ୍ତରେ ଶାସ୍ତ୍ରମାନନ୍ତ ପଢ଼ିଲା । କେବଣ କେବଣ ଶାସ୍ତ୍ରନ୍ତ ପଢ଼ିଲା । ଧର୍ମଶାସ୍ତ୍ର (୮) ମୀମାଂସା, ପାତଞ୍ଜଳ, ବୈଶେଷିକ, କୌମାରକ (୯) ପଞ୍ଚରାତ୍ର, ତର୍କ, ଆଗମାଦିକରି ସମସ୍ତ ଶାସ୍ତ୍ର ପଢ଼ିଲା । ଋଗବେଦ, ଉପନିଷଦ ଆଦିକରି ସାଙ୍ଗୋପାଙ୍ଗ ପଢ଼ିଲା । ମନୁ, ଯାଜ୍ଞବଲ୍‌କ୍ୟ (୧୦) ଶଙ୍ଖ ବୃହସ୍ପତି ଲିଖିତ ଇତ୍ୟାଦି କରି ସ୍ମୃତିମାନନ୍ତ ପଢ଼ିଲା । ଉପଶାସ୍ତ୍ରମାନଙ୍କେ ପୂର୍ବେ ଦେବତାମାନଙ୍କୁ ଅସୁରମାନେ (୧୧) ବେଦବାଦେ ଜିଣିଲେ । ଏମନ୍ତ ଜାଣି ସେ ବିଶ୍ୱବ୍ୟାପୀ ନାରାୟଣ, ବୃହସ୍ପତି ହସ୍ତେ ଅସୁରମାନଙ୍କର ନିମିତ୍ତେ ପ୍ରତ୍ୟେକ୍ଷେ ରତ୍ନମାନ ଫଳାଫଳ କରାଇଲେ । ବୃହସ୍ପତି ସୁବାଦେ ଜିଣିଲେ (୧୨) । ଶୁକ୍ର ରୂପ ଧରି ଅସୁରମାନନ୍ତ ପଢ଼ାଇଲେ । ବୌଦ୍ଧ ଶାସ୍ତ୍ରମାନଙ୍କି ବୌଦ୍ଧାନୁଶାସନେ (୧୩) । ବୌଦ୍ଧ, କାପାଳିକ, କ୍ଷପଣକ, ଋର୍ବାକାଦି ମତ। ଏମାନଙ୍କି ଜାଣିଲା । ତଦନନ୍ତରେ ଅଷ୍ଟାଦଶ ପୁରାଣ ପଢ଼ିଲା । କେବଣ କେବଣ ପୁରାଣ । ମତ୍ସ୍ୟପୁରାଣ, କୂର୍ମପୁରାଣ, ବରାହପୁରାଣ, ବାମନ ପୁରାଣ, ଭବିଷ୍ୟପୁରାଣ, ମାର୍କଣ୍ଡେୟ ପୁରାଣ, ବିଷ୍ଣୁପୁରାଣ, ନୃସିଂହପୁରାଣ, ଅଗ୍ନିପୁରାଣ, ପଦ୍ମପୁରାଣ, ଇତିହାସ ପୁରାଣ, ବ୍ରହ୍ମାଣ୍ଡପୁରାଣ, ଦେବୀପୁରାଣ, ଶିବପୁରାଣ,ଭାଗବତାଦି କରି ସମସ୍ତ ପୁରାଣ ଉପପୁରାଣମାନନ୍ତ ପଢ଼ିଲା । ତଦନନ୍ତରେ ଜ୍ୟୋତିଷ (୧୪) ଶାସ୍ତ୍ର ପଢ଼ିଲା । କେବଣ କେବଣ ପ୍ରକାର । ବାର, ତିଥି, ନକ୍ଷତ୍ର, ଚନ୍ଦ୍ର, ଯୋଗ, କରଣ, ଗ୍ରହଯୋଗ ଲଗ୍ନଜାତକ, ଯାତ୍ରା ପ୍ରଶ୍ନ, ଖଣ୍ଡଚକ୍ର, ଆୟୁଷ ନିର୍ଣ୍ଣୟ, ବୈଲକ୍ଷା ଧାରଣ, ସମୁଚୟ ସହିତ କରି ସମସ୍ତ ଜ୍ୟୋତିଷଶାସ୍ତ୍ର ପଢ଼ିଲ । ତଦନନ୍ତରେ କାବ୍ୟ,

(୧) 'କ' ବାସୁଦେବର ନିଶ୍ୱାସ ସେ ହୋଇଅଛୁ ନିର୍ମାଣ (୨)· ସାରସ୍ୱତ ଠାରୁ ନିର୍ମାଣ ପର୍ଯ୍ୟନ୍ତ 'ଗ' ରେ ନାହିଁ (୩) 'ଖ' କୁମର (୪) 'ଖ' ଆଦ୍ୟାସ୍ୱିକ । (୫) 'କ' ସ୍ଥାପନ (୬) 'ଖ' ବିମର (୭) ପଦପଦାନ୍ତ ସନ୍ଧିଯା (୮) 'ଖ' ଧର୍ମଶାସ୍ତ୍ର (୯) 'ଖ' ରେ କୌମାରୁଣ (୧୦) ଯାଜ୍ଞବଲକ୍ୟ ଅଙ୍କିତାତ୍ରପ (୧୧) 'ଖ' ରେ ଅସୁରେ (୧୨) 'କ' ରେ ନାହିଁ (୧୩) 'ଖ' ବୋଧନୁଶାସନେ (୧୪) 'ଖ' ରେ ଜହନ୍ତିଷ

Digitized by srujanika@gmail.com

ମହାକାବ୍ୟ, ଉପକାବ୍ୟ (୧) କାଦମ୍ବରୀ, ନୈଷଧ, ରାମଚରିତ, ଭାରତ, ଯୋଗାର୍ଣ୍ଣବ—ଗୀତା, ବଶିଷ୍ଠ ରାମାୟଣାଦି ସମସ୍ତ ପଢ଼ିଲା ।

ତ କେବଣ କେବଣ ଗୀତା ପଢ଼ିଲା । ଭଗବଦ୍‌ଗୀତା, ଭାରତଗୀତା, ପାଣ୍ଡବଗୀତା, ଈଶ୍ୱରଗୀତା, ଯମଗୀତା, ଉଦ୍ଧବଗୀତା, ଅବଧୂତ ଗୀତା, ଗଙ୍ଗାଗୀତା, ଯାଜ୍ଞବଲ୍‌କ୍ୟ ଗୀତା, ପାବର୍ତ୍ତୀ ଗୀତା, ମୈତ୍ରେୟୀ ଗୀତା, ମଦାଳସା ଗୀତା (୨) କପୋତ ଗୀତା, ଜନକ ଗୀତା, ଭବିଷ୍ୟ ଗୀତା, ଶିବ ଗୀତା, ଜଡ଼ ଗୀତା, ଆନନ୍ଦ ଗୀତା, ଶୁକ ଗୀତା, ପଙ୍କଜ ଗୀତା, ଭିକ୍ଷୁ ଗୀତା, ଘୃଷ୍ଟ ଗୀତା, ବ୍ରହ୍ମଗୀତା ଇତ୍ୟାଦି କରି ସମସ୍ତ ଗୀତାମାନଙ୍କୁ ପଢ଼ିଲା । ତଦନନ୍ତରେ ଆଗମ ପଟଳ, ଯାମଳ ତନ୍ତ୍ର, ରସବନ୍ଧ କଳ୍ପ ସାଧନ, ମୂଳ, ମଣିମନ୍ତ୍ର ମହୌଷଧି, ଆଦିକରି ସମସ୍ତ ଆଗମ ଶାସ୍ତ୍ରମାନଙ୍କୁ ପଢ଼ିଲା । ତଦନନ୍ତରେ ସମସ୍ତ ବିଷୟାନ୍ତରେ ଅଳଙ୍କାରମାନ ପଢ଼ିଲା । (୩) ତଦନନ୍ତରେ ନାଟକ ଉପନାଟକ ଅଭିନୟାଦି କରି ଭରତ, ପିଙ୍ଗଳଛନ୍ଦ, ଦେଶାନ୍ତର, ସୂତାନ୍ତର ଭାଷା, ଅଶ୍ୱଲକ୍ଷଣ ପରୀକ୍ଷା, ଗଜଲକ୍ଷଣ, ନର ଚିକିତ୍ସା,(୪) ସାମୁଦ୍ରିକ, ରଥ କଢ଼ାଣ, ଧନୁ (୫) ଶିଳ୍ପ ଚଉଷଠି କଳା ଉପବିଦ୍ୟାମାନଙ୍କୁ ଶିଖିଲା । ଏମନ୍ତ ସେ କୁମର ଶାସ୍ତ୍ରେ ବକତା ବିଦ୍ୟାରେ ଶକ୍ତା (୬), ଗୁଣାନୁରକ୍ତା, ବାସୁଦେବ ଭକ୍ତା, ସତ୍ୟେସକ୍ତା, ଦରିଦ୍ରେ (୭) ଦାତା, ଆହାରେ ଭୋକ୍ତା, ଏମନ୍ତ ସ୍ୱଅଙ୍ଗେ ଦଶବର୍ଷ ସମ୍ପୂର୍ଣ୍ଣ ହୋଇଲା । ରାଜା ଗୁଣାକର ଆଚାର୍ଯ୍ୟଙ୍କୁ ହକାରି ସମସ୍ତ ବିଦ୍ୟା ଧନୁର୍ବେଦ ସହିତେ ଆରମ୍ଭ କରାଇଲା । ସେ ଆଚାର୍ଯ୍ୟଙ୍କ ଈଶ୍ୱର ପ୍ରସନ୍ନ ହୋଇ ସମସ୍ତ ବିଦ୍ୟାମାନଙ୍କୁ ଦେଇ ଅଛନ୍ତି । ସେ (୮) ଜଗନ୍ନାଥଙ୍କର ବୈଷ୍ଣବମାନଙ୍କର ପାଦାରବିନ୍ଦ ପ୍ରସାଦୁଁ କରି ତାହା ନାରାୟଣ ଦାସ ପାଇଲା ବିଶେଷ (୯) । ସେ ଚଉଷଷ୍ଠୀ X X ଅଶେଷ ବିଦ୍ୟା ପଢ଼ାଇଲା ।

ତ କେବଣ କେବଣ ଅଂଶେ । ଆଦାନ, ସନ୍ଧାନ, ଆକର୍ଷଣ, ଆମନ୍ତ୍ରନ, ଉଦ୍ଧାର, ମଣ୍ଡଳିତ, ଦୃଷ୍ଟି ସ୍ଥିର, ମୁଷ୍ଟି ଦୃଢ଼, ଭେଦନ, ଜୃମ୍ଭଣ, ସ୍ତମ୍ଭନ ବ୍ୟର୍ଥ ଆସ୍ଫୋଟନ, ଆଚ୍ଛାଦନ ଭେଦନ, ଆରମ୍ଭଣ, ଔଷଧ କରଣ, ଅସ୍ତ୍ର ପୂରଣ, ମନ୍ତ୍ର ଉପାସନ, ଯନ୍ତ୍ର ଲକ୍ଷଣ, ଛେଦନ (୧୦) ରକ୍ଷଣ, ବାମ ଦକ୍ଷିଣ, ଆରୋପଣ, ମୋକ୍ଷଣ, ଉଦ୍ଧରଣ ଚଳନ (୧୧) ଭ୍ରମଣ, ଧାରଣ, ଆକାଶ କ୍ଷେପଣ, ଖଡ଼୍‌ଗ ଫଳା ଗଦାଶକ୍ତି ଅସ୍ତ୍ରଶସ୍ତ୍ର ପ୍ରଭୃତ ଗୋଚର କରଣ, ମଲ୍ଲାଦି କରି ସମସ୍ତ ବିଦ୍ୟା ପାଇଲା । ଗୁରୁ ପ୍ରସନ୍ନ ହୋଇ ଅସ୍ତ୍ର ବିଦ୍ୟା କହିଲା । କେବଣ କେବଣ ବିଦ୍ୟା ପାଇଲା । ନାରାୟଣାସ୍ତ୍ର, ବଜ୍ରାସ୍ତ୍ର, ପାଶୁପତାସ୍ତ୍ର, ଆଶ୍ଚର୍ଯ୍ୟାସ୍ତ୍ର, ବ୍ରହ୍ମାସ୍ତ୍ର, ଚନ୍ଦ୍ରାସ୍ତ୍ର, ବାରୁଣାସ୍ତ୍ର, ମହାକାଳାସ୍ତ୍ର, ରୁଦ୍ରାସ୍ତ୍ର, ଅଗ୍ନିଅସ୍ତ୍ର, ମେଘାସ୍ତ୍ର, ପବନାସ୍ତ୍ର, ସୂର୍ଯ୍ୟାସ୍ତ୍ର, ମୋହନାସ୍ତ୍ର, ଇନ୍ଦ୍ରାସ୍ତ୍ର, ଗନ୍ଧର୍ବାସ୍ତ୍ର, କିନ୍ନରସ୍ତ୍ର, ପର୍ବତାସ୍ତ୍ର, ଜଳଶୋଷକ ଅସ୍ତ୍ର, ବାୟବ୍ୟାସ୍ତ୍ର ,

(୧) ଉପକାବ୍ୟ ଖୋଟକସ୍ୟା ମନୁ (୨) 'ଖ' ରେ ମଦାଳସ୍ୟ ଗୀତା 'କ' ରେ ଆନନ୍ଦ ଗୀତା (୩) 'କ' ରେ ନାହିଁ (୪) 'ଖ' ଚିକିତ୍ସା (୫) 'ଖ' ରେ ନାହିଁ (୬) 'ଖ' ରେ ନାହିଁ (୭) 'ଖ' ରେ ଦାରିଦ୍ରେ (୮) 'କ' ରେ ଶ୍ରୀ (୯) 'କ' ରେ ବିମର (୧୦) 'ଖ' ରେ ତୋପ (୧୧) 'ଖ' ରେ ଉଦ୍ଧଚଳଣ

Digitized by srujanika@gmail.com

କୁବେରାସ୍ତ୍ର, ଯାମ୍ୟାସ୍ତ୍ର, ଅମୋଘ ଶକ୍ତି, ନାଗପାଶ, ଜଳପାଶ ଇତ୍ୟାଦି କରି ସମସ୍ତ ଅସ୍ତ୍ର ପାଇଲା । ପୂର୍ବଅଙ୍ଗୁଁ କରି ଅପରାଜିତ ହୋଇଲା । ଏବଂଭୂତ ପ୍ରକାରେ ଦ୍ୱାଦଶ ବର୍ଷ ହୋଇଲା ଯହୁଁ । କିଶୋର ବୟସ ଆସି ପ୍ରବେଶ ହୋଇଲା ତହୁଁ । ରୋମାବଳୀମାନେ କୃଷ୍ଣବର୍ଣ୍ଣ ହସିଲେ । ବିକାର ଦଶାମାନ ମୁଖରେ ମିଶିଲେ । ସାଧନ ମୁଦ୍ରା ଆସି ଦେହରେ ରହିଲା (୧) । କାମଦେବର ଦେହ କି କାନ୍ତିଶରୀରେ ଶୋହିଲେ (୨) । ଦନ୍ତାବଳୀମାନେ ନୂତନ ହୋଇଲେ । ଚନ୍ଦ୍ର ଜ୍ୟୋତ୍ସ୍ନା ପ୍ରାୟେକ ଶୋଭା ପାଇଲେ । ଚକ୍ଷୁ (୩) ସିନ୍ଦୂର ଅଧିକ ଦିଶିଲା । ହେମନ୍ତ ପଦ୍ମପତ୍ର ଦୁଇରେ କି ମତ୍ତ ଭ୍ରମରଦ୍ୱୟ (୪) ବସିଲା । ଡ ଏବଂଭୂତ ପ୍ରକାରେ କୁମର ଶୋଭା ପାଇଲା ଯହୁଁ, ରାଜା ମନେ ମନେ ବିଚାରିଲେ ତହୁଁ । ବିବେକ ରତ୍ନାକର ମନ୍ତ୍ରୀକି ହକାରି, ଭଲ ବେଳ ବିଚାରି, ମଙ୍ଗଳ ପଚାରି, ଆଜ୍ଞା ଦେଲା । କୁମର ସଦୃଶେ (୫) କନ୍ୟା ଖୋଜ ବୋଇଲା । ସେ ମନ୍ତ୍ରୀ ଏମନ୍ତ (୬) ଆଜ୍ଞା ପାଇ ଧନ ପ୍ରଦକ୍ଷିଣ କରି ପାଣ୍ଡେ ପଞ୍ଜି ଶୋଇ ଉଠିକରି ଜରପତ୍ର ଯୋଡ଼ି ଜଣାଇଲା । ହେ ରାଜନ ! ଯେଉଁ କାର୍ଯ୍ୟ କଲେ ସେ ଯାଇ । ତହିଁର ତତ୍ପାନ ସମର୍ଥଙ୍କୁ ସେ ବାଟ ଗୁହିଁଥାଇ । ସେ ଗୃହରେ ଅଗ୍ନି ଲାଗିଲା ଉତ୍ତାରେ କୂପଖୋଳା ବସିଲା ପ୍ରାୟେ ଶୋଭା ପାଇ । ହେ ଦେବ ! କି ରାବର୍ତ୍ତିନ କରି ଏ ପୃଥ୍ୱୀରେ କନ୍ୟା ଖୋଜିଲିଣି । କୁମର ସଦୃଶେ ଗୁଣବନ୍ତି ହୋଇ କନ୍ୟା କାହିଁ ନ ପାଇଲି । ଏ ଜମ୍ବୁଦ୍ୱୀପ ଭିତରେ କନ୍ୟା ନାହିଁ । ଏହିକ୍ଷଣି ଦୂତମାନେ ମୋହର ହୋଇଲେ ପ୍ରବେଶ । ସାବଧାନ ହୋଇ ଶୁଣିମା ହେ ଦେବ ! ତାହାଙ୍କର ଉପଦେଶ । ଏମନ୍ତ ସମୟେ ରାଜା ଶରଦ ମେଘର ସମୂହ ପ୍ରାୟେକ ଦିବ୍ୟ କଟକରେ ଚନ୍ଦ୍ର ପ୍ରାୟେକ ହୋଇ ବିଜେ କରିଅଛୁ । ଦିବ୍ୟ ପଲଙ୍କ ଉପରେ ଅମୃତଫେନ ସମ (୭) ଶଯ୍ୟାଏ ନିର୍ମାଣ କଲା ଅଛୁ । ତହିଁରେ ବିଜେ କରେ କରିଅଛ (୮) । ରାଜ ପାରୁଶରେ ସମସ୍ତ ଅମାତ୍ୟମାନେ ନକ୍ଷତ୍ର-ସମୂହର ପ୍ରାୟେକ ହୋଇ ଅଛନ୍ତି । ସର୍ବାଳଙ୍କାରେ ମଣ୍ଡିତ ହୋଇ (୯) ସହସ୍ରେ କନ୍ଦର୍ପିମୀ ବିଳାସିନୀଗଣ ଚନ୍ଦ୍ର ଜ୍ୟୋତ୍ସ୍ନା ପ୍ରାୟେକ ଉଜ୍ଜ୍ୱଳ ଚାମରମାନନ୍ତ ଧରନ୍ତେ କଙ୍କଣ ବଳୟମାନଙ୍କର ଝାଙ୍କାର (୧୦) ଶବ୍ଦ ଶୁଭୁଅଛି । ଏମନ୍ତ ହୋଇ ରାଜା ଅବଧାନେ କରି ବିଜେକରି ଅଛନ୍ତି । ଏମନ୍ତ ସମୟରେ ମନ୍ତ୍ରୀ ରାଜଦରବ ରାଜ ଦୂତଙ୍କୁ ନେଇ ଦର୍ଶନ କରାଇଲା । ପ୍ରଥମେ ପୂର୍ବ ଦିଗର ଦୂତର ନାମ ସର୍ବଜାଣ ହୋଇ । ସମସ୍ତ ବିଦ୍ୟା ଜାଣଇ । ଅଗମ୍ୟ ଗମ୍ୟକୁ ଯାଇପାରଇ (୧୧) । ଅଦୃଶ୍ୟ ଦୃଶ୍ୟ ହୋଇ ପାରଇ । ମନ୍ତ୍ର ରାଜା ଗଣପତିଙ୍କି ଉପାସନା କରିଅଛୁ । ଲେପ ରସାୟନ ପାଦୁକା ପାଇଅଛୁ । ଜ୍ୟୋତିଷ ଭବିଷ୍ୟ ଶାସ୍ତ୍ରେକର ନିପୁଣ ଅଟଇ । ଏବଂଭୂତ ସର୍ବ ଜାଣଇ ସେ ଦୂତ କହୁଅଛୁ, ନିହ୍ଲାଳ କରି ପାଏ

---

(୧) 'କ' ସାଧନ ମୁଦ୍ରାମାନେ ଫୁଟି ବିଳସିଲେ । (୨) 'କ' ରେ ମୋହିଲେ । (୩) 'ଖ' ଚକ୍ଷୁରୁ (୪) 'କ' ରେ ଦୁଇ (୫) 'କ' ରେ ସମାନେ (୬) 'ଖ' ରେ ଏମନ୍ତ ସେ ମନ୍ତ୍ରୀ (୭) 'ଖ' ରେ ଅମୃତଶୀଳାରେ (୮) 'ଖ' ରେ ସର୍ବାଳଙ୍କାର ହୋଇ (୯) 'ଖ'ରେ ନାହିଁ (୧୦) 'ଖ' ରେ ରୁଣଝୁଣ (୧୧) 'ଖ' ରେ ଜାଣଇ ।

Digitized by srujanika@gmail.com

ପଞ୍ଚଶୋଇ, ମଥାରେ ହାତ ଦେଇ, ରଜା ଶ୍ରୀମୁଖକୁ ଚାହିଁ, ନଥର (୧) ହୋଇ, ସରସ୍ୱତୀଙ୍କ ସୁମରି, ପୂଜା କଥା ବର୍ଣ୍ଣନ (୨) କରୁଅଛୁ । ହେ ଦେବ ! ଏ ବିବେକ ରତ୍ନାକର ମନ୍ତ୍ରୀର ଆଜ୍ଞା ପ ଇଗଲି । ସମସ୍ତ ରଜାମାନଙ୍କର ନଗରରେ ପ୍ରବେଶ ହୋଇଲି । କୁମର ସଦୃଶେ କନ୍ୟା କାହିଁ ନ ପାଇଲି । ଭଟ, ଖେଟ, ମାଳବ, ସଉରାଷ୍ଟ୍ର, ମହାରାଷ୍ଟ୍ର, ମଧ୍ୟଦେଶ, ମଇଳଣ (୩) ମଣ୍ଡଳ, ଶ୍ୱେତ ପର୍ବତ, ଝାଡ଼ମଣ୍ଡଳ, ଇନ୍ଦ୍ରପ୍ରସ୍ଥ, ସମପ୍ରସ୍ଥ, ହସ୍ତିନା, ବାରୁଣ, ଜୟନ୍ତୀ ଅବନ୍ତୀ, ଅଯୋଧ୍ୟା, ମଥୁରା, ଗୟା, କାଶୀ, କାଞ୍ଚୀ, ମେଖଳା (୪) ମାରୁମାରୁତ, ଉଷ୍ଣଦେଶ (୫) ଅନ୍ତର୍ବେଦୀ, ପାଦୁକା, ଶୈବ ମଣ୍ଡଳ ଏତେଦୂର ପର୍ଯ୍ୟନ୍ତେ ବିଜୟିଗଲି (୬) । ପୂର୍ବ ସମୁଦ୍ର କୂଳେ ହୋଇଲି (୭) । ଏତେ ଦେଶର ମଧ୍ୟେ ଚାରିକନ୍ୟା ଦେଖିଲି । କାଶୀ ରଜାନଗ୍ରେ, ମଣିବନ୍ତ ପର୍ବତ ଅଗ୍ରେ, ଜମ୍ବୁବତୀ ନଦୀତୀରେ, ଅତୁଳ ମଣ୍ଡଳ କଟକରେ, କାଶୀରଜା ଦୁହିତା ଅନଙ୍ଗାବଳୀ ନାମେ ଏକ କନ୍ୟାଏ ଦେଖିଲି । ସେ କନ୍ୟା ସର୍ବଗୁଣେ ସୁଲକ୍ଷଣୀ । ଶୁଦ୍ଧ ସୁବର୍ଣ୍ଣବର୍ଣ୍ଣିନୀ । ତରଳ ତରଙ୍ଗ ଚଞ୍ଚଳ କୁରଙ୍ଗ ନୟନୀ । ଉନ୍ନତ କ୍ରୀଡ଼ାବନ୍ତ ହର୍ଷ ଚକ୍ରବାକସ୍ତନୀ । ଉନ୍ନତ ଗର୍ବବନ୍ତ ପୀୟୂଷ ଉତ୍କଣ୍ଠିତ ତରୁଣ ମତ୍ତ ଗଜେନ୍ଦ୍ରଗମନୀ । ଅତି ଗର୍ବିତ ପୁରୁଷ ଅଳଟ କୋକିଳବଚନୀ । ବିଶ୍ୱକର୍ମା କୁନ୍ଦ ନିର୍ମିତ ଡମ୍ବରୁ ସମ ମଧ୍ୟ ସଙ୍କୀର୍ଣ୍ଣିନୀ । ସରଜ (୮) ବିପୁଳ ସ୍ଥଳକ ଚନ୍ଦ୍ରମଣିହାର କୋମଳ ବଳିତ ଜଘନୀ । ପୃଥୁଳ ପୀବର ପୀୟୂଷ କୁମ୍ଭସମ କନ୍ଦର୍ପ ସିଂହାସନ ସମ ନିତମ୍ବିନୀ । ଅମୃତ ଘନ ଉପଳ ଘନ ଲାବଣ୍ୟ ଚନ୍ଦ୍ର ଜ୍ୟୋତ୍ସ୍ନାସମ କାନ୍ତ ଦଶନୀ । ନବଘନ ଉପୂନ ଘନ କନକ କାନ୍ତ କମନୀୟ ତଡ଼ିତ ବର୍ଣ୍ଣ କାନ୍ତିନୀ । ସର୍ବ ସୁଲକ୍ଷଣୀ । ସର୍ବଗୁଣେ ସମ୍ପନ୍ନ । କେଶର ଅଗ୍ରଭାଗ ପିଙ୍ଗଳ ଭାବୁଁ କରି ହୋଇଲା ଅବଗୁଣ (୯) । ହେ ଦେବ ! ଆଉ କନ୍ୟାଏ ଦେଖିଲି । ପୁଣ ପୁଣ କରି ନିରେଖି ପେଷିଲି (୧୦) । ମନ୍ଦାକିନୀ କୂଳେ, ଭଦ୍ରାସନ ଦେଶେ, ବୀର ଭଦ୍ର ବୋଲି ଏକ ରଜାଏ ଅଛଇ (୧୧) । ତାହାର ଦୁହିତାଏ ହୋଇ । ତାହାର ନାମ ଲୀଳାବତୀ । ସେ କନ୍ୟାର ମୁଖ ଶରଦ ଚନ୍ଦ୍ରମା ମଣ୍ଡଳକୁ ଗଞ୍ଜୁଅଛୁ । କବରୀ ଭାର କି ଦନ୍ତ ଦ୍ୟୁତିର ଉପରେ ଅନ୍ଧକାରକୁ ଖଞ୍ଜୁଅଛୁ । ଚକ୍ଷୁ ଚଞ୍ଚଳ ତରଙ୍ଗ ମନ୍ମଥ ମର୍ଶ (୧୨) । ଭ୍ରୂଲତା ଶୋଭା ପାଉ ଅଛୁ କି ବିକଚ ପଦ୍ମେ ମଧୁକର ଶ୍ରେଣୀ ବାନ୍ଧୁ (୧୩) ମୃଣାଳାକୃତି । ପଦ୍ମିନୀ ଜାତି । ମନ୍ମଥ ବାଣୀ ବାଦନୀ । ଚନ୍ଦ୍ର ଲେଖନୀ । ପୃଥୁ ନିତମ୍ବିନୀ । ସମସ୍ତ ଗୁଣେ ଅଛଇ । କେବଳ ସ-ଦନ୍ତୁର (୧୪) ଭାବୁକରି ସେ କନ୍ୟା କୁମରେ ଅଯୋଗ୍ୟ ହୋଇଲା । ଆଉ କନ୍ୟାଏ ଦେଖିଲେ ପୂର୍ବ ସମୁଦ୍ର କୂଳେ, ନଟିକାଳ ବନରେ (୧୫) ମଦନ ବ୍ରହ୍ମରଜାର ଦେଶରେ, ଚନ୍ଦ୍ର ତରଙ୍ଗିଣୀ

---

(୧) 'ଖ' ରେ ନସ୍ଥିର (୨) 'ଖ' ରେ ବର୍ଣ୍ଣନ (୩) 'କ' ରେ ମଲ୍ଲଳ (୪) 'କ' ରେ ମେଖଳା ମଣ୍ଡଳ (୫) 'କ' ରେ ଅଷ୍ଟଦେଶ (୬) 'ଖ' ରେ ବିଜୁଜୟି ଗଲେ (୭) 'କ' ରେ ଶୋଇଲି 'ଖ' ରେ ହୋଇଲେ (୮) 'ଖ' ରେ ସର୍ବ (୯) 'ଖ' ରେ ନିର୍ଗୁଣ । (୧୦) 'ଖ'ରେ ନିରେଖିଲି (୧୧) 'ଖ'ରେ ଅଛୁ (୧୨) 'ଖ'ରେ ବାଣଜାଣି (୧୩) କ ବାକ୍ୟ ଅକଣ୍ଠକ (୧୪) 'ଖ' ରେ ଷଡ଼ଜନ୍ତୁର (୧୫) 'କ' ନଟିକେଳ ଗ୍ରାମରେ

Digitized by srujanika@gmail.com

ନଦୀ ପାରୁଶରେ (୧) । ହିରଣ୍ୟଗର୍ଭ କଟକରେ ଭୁପଦେଶ୍ୱର (୨) ଲିଙ୍ଗ ନିକଟରେ ଚନ୍ଦ୍ରକେତୁ ରାଜାର ଦୁହିତା ଅବଳା । ତାହା ନାମ ଅଟଇ ମନ୍ମଥ କଳା । ସେ କନ୍ୟାର ମୁଖ ଶୋଭା । କି ବିକଚ କମଳ ପୁଷ୍ପର ଆଭା । ଜମ୍ବୁ ନଦ ସୁବର୍ଣ୍ଣ ଉପାଣିଲାର ପ୍ରାପ୍ତେକ ଶରୀର କାନ୍ତି ଶୋଭା । ଭ୍ରୂ ଲତା ଦିଶଇକି (୩) ମନ୍ମଥ ଧନୁ । ବ୍ରହ୍ମା ବସି ଗଢ଼ିଲା ତାକୁ କେତେ ମନୁ (୪) । ସେ କନ୍ୟା ସକଳ ଗୁଣେ ଶୋଭିଲି । ମୁଖ୍ୟ ... ଛିଳ ଲକ୍ଷଣ ନଥିବାରୁ କଣ କୁମରକୁ ଅଯୋଗ୍ୟ ହୋଇଲା ।

ଏ ଉତ୍ତରେ ଉତ୍ତର ଦିଗର ଦୂତ ଆସି ରାଜାକୁ ଦର୍ଶନ କଲା । ସେ କହୁଅଛି । ହେ ଦେବ ! (୫) ମୁଁ ଉତ୍ତର ପ୍ରଦେଶ ଅନେକ ଦୂର ଗଲି । କୁମର ସଦୃଶେ କନ୍ୟା ନ ପାଇଲି । ସମସ୍ତ ଦେଶ ବୁଲିଲି । ଜଳ ସ୍ତମ୍ଭନ ମଣି କଣ୍ଠରେ ଲାଇ, ସୂକ୍ଷ୍ମ ଆହାରମାନ ଅଣ୍ଟିରେ ପୁରେଇ, ସମୁଦ୍ରେ ବୁଲିଗଲି । ସେ ଜଳ ସ୍ତମ୍ଭନ ମଣିର ପ୍ରସାଦେ ସମୁଦ୍ର ମୋତେ କାଚ ପୀଠର (୬) ପ୍ରାପ୍ତେକ ହୋଇଲା । ତହିଁର ଉତ୍ତରେ ମୁଁ ପାଦୁକା ବିଦ୍ୟାର ବଳେ ଅନେକ ଦୂର ଗଲି । ଅନେକ ଦ୍ୱୀପ ଦେଖିଲି । କେବଣ ଦ୍ୱୀପ ସୁବର୍ଣ୍ଣ ବାଲୁକା ଅଟଇ । ମଣିରତ୍ନମାନ କରଲ୍ୟରେ ପଡ଼ିଅଛି । କାହିଁ ପର୍ବତମାନ ନୀଳମଣି ଅଟଇ । କାହିଁ ମର୍କତ ମଣ୍ଡପମାନଙ୍କରେ ସିଦ୍ଧମାନେ ସମାଧିରେ ଅଛନ୍ତି । କାହିଁ ବୃକ୍ଷମାନଙ୍କରେ ଖଟି ସେଜ ଧନରତ୍ନ ଅଳଙ୍କାର ଭକ୍ଷ ଭୋଜନ ଏମାନ ଫଳି ଅଛନ୍ତି । କାହିଁ ମହାମହା ସର୍ପମାନେ ଅଛନ୍ତି । କାହିଁ ଅଶ୍ୱମୁଖ ସ୍ତ୍ରୀମାନେ ଅଛନ୍ତି । ଏମନ୍ତେ କେତେଦୂର (୭) ଗଲି । କୁମର ସଦୃଶେ କନ୍ୟା କାହିଁ ନ ପାଇଲି ।

ତଦନ୍ତରେ ପଶ୍ଚିମ ଦେଶର ଦୂତ ଆସି ପ୍ରବେଶ ହୋଇ ଦର୍ଶନ କଲା । ସେ ଦୂତର ନାମ ଗୁଣନିଧାନ । ବୁଦ୍ଧିରେ କଣ ବୃହସ୍ପତିର ସମାନ । ଜାତିରେ ବ୍ରାହ୍ମଣ । ପ୍ରଣବ ମନ୍ତ୍ରବାଦୀ । ଯଙ୍କ ବଧିରେ କଣପାରଇ ସକଳ ବିଦ୍ୟା ସାଧି । ସେ ଦୂତ କହୁଅଛି ହେଦେବ ! ପଶ୍ଚିମ ଦିଗରେ ଅନେକ ଦୂର ଗଲି । ଲୁବ୍ଧ ସୁଧାନଧି ସମାନେ (୮) କାହିଁ ନ ପଇଲି । ସିନ୍ଧୁ, ମଗଧ, ମାଗଧ, ଗିରି, ଲଟା, ଗୁଲ୍ମ, ଦେଶ, ନଗର ସିନ୍ଧୁ, ମହାସିନ୍ଧୁ, ମୁଗଲ, ସୈନ୍ଧବ ପାଟଣା, ଗ୍ରାମ ପାଟଣା, ଚଜ ପାଟଣା, ଚଜମଣ୍ଡଳ, ଚଜକୂଟାଚଳ, ବାନ୍ଧାମନ୍ଦରାଦ୍ରି କଣ ଗିରି (୯) ନଦୀ ସାଗର ପାଟଣାଦି କରି ସମସ୍ତ ରଜାମାନଙ୍କର ଦେଶରେ ପ୍ରବେଶ ହୋଇଲି । ତହିଁର ମଧ୍ୟରେ ରତ୍ନ କଞ୍ଚୁକ ଦେଶରେ; ଅସ୍ତାଚଳ ପୂର୍ବ ଦେଶରେ, ଅମୃତ କଳାନଦୀତୀରେ,

(୧) 'କ' ରେ ପାଶ୍ୱର୍ରେ (୨) 'କ' ଭୁଗଦେଶ୍ୱର (୩) 'ଖ' ରେ ନାହିଁ
(୪) 'କ' ରେ ଗଢ଼ିଲା କି କେତକ ମନୁ (୫) 'ଖ' ରେ ଦେଉ (୬) 'କ' ବରପଥର
(୭) 'ଖ' ରେ ଅନେକ ଦୂର (୮) 'କ' ରେ ସଦୃଶେ (୯) 'ଖ' ରେ ନାହିଁ



Digitized by srujanika@gmail.com

ମଧୁବତୀ (୧) କଟକ ନିକଟରେ ରାଜାଏକ ଅଛୁ । ତାହାର ନାମ ବୈଶପଗ୍ନର (୨) । ସେ ରାଜା ବଇଶ୍ରବଣର ପ୍ରାୟେକ ସକଳ ଗୁଣେ ସମ୍ପୂର୍ଣ୍ଣ । ସେ ରାଜାର ମୁକ୍ତାବତୀ ବୋଲି ପାଟମହିଷୀ । ତାହାର ଦୁହିତାନାମ ମଦନବଲ୍ଲଭ (୩) । ସେ ସକଳ ଗୁଣେ ପୁଲ୍ଲତ୍ତ । ମୁଖ ମଦନ ଦର୍ପଣର ପ୍ରାୟେକ (୪) ଶୋଭ୍ତ । ସଜୀବ ମନମଥ କଥି ପ୍ରାୟେକ ସିନ୍ଦୁହାସ (୫) ପ୍ରଭ୍ତ । ତରଲ ତରଙ୍ଗ ନୟନ ନୀଳୋତ୍ପଳ ମାଳା କର୍ଣ୍ଣ ପର୍ଯ୍ୟନ୍ତେ ଆନ୍ଦୋଳିତ ଶୋଭ୍ତ (୬) । ଶରତ୍କାଳ କ୍ଷୀର ସମୁଦ୍ର (୭) ସହସ୍ର ଶରଦ ଚନ୍ଦ୍ର କୁମୁଦ କୁନ୍ଦ ପୁଣ୍ଡରୀକ କମ୍ବୁ ମୁକୁତା ତରବାର ମନ୍ଦାକିନୀ କଲ୍ଲୋଳ ଉଦ୍ଭବ କନ୍ଦର ସୁଧାଫେନ ଲକ୍ଷ୍ମୀ ନନ୍ଦନ ଚକ୍ଷୁ ଶୁକ୍ଳ ଆଭ୍ତ । ନୀଳ କଜ୍ଜନ ଭ୍ରମର ମର୍କତ ଜୀମୂତ ନୀଳୋତ୍ପଳ ମୟୂର କାଣ୍ଠୋପାନ୍ତ ଅର୍ଣ୍ଣିତ କୁସୁମ ଗର୍ବ ନିବାରିତ ନୟନାଞ୍ଜନ ଚକ୍ଷୁମଧ୍ୟ ପ୍ରଭ୍ତ । ଦାଡ଼ିମ ପୁଷ୍ପ ଦଳ (୮) ମାଣିକ୍ୟ ବନ୍ଧୁକ ପକ୍ୱ ବିମ୍ବଫଳ କୋକନଦ ରକ୍ତୋତ୍ପଳ ନବଅରୁଣ (୯) ମନ୍ଦାର ରଞ୍ଜିତ (୧୦) ଅଧର ଅମୃତ କଲ୍ଲୋଳିନୀ ଶୋଭ୍ତ ସମସ୍ତ ଲକ୍ଷଣେ ସମ୍ପୂର୍ଣ୍ଣ । ଶଙ୍ଖ ପଦ୍ମ ଧ୍ୱଜାଙ୍କୁଶ ଚିହ୍ନାଙ୍କିତ ରେଖା ନଥିବାରୁ କର ସେ ହୋଇଲି ଗୁଣ (୧୧) । ଏଥିର ପଶ୍ଚିମ ପ୍ରଦେଶରେ ମାଣିକ୍ୟର ପର୍ବତେକ ଅଛୁ । ସେ ପର୍ବତ ତେଜରେ କଣ ସୂର୍ଯ୍ୟ ଦେବତା ଜ୍ୱଳୁଜ୍ୱଳା ଯୋକ ପ୍ରାୟେକ ଦିଶୁଅଛୁ (୧୨) । ତହିଁ କଳ୍ପତରୁ ଏକ ଅଛୁ । ସେ କଳ୍ପତରୁ ଡ଼ାଳତରୁକୁ ଶୁକ୍ଳ ସୁବର୍ଣ୍ଣ ଅଟଇ । ଫିଣାଖା ହୋଇଅଛୁ । ସେ ଡାଳ ତରୁକୁ ବୃହି ନୁହଇ । ସେ ବୃକ୍ଷର ତଳେ ସୂର୍ଯ୍ୟର ପ୍ରାୟେ ମଣି ପୀଠେକ ଅଛୁ । ତହିଁ ତଳେ ପୁରୁଷେକ ବସିଅଛୁ । ସେ ପୁରୁଷ ଧବଳ ବର୍ଣ୍ଣ ଅଟଇ । ସହସ୍ର ସହସ୍ର ଚନ୍ଦ୍ରମାନେ ଉଦେ ହୋଇଲି ପ୍ରାୟେକ ଶୋଭ୍ତ ପାଉ ଅଛଇ । ମୂର୍ଦ୍ଧନର ଉପରେ ଫଣା (୧୩) ସାତ ଗୋଟା ଶୋଭ୍ତ ପାଉଅଛୁ । ଷୋଳ ଚନ୍ଦ୍ରମା ଉଦେ ହୋଇଲି ପ୍ରାୟେ ଲୋଚନ ଚନ୍ଦ୍ର ଦିଶୁଅଛୁ (୧୪) । ଇନ୍ଦ୍ରଧନୁର ପ୍ରାୟେକ ବନମାଳା (୧୫) ଗୋଟାଏକ କଣ୍ଠ ଲମ୍ବାଇ ଅଛୁ (୧୬) । ଅତ୍ୟନ୍ତ ଅନ୍ଧକାରକୁ ସମ ନୀଳ ବସ୍ତ୍ରେକ କମର ଭାଗେ ପିନ୍ଧିଅଛୁ । ସେ ସାତ ଫେଣାରେ ମଣି ସାତଗୋଟା ଦୀପ୍ତ ହୋଇଅଛୁ । ମଣିମାନଙ୍କର ଶିଖା ମଣ୍ଡଳ ପ୍ରାୟେକ ଉଠୁଅଛୁ (୧୭) । ଚନ୍ଦ୍ରମଣି ମାଳେକ ସର୍ବ୍ୟକଣ କଣ୍ଠରେ ଲମ୍ବାଇ ଅଛୁ । ସେ ଚନ୍ଦ୍ରମଣି ସକାଶରୁ ପାର୍ଶ୍ୱବର୍ତ୍ତୀ (୧୮) ସିଦ୍ଧମାନଙ୍କର

---

(୧) 'କ' ରେ ମଧୁବନ (୨) 'କ' ରେ ଶୈରପଞ୍ଚାନନ (୩) 'ଖ' ରେ ମଦନବଲ୍ଲରୀ (୪) 'ଖ' ରେ ଶରଦ ଚନ୍ଦ୍ର ପ୍ରାୟେକ (୫) 'ଖ' ରେ ଇଶତ୍ତୁ ହାସ (୬) 'ଖ' ରେ ମାଳା ଲକ୍ଷ୍ମୀ ମୁଖହାସିତ କର୍ଣ୍ଣ ପର୍ଯ୍ୟନ୍ତେ ଆନ୍ଦୋଳିତ ଶୋଭ୍ତ (୭) 'ଖ' ରେ ଗିର ସମୁଦ୍ର (୮) 'କ' ରେ କୁସୁମ (୯) 'ଖ' ରେ ନାହିଁ (୧୦) 'କ'ରେ ଛୁଡ଼ (୧୧) 'ଖ' ରେ ସେ କନ୍ୟା ହୋଇଲି ଗୁଣ । (୧୨) 'କ' ରେ ଦିଶଇ (୧୩) 'ଖ'ରେ ଫେଣ । (୧୪) 'ଖ' ପ୍ରାୟେକ କପାଳଚନ୍ଦ୍ର ଚକ୍ଷୁ ଦିଶୁଅଛୁ (୧୫) 'ଖ'ରେ ପ୍ରାୟେ ବଡ଼ମାଳା (୧୬) 'ଖ' ରେ ଗୋଟାଏକ ଧରିଅଛୁ । (୧୭) 'ଖ' ସେ ମାଣିକ୍ୟ ଶିଖା ଚନ୍ଦ୍ରମଣ୍ଡଳ ପର୍ଯ୍ୟନ୍ତ ଉଠୁଅଛୁ । (୧୮) 'ଖ'ରେ ପାରୁଶ୍ୟବର୍ତ୍ତୀ

Digitized by srujanika@gmail.com

ଭ୍ରମକାମ ନାନା ଅବିଦ୍ୟା ନାଶ ହେଉଅଛି । ସକଳ ତୈଲୋକ୍ୟ ଲକ୍ଷ୍ମୀ ମୂର୍ତ୍ତିବନ୍ତ ହୋଇ ରହିଅଛି । ଆକାଶର ଗଙ୍ଗା (୧) ଫଣା ବିଷଜାଳାରେ ସୂକ୍ଷ୍ମସ୍ୱେତ ହେଉଅଛି । ଏମନ୍ତେ ମୁହିଁ ସେ ମହାବିଦ୍ୟାର ବଳେ ସେ ପର୍ବତର ତଳେ ଯାଇ ହୋଇଲି । ତହିଁ ଦେଖିଲି ଦିବ୍ୟ ସ୍ତ୍ରୀମାନେ ପ୍ରଜନ ହେଉଅଛନ୍ତି । ତହିଁ ଅମୃତମୟ ସରୋବରରେ ଚନ୍ଦ୍ରମା ପ୍ରାୟେକ କାନ୍ତିରୂପା ପଦ୍ମମାନେ ଅଛନ୍ତି । ସେ ପଦ୍ମକେଶର ଶୁଦ୍ଧ ସୁବର୍ଣ୍ଣର । ପୁଷ୍କର ପଦ୍ମରାଗ ମାଣିକ୍ୟର । ସେ ପଦ୍ମମାନଙ୍କର ଗନ୍ଧ ଶତେ ଯୋଜନ ପର୍ଯ୍ୟନ୍ତେ ଯାଇ । ତହିଁ ଆରକତ (୨) ବର୍ଣ୍ଣ ଘର୍ଘରେ କରି, ସେ ପଦ୍ମମାନେ ଚନ୍ଦ୍ରମଣ୍ଡଳକୁ ମଧ୍ୟ ସନ୍ଧ୍ୟାକାଳରେ ରକ୍ତବର୍ଣ୍ଣ (୩) ମେଘ ଆଚ୍ଛାଦନ ପ୍ରାୟେକ ଦିଶୁଅଛନ୍ତି । ଅମୃତ ମକରନ୍ଦେ ପୂର୍ଣ୍ଣଯୁକ୍ତ ହେଉଅଛନ୍ତି । ସେ କମଳବନ ଆଶ୍ରେ କରି ଲକ୍ଷ୍ମୀ କ୍ରୀଡ଼ା କରୁଅଛନ୍ତି । ହଂସ ଭ୍ରମର (୪) ନାନାଜଳଚର ଜୀବଜନ୍ତୁମାନେ ସମସ୍ତେ ରତ୍ନଜଡ଼ିତ ସୁବର୍ଣ୍ଣ ନିର୍ମାଣ ଅଟନ୍ତି । ସେ କମଳକୁ ସୂର୍ଯ୍ୟର ଉଚ୍ଚ ରଶ୍ମି ଯେ ଲାଗଇ । ସେ ପଦ୍ମ ରାତ୍ରେ ମୁଦ୍ରିତ ହୋଇ । ଦିବସେ ପ୍ରକାଶ ହୋଇ । ସେ ପଦ୍ମମାନଙ୍କରୁ କନ୍ୟା ଗୋଟିଏ ଗୋଟିଏ ଜନ୍ମ ହୋଇ । ସେ କନ୍ୟାମାନେ ପଦ୍ମିନୀ ଅଟନ୍ତି । ପଦ୍ମବଦନୀ, ପଦ୍ମନୟନୀ, ପଦ୍ମଗନ୍ଧ, ପଦ୍ମବର୍ଣ୍ଣ କର ଚରଣ, ସେ କନ୍ୟାମାନେ ପ୍ରାତଃକାଳେ କୁମାରୀ ହୁଅନ୍ତି । ମଧ୍ୟାହ୍ନ କାଳରେ ଯୁବତୀ ହୁଅନ୍ତି (୫) ସନ୍ଧ୍ୟାକାଳେ ବୃଦ୍ଧା ହୁଅନ୍ତି । ରାତ୍ରକାଳେ ଲୟେ (୬) ହୁଅନ୍ତି । ପୁନରପି ସେ ପଦ୍ମବନରୁ ପଦ୍ମିନୀ କନ୍ୟାମାନେ ଦିନରେ ଜନ୍ମ ହୁଅନ୍ତି । ସେ କନ୍ୟାମାନଙ୍କର ଯୁବାବୟସ ଯେବେ ସର୍ବଦା (୭) ଥାଆନ୍ତା, ନିଶ୍ଚୟ କୁମରକୁ (୮) ଭଜନ ହୁଅନ୍ତା ।

ତଦନନ୍ତରେ ତହୁଁ ଅନେକ ଦୂର ପଶ୍ଚିମେ ଗଲି । ଭୂବାସ, ଦେବବାସ, କିଂପୁରୁଷବାସ ଆଦିକରି ସମସ୍ତ ପର୍ବତମାନନ୍ତ ବୁଲିଲି (୯) । କୁମାର ସଦୃଶେ କନ୍ୟା କାହିଁ (୧୦) ନ ପାଇଲି । ଏତେକ ଜାଣି ସେ ମଠରେ ହାତଦେଇ (୧୧) ଥାଇ ହୋଇ ରହିଲି । ତଦନନ୍ତରେ ଦକ୍ଷିଣ ଦିଗ ଦୂତ ବୈଚକ୍ଷ (୧୨) ବୋଲି । ସେ ବିଚକ୍ଷଣ ହୋଇ । କଳ୍ପ ଚିନ୍ତାମଣି ବିଦ୍ୟା ଜାଣଇ (୧୩) । ଅଦୃଷ୍ଟ ଅଶ୍ରୁତ (୧୪) ପଦାର୍ଥ ହିଁ ଆଣି ପାରଇ । ନନ୍ଦନବନ ପର୍ଯ୍ୟନ୍ତେ ଗମି ପାରଇ । ସମସ୍ତ ବିଘ୍ନମାନନ୍ତ ବଳେ ନିବାରିପାରଇ । ସେ ରାଜାକୁ ନମସ୍କାର କଲା । କରପତ୍ର ଯୋଡ଼ି ଜଣାଇଲା (୧୫) ହେ ଦେବ ! ଦକ୍ଷିଣ ଦିଗକୁ ଗଲି । ବଙ୍ଗ, କଳିଙ୍ଗ, ତେଲିଙ୍ଗ, ସନ୍ଧିରାଷ୍ଟ୍ର, ମହାରାଷ୍ଟ୍ର, ବିଚନ୍ଦ୍ର, ମହାଚନ୍ଦ୍ର, ଖମଣ୍ଡଳ, ଚନ୍ଦ୍ରୀ ମଣ୍ଡଳ, ଜଳମଣ୍ଡଳ, ଭେଦ ମଣ୍ଡଳ, କାଞ୍ଚି, ମାରୁଆ, ପମ୍ପା, ପଞ୍ଚଭଣ୍ଡାର, ଦ୍ୱୀପ ଦ୍ୱୀପାନ୍ତର, ମହୀନ୍ଦ୍ର ମାହେନ୍ଦ୍ର, ମଳୟ, ମହେନ୍ଦ୍ରତନୟ, ଗୋଦାବରୀ, କୃଷ୍ଣାବେଣୀ, କାବେରୀ ସହିତ

(୧) 'ଖ' ରେ ନାହିଁ (୨) 'ଖ' ରେ ରତ୍ନ (୩) 'କ' ରେ ହରିତବର୍ଣ୍ଣ (୪) ବନ୍ଧିରେ ଓ (୫) ବନ୍ଧିରେ ଏବଂ (୬) 'ଖ' ରେ ଲୀନ (୭) 'ଖ' ରେ ସବୁଦିନେ (୮) 'ଖ' ରେ କ୍ଷୀନଚନ୍ଦ୍ରକୁ (୯) 'ଖ' ରେ ଘୂରିଲି (୧୦) 'ଖ' ରେ ତହିଁ (୧୧) 'ଖ' ରେ ହାଥଦେଇ (୧୨) 'ଖ' ରେ ବୈୖତକ (୧୩) 'ଖ'ରେ ପାଇ (୧୪) 'ଖ' ରେ ଅଦୃଷ୍ଟି ଅଶ୍ରୁତ (୧୫) 'ଖ' ରେ ବୋଇଲା

Digitized by srujanika@gmail.com

ଦେଶ, ନଗ୍ର, ଘୋଷ, ପାଟଣା , ବୁଲିବୁଲି କୁମାର ସଦୃଶେ କନ୍ୟା କାହିଁ ନ ପାଇଲି । ତଦନନ୍ତରେ ଉତ୍ତର ଦିଗକୁ ଦୃଢ ଶପଥ ହୋଇ । ଏ ଆଗମ ବିଦ୍ୟାମନ୍ତେ କହିଲ । ହେ ଦେବ ! ବ୍ରହ୍ମମାତୃକାଙ୍କୁ ସାଧିଅଛି । ଦେବତା ଶରୀର ଭାବ ଅଟଇ । ଉତ୍ତର ଦେଶରେ ଅନେକ ଦୂର ଗଲି (୧) । ସମସ୍ତ ରାଜାମାନଙ୍କର ପୁର ଖୋଜିଲି ଉତ୍ସରେ । ପ୍ରବେଶ ହୋଇଲି ଯାଇଁ ହରଦ୍ୱାର (୨) ଠାରେ । ସେଠାରେ ଅଇରାବତ ଗଜର ଦନ୍ତରନ୍ଧ୍ରୁ (୩) ବହୁଅଛି ମନ୍ଦାକିନୀ ନିଧାର ହୋଇ । ତହିଁ ସର୍ବ ଲକ୍ଷଣ ଶଇଳମାନନ୍ତ ଦେଖିଲି । ତଦନନ୍ତରେ ପାଣ୍ଡବ ମାର୍ଗେ ଅନେକ ଦୂର ଗଲି । ବ୍ରହ୍ମମାତୃକା ମୋତେ କାନ୍ଧରେ ବସାଇ ହୁଂକାର କଲେ । ହିମାଚଳ (୪) ପର୍ବତ ଦେଇ ଅତ୍ୟନ୍ତ ଶୁକଳ ପର୍ବତେକ ଦେଖାଇଲେ । ସେ ପର୍ବତ ଅତ୍ୟନ୍ତ ଶୁକଳ ଅଟଇ, କହି ନୁହଇଁ, କୁଶଳ (୫) ଭାବୁଁ କଶ ସମସ୍ତ ଜଗତର ସ୍ରଷ୍ଟା ସେ ପର୍ବତେ ପ୍ରତିବିମ୍ବୁ ଅଛି । ଚନ୍ଦ୍ରକାନ୍ତ ମଣି ଯେମନ୍ତ ଚନ୍ଦ୍ରକିରଣନେ ଯେମନ୍ତ ହୋଇ, ସେହିମତ ତହିଁ ଅମୃତ ଶୀକରମାନେ ଜାତ ହେଉଅଛନ୍ତି । ସେ ପର୍ବତ ତେଜର ଶିଖା ବ୍ରହ୍ମଲୋକ ଯାଏ ଉଠିଅଛି । ଆକାଶଗଙ୍ଗା ମେଖଳା ଆକାରରେ ଅମୃତ ଜଳରେ ଯୁକ୍ତ ହୋଇ ବହୁଅଛି । ଗ୍ରୀବ ପାରୁଶରେ କ୍ଷୀର ସମୁଦ୍ର ଲହରୀ (୬) ମାରୁଅଛି । ଅମୃତ ସମୁଦ୍ର ଭିତରେ ଶ୍ୱେତ ହସ୍ତୀଗୋଟାଏ ପଶିଲି ପରାଏ ଶୋଭା ପାଉଅଛି । ଚନ୍ଦ୍ର ସୂର୍ଯ୍ୟ ସେ ଦୁଇ ପାଶେ ଘଣ୍ଟା ପ୍ରାୟେ ହୋଇଅଛନ୍ତି । ନକ୍ଷତ୍ରମାନେ ସେ ହସ୍ତୀର ଉପରେ ପୁଷ୍ପବୃଷ୍ଟି କଲି ପରାଏ ଦିଶୁଅଛନ୍ତି । ସେ ମେଖଳା ପର୍ଯ୍ୟନ୍ତେ ସନ୍ଧ୍ୟା ମେଘମାନେ ନାନା ବର୍ଣ୍ଣ ଧରି ବିଚରନ୍ତେ ବିବିଧ ପ୍ରକାରେ ହସ୍ତୀକ ମଣ୍ଡିଲି ପରାଏ ଶୋଭା ଦିଶୁଅଛି । ପଶ୍ଚିମ ଦିଗ ସନ୍ଧ୍ୟାଯେ ରକ୍ତ ହୋଅନ୍ତେ ଗଜକୁମ୍ଭରେ ସିନ୍ଦୂର ମଣ୍ଡିଲି ପରାଏ ଶୋଭା ପାଉଅଛି (୭) । ଆକାଶଗଙ୍ଗା ଝରଝର ହୋଇ ମର୍କତ (୮) ଶୃଙ୍ଗରୁ ପଡ଼ନ୍ତେ ମଦଜଳ ଝରିଲି ପରାଏ ଦିଶୁଅଛି । ସେ ଶୁକ୍ଳ ମେଘମାନ ଗର୍ଜିବାରେ କରି ହସ୍ତୀ ସ୍ୱନ କଲି ପରାଏ ଶୋଭା ପାଉଅଛି । ବୁଧ, ଶୁକ୍ର ଗ୍ରହଦ୍ୱୟ ପ୍ରତିବିମ୍ବେ ଦୁଇ ଚକ୍ଷୁ ପ୍ରାୟେ ଦିଶୁଅଛି । ଏମନ୍ତେ ସେ ପର୍ବତରେ ମାନ ସରୋବର ବୋଲି ସରୋବରେକ ଅଛି । ତହିଁ ଚନ୍ଦ୍ର ଦେବତା ଜନ୍ମ ହୋଇ ସେହିବାଟେ ପାତାଳକୁ ଯାଆନ୍ତି ।

ସେ ସରୋବର ଚନ୍ଦ୍ରମା ପ୍ରାୟେକ ଉଜ୍ଜ୍ୱଳ ଅଟଇ । ଆକାଶଗଙ୍ଗା ସଙ୍ଗମ ଅଟଇ । ସେ ସରୋବରେ ସ୍ନାନ କରନ୍ତେ ଦେବତା ହୋଇ । ସେ ପର୍ବତ ଉପରେ, ସରୋବର କୂଳେ ଏକ ବୃଷଭ ଗୋଟାଏ ଅଛି । ସେ ବୃଷଭ ସୁବର୍ଣ୍ଣ ଅଟଇ । ସେ ସୁବର୍ଣ୍ଣ ବୃଷଭର ସିଂହ ଦୁଇ ମାଣିକ୍ୟର । ସେ ସିଂହର ତେଜ ବାଳ ଆଦିତ୍ୟର ପ୍ରାୟେ ପର୍ବତେ ପ୍ରତିବିମ୍ବୁ ଦିଶନ୍ତେ ହସ୍ତୀର ଦୁଇ ପାରୁଶରେ ଦୁଇ ପାତାଙ୍ଗ ରେଖା ପ୍ରାୟେ ଦିଶୁଅଛି । ସେ ବୃଷଭର

---

(୧) 'ଙ' ରେ ତଦନନ୍ତରେ ଠାରୁ ଦୂର ଗଲି ପର୍ଯ୍ୟନ୍ତ ନାହିଁ (୨) 'ଖ' ଇନ୍ଦ୍ରର ଦ୍ୱାର ଠାରେ (୩) 'କ' ରେ ଦଂଶନରୁ (୪) 'ଖ' ରେ ହେମନ୍ତ (୫) 'ଖ' ରେ ସୂକ୍ଷ୍ମ (୬ 'କ' ରେ ଲହଡ଼ା (୭) 'ଙ' ରେ ସେ ମେଖଳାଠାରୁ ଶୋଭା ପାଉଅଛି ପର୍ଯ୍ୟନ୍ତ ନାହିଁ, (୮) 'କ' ରେ ମଧ୍ୟ ଶୃଙ୍ଗରୁ

Digitized by srujanika@gmail.com

ଚକ୍ଷୁ ଦୁଇ ମରକତ ଅଟଇ । ମୁକ୍ତାପନ୍ତିର ପ୍ରାୟେକ ଦନ୍ତ ଶୋଭା ପାଉଅଛୁ । ବଜୁଳି କାନ୍ତି ପ୍ରାୟେକ ଜିହ୍ୱା ଅଟଇ । ରୋମାବଳିମାନ ମର୍କତ କଣିକା ପ୍ରାୟେକ ହୋଇ ଅଛଇ । ସେ ବୃଷଭ ମୁଖ ପିଠି ଉପରେ ଦେଇ ଶୋଇଅଛୁ । ସେ ବୃଷଭକୁ ଅପସର କରି ଏକ ପୁରୁଷେକ ବସିଅଛ । ସେ ପୁରୁଷ ତେଜୋମୟ ଅଟଇ । ପରମ ଧବଳ ଅଟଇ । ତାହାର ଧବଳତ୍ୱ (୧) କରି ଜଗତ ଧବଳମୟ ପରାଏ ଦିଶୁଅଛୁ । ସେ ପୁରୁଷର ମୂର୍ଦ୍ଧ୍ନା ଉପରେ ଜଟାଜୂଟମାନେ ଅଛନ୍ତି । କାଳନ୍ଦୀ କନ୍ଦଙ୍କ ପ୍ରାୟେକ ହୋଇ ସେ ଜଟାମାନେ ପର୍ବତେ ଲମ୍ବି ପଡ଼ିଥାନ୍ତେ କୃଷ୍ଣବର୍ଣ୍ଣ ସର୍ପମାନେ ଲମ୍ବିଲ ପ୍ରାୟେକ ଦିଶୁଅଛନ୍ତି । ହସ୍ତୀକ କଲାପାଟ ଦନ୍ତଭିତରେ ବନ୍ଧନ କଲି ପ୍ରାୟେକ ଶୋଭା ପାଉଅଛୁ । ତହିଁ ଉପରେ ଚନ୍ଦ୍ର ଜ୍ୟୋସ୍ନା ପ୍ରାୟେକ ଧବଳ ଆହ୍ଲାଦ ହୋଇ ଜଳଧାରା ଗୋଟିଏ ପଡ଼ୁଅଛୁ । ମହାଶବ୍ଦ କରି ସେ ପୁରୁଷର ଜଟାରେ ପ୍ରବେଶ ହୋଇ ଝରଝର ହୋଇ ବହିଯାଉଅଛୁ ପର୍ବତ ଉପରେ । ସେ ମସ୍ତକରେ ଅର୍ଦ୍ଧଚନ୍ଦ୍ର ଗୋଟିଏ ଅଛୁ । ସେ ଚନ୍ଦ୍ର ନିଷ୍କଳଙ୍କ ଅଟଇ । ସେ ଚନ୍ଦ୍ର ଜ୍ୟୋତିରେ କରି ପର୍ବତଯାକ ଆଲୋକ ହେଉଅଛୁ । ତହିଁ ବହିଗନ୍ତା ଦର୍ବୀ ଭୃଙ୍ଗମାନେ ଶୂନ୍ୟରେ ଥିଲ ପ୍ରାୟେକ ହୋଇ (୨) ଦିଶୁ ଅଛନ୍ତି । ସେ ଚନ୍ଦ୍ରର ଅମୃତ ଧାରାମାନ ଶୂନ୍ୟରେ ଥିଲ ପ୍ରାୟ ଦିଶୁଅଛନ୍ତି । ସେ ଚନ୍ଦ୍ରର ଅମୃତ ଧାରାମାନ ଆସ୍ୱାଦନ କରି ଅନେକ (୩) ମହାସର୍ପମାନେ ଅଛନ୍ତି । କେ ତପ୍ତ କାଞ୍ଚନର ପ୍ରାୟେକ । କେ ନିର୍ଧୂମ ଅଗ୍ନିର ପ୍ରାୟେକ । କେ ସୂର୍ଯ୍ୟର ପ୍ରାୟେକ । କେ ମାଣିକ୍ୟର ପ୍ରାୟେକ । କେ ଇନ୍ଦ୍ରଧନୁର ପ୍ରାୟେକ । (୪) କେ ପଦ୍ମକେଶର ପ୍ରାୟେକ । ଏମନ୍ତେ ସେ ସର୍ପମାନେ ଜଟାରେ କ୍ରୀଡ଼ନ୍ତେ ଫଣାମଣିମାନଙ୍କର ଶିଖା ସହସ୍ର ସହସ୍ର ହୋଇ ଉଠନ୍ତେ ଆକାଶରୁ ଅଗ୍ନିଧାରାମାନ ଉଠି ବୃଷ୍ଟି କଲି ପ୍ରାୟେକ ଦିଶୁଅଛୁ । ସେ ପୁରୁଷର ନୀଳବର୍ଣ୍ଣ ଭ୍ରୂଲତା ଦୁଇ, କାମଧେନୁର ପ୍ରାୟେକ ଅଟଇ । କି ଶରଦଚନ୍ଦ୍ର ମଣ୍ଡଳରୁ କଳଙ୍କ ପୋଛି ମୋହମାଳ କରି ଗୁନ୍ଥିଲ ପ୍ରାୟେକ (୫) ଦିଶୁଅଛୁ । ସେ ପୁରୁଷର ତିନିଗୋଟି ଚକ୍ଷୁ । ଦକ୍ଷିଣ (୬) ଚକ୍ଷୁ ସୂର୍ଯ୍ୟଦେବର ପ୍ରାୟେକ ଦିଶଇ । ବାମ (୭) ଚକ୍ଷୁ ଚନ୍ଦ୍ରମଣ୍ଡଳର ପ୍ରାୟେକ ଦିଶଇ । ଲଲାଟ ଚକ୍ଷୁ ବଡ଼ବାନଳର ପ୍ରାୟେକ ଦିଶଇ । ନିରେଖି ଗୃହିଁଲେ ତହିଁ ତ୍ରିଲୋକ୍ୟ ପ୍ରତିବିମ୍ବିଲ ପ୍ରାୟେକ ଦିଶଇ । ପୁଣି ଗୃହିଁ ନୋହଇ । ସେ ପୁରୁଷ ସନ୍ଧ୍ୟା ମେଘ ପଟଳ ପ୍ରାୟେକ ପୁଣ୍ଡରୀକ ପରିଧାନ କରିଅଛୁ । କଣ୍ଠ ନୀଳବର୍ଣ୍ଣ, ମୟୂରକଣ୍ଠ ପ୍ରାୟେକ, ଜୀମୂତର ପ୍ରାୟେକ, କି ଜମ୍ବୁନଦର ପ୍ରାୟେକ, ଏମନ୍ତ ହୋଇ ନୀଳକଣ୍ଠ ଅଟଇ । ସାହସ କନ୍ଦ, ମହାଦୀର୍ଘ ପଦ୍ମ ମୃଣାଳ ପ୍ରାୟେକ ବାହୁ ବିପୁଳ ଚାରି ହସ୍ତ ଅଟଇ । ସେ ହସ୍ତମାନଙ୍କର ଶୋଭା ପଞ୍ଚଶର ଦର୍ପିତ ପ୍ରାୟେକ । ନଖମାନେ ଫଣାମଣି ପ୍ରାୟେକ ଦୀପ୍ତ ହୋଇ ଦିଶୁଅଛୁ । ସୂର୍ଯ୍ୟ ଜ୍ୟୋସ୍ନା ପ୍ରାୟେକ କର୍ଣ୍ଣରେ କୁଣ୍ଡଳ ଅଟଇ । ସେ କୁଣ୍ଡଳର ଦୁଇଶିଖା ଧ୍ରୁବମଣ୍ଡଳ

(୧) 'କ' ରେ ଧବଳବର୍ଣ୍ଣ (୨) 'କ'ରେ ନାହିଁ (୩) 'କ'ରେ ନାହିଁ (୪) 'କ'ରେ ନାହିଁ
(୫) 'କ' ରେ କଳଙ୍କ ଆଣି ଭୃଙ୍ଗାଳିକ ପ୍ରାୟେକ (୬) 'କ' ରେ ଦକ୍ଷିଣ ଆଡ଼ ଚକ୍ଷୁ
(୭) 'କ' ରେ ବାମଆଡ଼ ଚକ୍ଷୁ

Digitized by srujanika@gmail.com

ପଶ୍ଚାତେ ଉଠୁଅଛୁ । ଅଧର୍ମ ଅଗ୍ନିର ପ୍ରାୟେକ ସର୍ପ ଗୋଟିଏ ପଇତା କରି ଲଗିଅଛୁ । ଉପର ଦୁଇ ହସ୍ତରେ ଶୂଳ ଡମ୍ବରୁ ଧରିଅଛୁ । ତଳ ଦୁଇହସ୍ତେ ମୃଗ ଅଭୟ ଅଛୁ । ପର୍ବତର ପ୍ରାୟେକ ମଣ୍ଡଳ (୧) ସମାଧିରେ ବସିଅଛୁ । ସେ କନକ ବୃଷଭଙ୍କୁ ଆରୁଢ ଅଛୁ । ଯୈ ଲୋକ୍ୟଯାକ ଦଗଧ କରିବାକୁ କାଳଦେବତା ପ୍ରାପ୍ତ ହୋଇ ମୂର୍ତ୍ତିବନ୍ତ ପୁରୁଷେକ ଅଛୁ । ସେ ପିଙ୍ଗଳବର୍ଣ୍ଣ । ଆଦିତ୍ୟତ ପ୍ରାୟେ ତେଜ । ମୁଖ ମର୍କଟର ଆକୃତି । ହସ୍ତରେ ଶୂଳ ଗୋଟିଏ ଘେନିଅଛୁ । ସେ ପର୍ବତକୁ ସେ ରକ୍ଷା କରିଅଛୁ । ସେ ପୁରୁଷର ଦକ୍ଷିଣ ପାର୍ଶ୍ୱରେ ଗଜବଦନ ପ୍ରକୃତି ହୋଇ ବାଳକ ଗୋଟିଏ ଖେଳୁଅଛୁ । ବାସୁକି ନାଗକୁ ଧରିଅଛୁ । ଖଣ୍ଡେହୃଦେ ସୁବର୍ଣ୍ଣର ଇନ୍ଦୁର ଗୋଟିଏ ଗ୍ରୁଣ୍ଡିଅଛୁ (୨) । ସେ ପୁରୁଷର ଆଗରେ ଏକ ସ୍ତ୍ରିୟାଏ (୩) ଠିଆ ହୋଇଅଛୁ । କୋଟି କୋଟି କନ୍ଦର୍ପ ଲାବଣ୍ୟ ଜଳଧିମାନ ତାହାର କୌଣସି ଅଙ୍ଗମାନଙ୍କରୁ ଜାତ ହେଉଅଛୁ । କାମଦେବ, ଶେଷନାଗ, ସରସ୍ୱତୀ ଏମାନେ ତାହାର ରୂପ କହିବାକୁ ହୋଇବେ ଜଡ଼ମତି (୪) । ସେ କନ୍ୟାର ପାଦପଦ୍ମକୁ କୋଟି କୋଟି ଲକ୍ଷ୍ମୀ କାନ୍ତି (୫) ହେଉ ଅଛନ୍ତି । ଅମୃତ ପଦ୍ମର ପ୍ରାୟେକ ଆୟତନ ହୋଇ (୬) ତିନି ଚକ୍ଷୁ ଅଟଇ । ତିନି ଲୋକକୁ ତିନି ଦର୍ପଣର ପ୍ରାୟେକ ଦିଶୁଅଛୁ । ଜଗତ ତହିଁ ମେ ଅଛୁ (୭) । ଈଷତ୍‌ହାସ ମତେ ମୁଖ ଯେମନ୍ତ ଶୋଭା ପାଉ ଅଛୁ । ସକଳ ଜଗତର ଚକ୍ଷୁ ସେ ଆନନ୍ଦ-କଣିକା ମାତ୍ର ଦେଉଅଛୁ । ତାହାର ଅପାଙ୍ଗ ଲୋଚନେ ଯେଉଁ ସୁଖ ପାଇ, ମନ ବୃତ୍ତି ଗୋଚରେ ତାହାକୁ ନୁହଇଁ କହି । କୋଟିଏ ଯୁଗ ପକ୍ଷ୍ମ ହୋଇଲେ ସଙ୍କଏ ପ୍ରାୟେକ ମନି । ତାହାର ମୁଖକୁ ଚାହିଁ ଚାହିଁ ସେ ସମାଧିମଧ୍ୟେ ପୁରୁଷଚନ୍ଦ୍ର ଚକ୍ଷୁ ଦେଇଅଛୁ । ସେ କନ୍ୟା (୮) ତହିଁ, ସୂର୍ଯ୍ୟ ଚକ୍ଷୁ ଅଛୁ ଯୋଗ (୯) ଲୟେ ହୋଇ । ଅଗ୍ନି ଚକ୍ଷୁରେ (୧୦) କରି ଜଗତଯାକ ବ୍ୟାପିଅଛୁ ଅଚ୍ଛିଦ୍ର ହୋଇ । ସେ କନ୍ୟାର ଯେବେ ତିନି ଚକ୍ଷୁ ନୋହନ୍ତା, ପାର୍ବତୀ ଛାଡ଼ି ଯେବେ ଅନ୍ୟ ସ୍ତ୍ରୀ ହୋଥନ୍ତା; ସେ କନ୍ୟା ଯେବେ ମସ୍ତ (୧୧) ତଳେ ଆଆନ୍ତା, ତେବେ ସେ କନ୍ୟା ଜ୍ଞାନରୁଦ୍ରକୁ ଭଜନ ହୁଅନ୍ତା । ସେ ସ୍ଥାନ ସୂର୍ଯ୍ୟହୁଁ (୧୨) ଉପର ଅଟଇ । ତହୁଁ ସେ ପୁରୁଷକୁ ନମସ୍କାର କରି, ବ୍ରହ୍ମ ମାତୃକା ମତେ ଗ୍ରୁଣ୍ଡିଲି ତୋହର ପୁସ୍ତ । ଏମନ୍ତ ବଚନ ହୃତ କହିଲି ସହୁଁ । ଶୁଣି ରାଜାର ହର୍ଷ ନୋହିଲା ତହୁଁ (୧୩) । ଏ ଉତ୍ତରରେ ରାଜା ଚିନ୍ତା!

---

(୧) 'କ' ରେ ଅଚଳ ହୋଇ (୨) 'କ' ରେ ଛପିଅଛି (୩) 'ଖ' ରେ ଗୋଟାଏ ସ୍ତ୍ରୀ (୪) 'କ' ରେ ଅଯୁଗୁତ (୫) 'ଖ' ରେ ଜାତ (୬) 'ଖ' ରେ ହୋଇ ନାହିଁ (୭) 'ଖ' ରେ ଏହାପରେ ରଜନୀ ଦିବସ ସନ୍ଧ୍ୟା ଏ ତିନି କାଳ ତାହାର ତିନି ଚକ୍ଷୁ ଅଂଶକରେ ଅଛୁ । ଅଞ୍ଜନତତ୍ତ୍ୱ ଅଧିଷ୍ଠାତୀ ଯେ କାମଦେବ ସେ ଭୂମିଗତ ହୋଇ ହାତରୁ ଧନୁ ପକାଇଲା । ସେ ଧନୁ ତାର ଭ୍ରୂଲତା ହୋଇଅଛୁ । (୮) 'କ' ରେ କନ୍ୟାର (୯) 'କ' ରେ ଯୁଗ (୧୦) 'କ' ରେ ଚକ୍ଷୁଏ (୧୧) 'ଖ' ରେ ରବ (୧୨) 'କ' ରେ ସୂର୍ଯ୍ୟ ସ୍ଥାନ ହୁଁ (୧୩) 'କ' ରେ ରାଜା ଅତିଅନ୍ତ ସନ୍ତୋଷ ହୋଇଲେକ ତହୁଁ ।

Digitized by srujanika@gmail.com

ପାଇଲା । କୁମାର ସଦ୍ଗୁଣେ ତ କନ୍ୟା ମୋହିଲା । ଏବଂଭୂତ ବିଗ୍ରହ କରନ୍ତେ, କିଛୁ ଦିବସର ଅନ୍ତେ; କାମାନନ୍ଦ ବୋଲି ଯୋଗୀଏକ ପ୍ରବେଶ ହୋଇଲା । ସେ ଅତ୍ୟନ୍ତ ଅଦ୍ଭୁତେ । ସେ ଯୋଗୀ ଅଭିନବ ଯୁବା । କନ୍ଦର୍ପର ଆଭା । କି ଶୁକ୍ଳବାର ଶୋଭା । ତରୁଣ ସିଂହର ପ୍ରଭା । କି ମତ୍ତଗଜର ଲୀଳାଗତିକି ନିନ୍ଦି ଅଛୁ । କି ନାୟିକାମାନଙ୍କୁ କାମବାଣ ସାନ୍ଧି ଅଛୁ (୧) । ସମ୍ପୂର୍ଣ୍ଣ ଚନ୍ଦ୍ରମଣ୍ଡଳ ପ୍ରାୟେକି ମୁଖମଣ୍ଡଳ । କର୍ଣ୍ଣରେ ମୁଦ୍ରା ଦୁଇଗୋଟି ଶୋଭା ପାଉଅଛୁ । କି ଅମୃତମୟ ବେନି କୁଣ୍ଡଳ । ସେ ଯୋଗୀର ସଙ୍ଗତେ ଅଦୃଶ୍ୟ ହୋଇକରି ଭୂତ ପ୍ରେତ ପିଶାଚକ ବେତାଳ ଯକ୍ଷିଣୀ ମାତୃକାଚଣ୍ଡୀ ଆଦିକରି ସହିତେ ସମସ୍ତେ ବେଢ଼ିଅଛନ୍ତି, ରଜାଙ୍କୁ ଅମାତ୍ୟଗଣମାନେ ଯେମନ୍ତ । ସେ ଯୋଗୀ ସକଳ ବିଦ୍ୟା ଅଛୁ ସାଧି । ତିନି ଭୁବନକୁ ଜାଣିବାକୁ (୨) ଜାଣଇ ବୁଝି । ବହୁତ ଜାଣଇ କଳ୍ପ ମହୌଷଧି (୩) ।

ତେଂସେ କେବଣ କେବଣ କଳ୍ପମାନ କରିଅଛୁ । ହିମକଳ୍ପ, ଗନ୍ଧକକଳ୍ପ, ନାଗକଳ୍ପ, ରସକଳ୍ପ, ଅଭ୍ରକଳ୍ପ (୪) କର୍ପୂରକଳ୍ପ, ହିଗୁଣ୍ଡ୍ରୀକଳ୍ପ, ମଣିକଳ୍ପ, ବେଦନ୍ତୀକଳ୍ପ, କ୍ଷୀରକଳ୍ପ, ଧାଯୀକଳ୍ପ ଇତ୍ୟାଦି କରି ସକଳକଳ୍ପ ସାଧିଅଛୁ । କଳ୍ପଚିନ୍ତାମଣି ଗରୁଡ଼ପୁରାଣ, କଉରୁକ ଚିନ୍ତାମଣି, ବୌଦ୍ଧ ଆଗମାଦି କରି ଗ୍ରନ୍ଥ ପରିମାଣି ।

ତେ ଏବଂଭୂତ କଳ୍ପମାନଙ୍କୁ କରି, ବଳୀ ପଳିତ ନିବାରି, କାମଦେବର ପ୍ରାୟେକ (୫) ଶରୀର ଗୋଟିକ ଅଛୁ ଅତ୍ୟନ୍ତ ଯତ୍ନେ ଧରି । ତଦନ୍ତରେ ମଣିସାଧନ ସାଧିଅଛୁ । କେବଣ କେବଣ ମଣି ସାଧନ । ଜଳ ସ୍ତମ୍ଭନ ମଣି ଅଗ୍ନି ସ୍ତମ୍ଭନ ମଣି । ରସସ୍ତମ୍ଭନ ମଣି । ସୁବର୍ଣ୍ଣକରଣ ମଣି । ମୋହନ କରଣ ମଣି । ଉଲୂକ ମଣି । କୁହୁକ ମଣି (୬) । ଖେଚର ମଣି । କାମ ଗ୍ରହଣ ମଣି । ଅମୃତ ମଣି । ଅକାଠ ମଣି । ଉର୍ଦ୍ଧଗତି ମଣି ସର୍ବଦର୍ଶୀ ମଣି । ପାତାଳ ମଣି । ନିଧି ପ୍ରବେଶ ମଣି । ଦୃଷ୍ଟାଦୃଷ୍ଟ ମଣି । ଦୀପ ମଣି । ମଣ୍ଡୂକ (୭) ମଣି । ନାଗମଣି । ଶୋଷଣ ମଣି । ମୋହନ ମଣି । ଦିବ୍ୟ (୮) ମଣି ଇତ୍ୟାଦି କରି ସକଳ ମଣିମାନନ୍ତ ଅଛୁ ସାଧନ କରି । ମନ୍ତ୍ର (୯) ଚୂଡ଼ାମଣି ବୋଲି ଆଗମ ଶାସ୍ତ୍ରେ କରି (୧୦) ଅସାଧ୍ୟ ମାନନ୍ତ ଅଛୁ ସାଧନ କରି । କେବଣ କେବଣ ସାଧନ । କଳ୍ପତରୁ ସାଧନ । ଚିନ୍ତାମଣି ସାଧନ । ପଞ୍ଚ ଦକ୍ଷ ସାଧନ । ଗରୁଡ଼ ରୁଦ୍ରସାଧନ । ଚତୁର୍ଭୁଜ (୧୧) ସାଧନ । କାମଧେନୁ ସାଧନ ଆଦି କରି ସାଧନମାନନ୍ତ ଅଛୁ ସବୁ ସାଧି କରି । ତଦନ୍ତରେ ମଣିମନ୍ତ୍ର ମୁଦ୍ରାରେ ଶ୍ମଶାନ ଭୂମିରେ ମୁଣ୍ଡମାଳା ସ୍ଥାପି, ପୂଜାବିଧି କରି, ରକ୍ତ ମାଳାମ୍ବର ଧରି ଅଷ୍ଟ ବେତାଳଙ୍କୁ ସାଧି ଅଛୁ (୧୨) । ସମସ୍ତ ବିଦ୍ୟାକୁ (୧୩)

---

(୧) 'ଖ' ରେ ନାୟିକମାନଙ୍କୁ କି ପ୍ରତ୍ୟେକେ କାମବାଣ ବିନ୍ଧି ଅଛୁ (୨) 'ଖ' ରେ ଜିଣିମାକୁ (୩) 'ଖ'ରେ ମହୌଷଧି (୪) 'ଙ' ରେ ଗନ୍ଧକକଳ୍ପ (୫) 'ଖ'ରେ ସରୀକରି (୬) 'କ' ରେ ନାହିଁ (୭) 'କ' ରେ ମାଣ୍ଡୂକ (୮) 'କ' ରେ ଦ୍ରାବମଣି (୯) 'କ' ରେ ତନ୍ତ୍ର (୧୦) 'କ' ରେ ସାହାଯ୍ୟେ ପ୍ରମାଣେ କରି (୧୧) 'କ' ରେ ଚନ୍ଦ୍ର ସୂର୍ଯ୍ୟ (୧୨) 'କ' ରେ ସାଇଧି (୧୩) 'କ' ରେ ସକଳ ବିଦ୍ୟମାନ

Digitized by srujanika@gmail.com

ବାନ୍ଧିଅଛୁ । ତଦନନ୍ତରେ ମୃତ ଶବ ଭସ୍ମ ଅଗ୍ନିରେ, କଳାମେଣ୍ଢା ରୁଧିରେ ହୋମ କରି, ଭୂତଚକ୍ର ମଣ୍ଡଳ ବିମରି, ମରଯ ବସ୍ତ୍ର ଯନ୍ତ୍ର ଜଳ ପାଶ ଭୂର୍ଜ ଗଣ୍ଡି ଅଞ୍ଜଳି ମନ୍ତ୍ରି, ଭୂତମାନଙ୍କୁ ଭୃତ୍ୟ ପରିଏ ଭରି ବଶ କରିଅଛୁ । ତଦନ୍ତରେ ମୃତ ପିଣ୍ଡ ଉପରେ ପୂର୍ବାଭିମୁଖ ହୋଇ, ନଦୀକୂଳେ, ବଟ ବୃକ୍ଷର ମୂଳେ ମହାନିଶା କାଳେ ମନୁଷ୍ୟର ମୁଣ୍ଡ ମଣିମାଳା ଧରି, ବଳମଣ୍ଡଳ ପୂଜା କରି, ବାମଚକ୍ର ଆଚରି, ମହାଭୈରବ ଚଣ୍ଡିକ ଅଛୁ ମନ୍ତ୍ରବଳେ ବଶ କରି (୧) । ତଦନନ୍ତରେ ଚତୁଷଷ୍ଟୀ ଯୋଗ୍ନୀକ ସାଧିଲ । କେବଣ କେବଣ ପ୍ରକାରେ । ପ୍ରଥମେ ମାତୃକା ଶିବାନାମ ସୁର (୨) ସୁନ୍ଦରୀ ଯକ୍ଷିଣୀକ (୩) ଝଣମାସେ (୪) ସାଧିଲ । ପାଶରେ ଅନ୍ୟ ପ୍ରାସାଦ ନଥିବ । ଏବଂଭୂତ ଶମ୍ଭୁଆଳରେ ବସି, ସ୍ଫଟିକ ମାଳାରେ ଦ୍ୱାଦଶାକ୍ଷର ମନ୍ତ୍ର ପ୍ରକାଶି, ମହା ହବିଷ୍ୟ କରି, ମନବୃତ୍ତି ଦସ୍ତ୍ରୀ, ଇନ୍ଦ୍ର ସ୍ୱନ୍ତ୍ର ବସୁମି, ପରମ କାଷ୍ଠାମତେ, ଗୁଗୁଳ ଧୂପାଦ କରି, ପୂଜାହୋମ ଯୁକ୍ତେ, ମାତୃକା ଶିବାକୁ ଅଛୁ ମନ୍ତ୍ରର ବଳେ ବଶକରି । ତଦନନ୍ତରେ ସୁରଯା ନାମ ଯକ୍ଷିଣୀକ (୫) ଅଷ୍ଟାକ୍ଷର ମନ୍ତ୍ରେ, ଜାଳନ୍ଧର ତନ୍ତ୍ରେ, ଚନ୍ଦନ ଲେପନ ପଟେ; ବେଲବନ ନିକଟେ, ଶ୍ରୀଖଣ୍ଡନ ଲେପନ ଗାଢେ, ଶ୍ରୀଖଣ୍ଡ ଶୈଳେ ଜାତ କୁସୁମମାନେ, ସେ ନୀଳୋତ୍ପଳାକ୍ଷୀ (୬) ରତ ପ୍ରିୟାନାମ ଯକ୍ଷିଣୀଙ୍କ (୭) ତ୍ରିସନ୍ଧ୍ୟାପଟେ ପୂଜାବିଧାନେ ସାତଦିନେ ବଶକଲୁ । ସେ ଯକ୍ଷିଣୀ ସନ୍ଧ୍ୟେ ଚଣ୍ଡବାସ୍ତ ଯେନ ଦିବ୍ୟାଙ୍ଗନା ହୋଇ (୮) ମନ ହରଇ । ଦିବ୍ୟ ସୁରମାନ କଳ୍ପିଲେ କରଇ । ଦିବ୍ୟ ପଦାର୍ଥମାନ ମାଗିଲେ ଶୂନ୍ୟେ ଥାଇ ଦିଅଇ । ଉତ୍କଟ ଶୃଙ୍ଗାର ରସରେ ବଡ଼ ସୁଖ ପାଇ । ଦିନରେ ପଚାଶ (୯) ସୁବର୍ଣ୍ଣ ବନ୍ଧୁବାକୁ ଦିଅଇ । କୁଳାଙ୍ଗନା ପ୍ରାୟେ ହୋଇ ପାଖରେ ଶୁଅଇ । ତଦନ୍ତରେ ଶୁକ ପକ୍ଷୀର ପ୍ରାୟେକ ବର୍ଣ୍ଣ, କର୍ଣ୍ଣ ପିଶାଚୀ ନାମ ଯକ୍ଷିଣୀଙ୍କ, (୧୦) ନୀଳମଣି ମାଳାରେ ସନ୍ଧ୍ୟାକାଳରେ, ତୂତୁସ ବନରେ, କଞ୍ଚନ ପୁଷ୍ପରେ, ଏକପାଦସ୍ଥିତେ, ସର୍ବାଙ୍ଗଯାକ ଘୃତ ବ୍ୟାପୃତ (୧୧) କରି, ମଣିଷମୁଣ୍ଡ ପାଢେ, ଅପାମାର୍ଗ ବୃନ୍ତଲରେ ଏକବର୍ଣ୍ଣୀ ଗାଇ କ୍ଷୀରରେ ପାୟସ ଭକ୍ଷଣ କରି ସେ କର୍ଣ୍ଣ ପିଶାଚୀକ ଏବଂଭୂତ ପ୍ରକାରେ ବଶ କରିଅଛୁ ସାଧୁ । ଶଏ ଯୁଗର ବାରତା ଜାଣଇ ସୁଧୀ । ତଦନନ୍ତରେ ସର୍ବମନୋହାରିଣୀ ଯକ୍ଷିଣୀକୁ ଧୂମ୍ରବର୍ଣ୍ଣ ମନ୍ଦାକିନୀ ତଟରେ ମନ୍ଦାର ବନ ନିକଟରେ ମଧ୍ୟାହ୍ନ କାଳରେ ଏକାଦଶାକ୍ଷର ମନ୍ତ୍ରେ ନନ୍ଦନଗିରି, ମନ୍ଦାର ପୁଷ୍ପ, ସାଧନ ତନ୍ତ୍ରେ ହୁଂକାର ବୀଜେ ଶାର୍ଦ୍ଦୂଳ ଲଙ୍ଗୂଳ ଧ୍ୱଜେ ପୀଠ ଶକ୍ତିଏ ଏକାଗ୍ର ଭକ୍ତିଏ ଚତୁର୍ଦ୍ଦଳ କମଳେ ଲିଙ୍ଗ ନ୍ୟାସ ମନ୍ତ୍ରେ କରି ଏହାକୁ ସାଧିଲ । ଏ ସମସ୍ତ ଜଗତରେ ଦେବ, ଗନ୍ଧର୍ବ, ଯକ୍ଷ, କିନ୍ନର, ମନୁଷ୍ୟ ମହୋରଗାଦ (୧୨) କରି ସମସ୍ତ ଭୂତମାନଙ୍କର ଚକ୍ଷୁ

(୧) 'ଖ'ରେ ତଦନ୍ତରେ ମୃତପିଣ୍ଡଠାରୁ ଧରି କରି ପର୍ଯ୍ୟନ୍ତ ନାହିଁ । (୨) 'ଖ' ଶୁଭ (୩) 'ଖ'ରେ ଯକ୍ଷିଣୀକ (୪) 'କ'ରେ କଷ୍ଟମାସେ (୫) 'ଖ' ରେ ଯକ୍ଷିଣୀକ (୬) 'ଖ'ରେ ନୀଳୋତ୍ପଳଧାରିଣୀ (୭) 'ଖ' ରେ ସ୍ୱର୍ଗୀ ଯକ୍ଷିଣୀଙ୍କ (୮) 'ଖ'ରେ ଦିବ୍ୟାଙ୍ଗନା ହୋଇ ନାହିଁ (୯) 'ଖ' ରେ ପଞ୍ଚଶି (୧୦) 'ଖ' ରେ ଯକ୍ଷିଣୀକ (୧୧) 'ଖ' ରେ' ବ୍ୟାପିତ (୧୨) 'ଖ' ରେ ମନୋରମାଦ

Digitized by srujanika@gmail.com

ମୋହ ବଶ କରିପାରଇ । ତଦନନ୍ତରେ କମଳିନୀ ନାମ ଯକ୍ଷିଣୀଙ୍କ ପଦ୍ମ ପୁଷ୍କର ମାଳେ କମଳ ବନ ଥାନ୍ତି ସରୋବର କୂଳେ ନାଭିକମଳ ସ୍ଥିତ (୧) ପାଣିରେ କମଳମାଳାଭରଣରେ ଅଷ୍ଟାକ୍ଷର ମନ୍ତ୍ରେ ଆଗମତନ୍ତ୍ରେ ମଣ୍ଡଳ-କ୍ଷେତ୍ରରେ ତ୍ରିକୋଣପୀଠ ଯୁକ୍ତ ଅନୁସ୍ୱାର ଯୁକ୍ତ ଯୋନିରେ ଭବ ବୀଜେ କରି କମଳ ମୃଣାଳ ଆହାର ଆଚରି ଅଷ୍ଟଦଳ କମଳେ କରି ପୂଜିଲା । କମଳିନୀ ନାମ ଯକ୍ଷିଣୀଙ୍କ (୨) ସେ ଅଷ୍ଟ ଦଳରେ ଭଜିଲା । ସେ ଅନେକ ଧନରତ୍ନମାନଙ୍କୁ ଦେଇ ପାରନ୍ତି । ଏମନ୍ତେ ସେ ଉପସର୍ପାନାମ ଯକ୍ଷିଣୀଙ୍କ (୩) ନୀଳଗନ୍ଧଲେପି ନୀଳବସ୍ତ୍ର ପିନ୍ଧି ନୀଳମଣି ଲଗି (୪) ଅଞ୍ଜନର ପ୍ରତିମାକରି ନୀଳତିଳେକ (୫) ବାହୁଡ଼ା ସମିଧରେ ହୋମକରି, ନୀଳ ଜମ୍ବୁଫଳ ନୀଳଉତ୍ପଳ ନୈବେଦ୍ୟ ଦେଇ ଦ୍ୱାଦଶାକ୍ଷର ମନ୍ତ୍ରେ, ଆଗମତନ୍ତ୍ରେ ବ୍ରତେକ ଯନ୍ତ୍ରେ କରି ସାଧନ କରିବାର ବେଳେ ରଥ, ଗଜ, ଅଶ୍ୱ, ପଦାତି, ସିଂହାସନ, ଦୋଳାଦିକରି ବିବିଧ ଚମତ୍କାର ପଦାର୍ଥ(୬)ମାନ ଦେଖାଇ ପାରନ୍ତି ଅତ୍ୟନ୍ତ କୁତୂହଳେ । ଏମନ୍ତେ ସର୍ପିଣୀ, ମାତଙ୍ଗୀ, କର୍ଣ୍ଣ ପିଶାଚୀ, ହଂସମନୋହାରୀ କମଳିନୀ, ଉପସର୍ପା, ଦର୍ଶିନୀ, ବେତାଳୀ, ମୋହିନୀ, ଜାଳନ୍ଧରୀ, ବିନ୍ଦୁପାକ୍ଷୀ, ସିଦ୍ଧମାତା, ଭଣ୍ଡୀ, ସୁରସୁନ୍ଦରୀ ସହିତକରି, ଚତୁଃଷଷ୍ଟି ଯୋଗିନୀଙ୍କ ଅଛନ୍ତି ସାଧି । ସମସ୍ତ ଚମତ୍କାରମାନଙ୍କୁ ଜାଣଇ ବୃଦ୍ଧି ।

ଏବେ ବ୍ରହ୍ମକୁମାର ଚଣ୍ଡି, ମାଗୁଣି ଚଣ୍ଡି, ଉତ୍କ୍ରିଷ୍ଟ ଚଣ୍ଡି, ଚରଣ ଗିରିଚଣ୍ଡି (୭) ଏମନେ ଧରିଥାନ୍ତି; ଷାଠିଏ ଷାଠିଏ ଗୋଟାଦଣ୍ଡ (୮) ଏହାଙ୍କୁ ପ୍ରକୃତିମତେ ବିବିଧ ଯନ୍ତ୍ରେ ପୂଜାକରି, ବଶକରି ସମସ୍ତ କଉତୁକମାନ କରି ପାରନ୍ତି । ଯାହା ମନେ ଧରି ତାହା ଜାଣି ପାରଇ । ଏମନ୍ତେ ଅବଳା, ତ୍ରିପୁରା, ତ୍ରିପୁର ସୁନ୍ଦରୀ, ଭୁବନେଶ୍ୱରୀ ସହିତ କରି ସମସ୍ତ ଦେବୀମାନଙ୍କୁ କରିଅଛନ୍ତି ଯତ୍ନେ । ହୋମ ମନ୍ତ୍ର ଯନ୍ତ୍ର ତନ୍ତ୍ରର ବଳେ କରିଅଛନ୍ତି ପ୍ରସନ୍ନ । ଉଦ୍ୟଦ୍ଦ୍ୟୁମଣି ଦ୍ୟୁତିବନ୍ଦୁ କରିଟିଂତୁଂଗ କୁଚାଂନୟନ ତ୍ରୟଯୁକ୍ତାଂ । ସ୍ମେରମୁଖୀଂ ବରଦାଙ୍କୁଶ ପାଶ ଶୋଭିତ କରାଂ, ପ୍ରଭଜେଭୁବନେଶ୍ୱରୀଂ । ଏବଂଭୂତ ଧ୍ୟାନେ; ଏକାକ୍ଷର ମନ୍ତ୍ର ପ୍ରସନ୍ନେ, ସୁରା ମାଂସ ବଳିଯୁକ୍ତେ ଦେଲେ ସନ୍ଧ୍ୟାଁ, ଲାକିନୀ, କାକିନୀ; ହାକିନୀ, ଡାକିନୀ, ବାକିନୀଏ ସହିତେ ଷଟ୍‌ଚକ୍ର ଅଧିଷ୍ଠାତ୍ରୀ ଷଟ୍‌ଶକ୍ତି ଭୁବନେଶ୍ୱରୀ ସହିତେ କରି ପ୍ରସନ୍ନ ହୋଇଲେ ତହୁଁ । ଭୁବନେଶ୍ୱରୀ ଅତିଅନ୍ତ ପ୍ରସନ୍ନ ହୋଇ । ଖଣ୍ଡଇନ୍ଦୁଯୁକ୍ତ ମୁକୁଟେକ ଲଭି, ଇନ୍ଦ୍ରାଧିବାସେ ଯୁକ୍ତ ହୋଇ ପ୍ରସନ୍ନ ବଦନେ ବୋଇଲା । ହେ କାମାନନ୍ଦ ତୋହର ବାଞ୍ଛା ସିଦ୍ଧି ହୋଇଲା । ଯୋଗୀ ସାଷ୍ଟାଙ୍ଗେ ପାଦରେ ପ୍ରଣାମ କରି କରପଦ୍ମ ଯୋଡ଼ି ଜଣାଇଲା । ହେ ମାତା ତୁ ଯେବେ ମୋତେ ହୋଇଲୁ ପ୍ରସନ୍ନ, ନିଶ୍ଚୟେ ଅମୃତ

---

(୧) 'ଖ'ରେ ପର୍ଯ୍ୟନ୍ତେ ସ୍ଥିତ (୨) 'ଖ'ରେ ଦ୍ରାକ୍ଷିଣୀଙ୍କ (୩) 'ଖ'ରେ ଦ୍ରାକ୍ଷିଣୀଙ୍କ (୪) 'କ'ରେ ନୀଳମଣିମାଳା (୫) 'ଖ'ରେ ନଦୀନୀଳେ (୬) 'ଖ'ରେ ପଦାର୍ଥ ନାହିଁ (୭) 'ଖ'ରେ ଗିଳାଚଣ୍ଡି (୮) 'ଖ'ରେ କନକ ଦଣ୍ଡ ।

Digitized by srujanika@gmail.com

ଆଦରକରି କରିବେ ଆପ୍ୟାନ । ଏହାଶୁଣି ସେ ଗୋସାମଣି ବୋଇଲ ବର ମାଗ । ଯୋଗୀ ବୋଇଲ ପରମଶ୍ରେଷ୍ଠ ଦେ । ଭୁବନେଶ୍ୱରୀ ବୋଇଲ ପରମ ଶ୍ରେଷ୍ଠ ମୋକ୍ଷ-ସ୍ଥିନା । ସେ ମୋହର ଅଧିକାର ନୁହଇ । ତାହା ଶ୍ରୀକୃଷ୍ଣ ବ୍ୟତିରେକେ ଆନ ଦେଇ ନ ପାରଇ । ମୁଁ ତୋତେ ଉପଦେଶ ଦେବି ତୁ ମୋକ୍ଷ ହୋ । ଯୋଗୀ ବୋଇଲ ମୋକ୍ଷ କେମନ୍ତ । ଭୁବନେଶ୍ୱରୀ ବୋଇଲେ ସର୍ବର୍ଗ ହିଁ ନାହିଁ । କ୍ରିୟାହିଁ ନାହିଁ । ମନବୁଦ୍ଧି ନାହିଁ । ମୁହିଁ ମୋହର ନାହିଁ ଅହଂକାର ନାହିଁ । ଜ୍ଞାନ'ଜ୍ଞାନ ନାହିଁ ଜାଗ୍ରତ ସ୍ୱପ୍ନ ନାହିଁ । କେବଳ ସତ୍ତ୍ୱମାତ୍ର । ଆନନ୍ଦ ଘନ ନିବିଡ଼ ବୋଧ ସ୍ୱରୂପ । ତୁରୀୟାତୀତ, ଚୈତନ୍ୟ ମାତ୍ର ବ୍ୟାପୀ, ସତ୍ୟ, ନିତ୍ୟ, ଅନନ୍ତ । ତ୍ରୟକାଳ ସ୍ଥାୟୀ ପୂର୍ଣ୍ଣବ୍ରହ୍ମ (୧) ସନାତନ । ଏବଂଭୂତ ଦଶାକୁ ହାଦେ ମୋକ୍ଷ ବୋଲି । ଯୋଗୀ ବୋଇଲ ଏ ମୋକ୍ଷରେ ବିଷୟ ରସ ଅଛନ୍ତି କି । ଦିବ୍ୟ ପଦାର୍ଥମାନ ଖାଇବାକୁ ମିଳଇଟି କି, ଦିବ୍ୟ ସ୍ତ୍ରୀମାନ ଭୋଗ କରିବାକୁ ମିଳଇଟି କି । ଦିବ୍ୟ ପୁରମାନଙ୍କରେ କ୍ରୀଡ଼ାକରିଟି କି । ଦିବ୍ୟବସ୍ତୁ ମାନ ମିଳଇଟି କି । ଏହାଶୁଣି ଗୋସାମଣି ବୋଇଲେ କିଛି ଅଜ୍ଞାନ ନରକ ଏ । ଶ୍ରୋତୁ, ଶ୍ରବଣ, ଶ୍ରୋତା, ଦ୍ରଷ୍ଟା ଦର୍ଶନ, କିଛିହିଁ ନାହିଁ । ଏଥି ଅବିଦ୍ୟା ପ୍ରପଞ୍ଚ ଭ୍ରମ ଥିବ କାହିଁ । ଏହାଶୁଣି ଯୋଗୀ ବୋଇଲ ମୋହର ମୋକ୍ଷରେ କାର୍ଯ୍ୟନାହିଁ । ବିଷୟ ରସ ବ୍ୟତିକେ (୨) ଆନନ୍ଦ ଅବା ଅଛୁ କାହିଁ । ବିଷୟ ଆନନ୍ଦ ହିଁ ସେ ସୁଖ । ସୁଖ ହିଁ ସେ ଜ୍ଞାନ । ନୋହିଲେ କେମନ୍ତେ ଖଣ୍ଡେନ୍ଦୁ ଚୂଡ଼ାମଣି । ଅର୍ଦ୍ଧାଙ୍ଗେ ଅଛନ୍ତି ହିମାଳୟନନ୍ଦନୀ । ଆପଣେ ସୁଖ ପାଉଅଛୁ । ଜଗତକୁ ବିଡ଼ମ୍ବି (୩) ଭଣ୍ଡାଇବା ନିମିତ୍ତ ସ୍ତ୍ରୀ ବସ୍ତୁ ଅଜ୍ଞାନ ବୋଲି କହୁଅଛୁ । ଉପବାସେ ଥାଇ । ଖରକାକର ଖାଇ । ସଙ୍ଗ ନ ଦେଖି । ଅରଣ୍ୟ ଭୂମିରେ ଥାଇ । ଏକ ଅବା କାହିଁଅଛୁ ଆନନ୍ଦ ସୁଖପାଇ । ଦିବ୍ୟ ହେମ ଘରେ । ସୁଲୋଚନା ମଣ୍ଡଳରେ । ଚନ୍ଦ୍ରଜ୍ୟୋସ୍ନାରେ । ଉଜ୍ଜ୍ୱଳ ରଜନୀରେ । ଚନ୍ଦନ ଲେପନ ଗାତ୍ରରେ । ମନ୍ଦ ମନ୍ଦ ପବନରେ । ବୀଣା ଶ୍ରବଣରେ । କୁସୁମୋଦିତ ଉପବନରେ । ମଳୟ ମନ୍ଦ ପବନରେ, ନିବିଡ଼ ଆଲିଙ୍ଗନରେ, ମୃଗଦୃଶାର ପ୍ରେମ ପ୍ରସନ୍ନ ମୁଖ ଦର୍ଶନେ । କେ ଅବା ନ ପାଇବଟି ପରମ ସୁଖ ଏସନେ । ମୋହ ମତେ । ବିଷୟ ହିତେ । ବୋଧଜ୍ଞାନ । ଏଥିଉତ୍ତରେ କେ ନୋହିଇ ଜ୍ଞାନ । ତୁମ୍ଭେ ଯେ ମୋତେ ମାତା ଦେବ ବର । ପ୍ରସନ୍ନ ହୋଇ ଅନୁଗ୍ରହ କର । ଯାହା ମାଗିବି ତାହା ସାବଧାନ କର । ହାଦେ ଏହି ଦେହ ମୋହର ସର୍ବଦା ଯୁବା ହୋଇ ଆରୋଗ୍ୟରେ ଥିବ । ସକଳ ଭୋଗମାନ କଲେ ବାଧକ ନୋହିବ । ସହସ୍ରେ ସ୍ତ୍ରୀ ଭୋଗକଲେ ହେଁ ସହିବ । ସମସ୍ତ ପଦାର୍ଥମାନ ଖାଇଲେ ହେଁ ଦହିବ । ଯହିଁକି ଇଚ୍ଛା ମୋହର ତହିଁକି ଯିବ । ମନେ କଳ୍ପିଲେ ଭୋଗମାନ ପାଇବ । ପ୍ରଳୟ ଅଗ୍ନିରେ ଦହି ନୋହିବ । ଦିବ୍ୟ ସ୍ତ୍ରୀମାନଙ୍କୁ

(୧) 'ଖ'ରେ ତ୍ରୟକାଳ ସ୍ଥିତ ଶବଦ ସ୍ୱରୂପ ଅପୂର୍ଣ୍ଣ ବ୍ରହ୍ମ (୨) 'ଖ'ରେ ବ୍ୟତିରେକେ (୩) 'ଖ'ରେ ନାହିଁ ।

Digitized by srujanika@gmail.com

ମଦନରସେ ଭୋଗ କରିବାକୁ ପାଇବ । [illegible]ର ପରେ ସମସ୍ତଙ୍କୁ ମୋହିବ । ତୋ ଅନୁଗ୍ରହ ହେଲେ ହେ ମାତଃ ! ଏ ବର ପାଇବ । ଏମନ୍ତ ବର ମାଗିଲ୍ ସନ୍ତୁ । ମହାମାୟା ଟହଟହ ହୋଇ ହସିଲ ଛନ୍ତି । ବୋଇଲେ, ହେ ପୁତ୍ର ! ଅବିଦ୍ୟାର ବଳେ କାମଦେଶକୁ ଯାଉଅଛୁ ସନ୍ତି । ଇନ୍ଦ୍ରିୟ ଲାଳସ ବର ମାଗିଲୁ ଛନ୍ତି । ହାତେ ଏମନ୍ତ ଯୋଗ ସାଧନରେ ସେ ହୋଇ । ତୁ ଏବେ ଯୋଗ ସାଧନ କର । ଏମନ୍ତ ବୋଲି ମହାମାୟା ଯୋଗୀଙ୍କ ଯୋଗ ସାଧନା କହୁଅଛି । ପୂର୍ବେ ସ୍ଫଟିକ ମଣ୍ଡପେ ବସି, ଈଶ୍ୱର କୋଳେ ପଶି ଶୁଣିଲି ଯାହା । ପ୍ରସନ୍ନ ହୋଇଲି ତୋତେ କହିବି ତାହା । ଏହି ସାଧନ ଆଶ୍ରେକଲେ ତୁ ଯେତେ କହିଲୁ ତହିଁରୁ ବଡ଼ କଥାମାନ ହେବ ଅବହେଲେ । ହାଦେ ପ୍ରଥମେ ମହାବ୍ରାହ୍ମ ମୁହୂର୍ତ୍ତି ଜାଣି ନିଦ୍ରାରୁ ଉଠିବୁ । ଉଠି ଅନ୍ତ ପଖାଳନ ସାରିବୁ ।

କେବଣ କେବଣ ପଖାଳ, ଚନ୍ଦ୍ର ସର୍ଯ୍ୟ ପଖାଳ, ନାଗାର୍ଜ୍ଜୁନ ପଖାଳ, ଜଳପୁରକ ପଖାଳ, ଘଟିକା ଶ୍ରବଣ ପଖାଳ, ହିରଣ୍ଣ ପଖାଳ, ମଳଖଣ୍ଡ ପଖାଳ, ନାଭିଚକ୍ର ପଖାଳ (୧) । ଏବଂଭୂତ ପ୍ରକାରେ ପଖାଳ ମାନନ୍ତ ଦାଶ, ଶୀତ ଉଷ୍ଣ ଲେପନ ହୋଇ, କଳ୍ପ ଔଷଧ ଖାଇବୁ । ସୂର୍ଯ୍ୟକୁ ଧ୍ୟାୟି ଦିବ୍ୟ କୋମଳ ଆସନରେ ବସିବୁ ।

ଆସନ ଯୋଗ ଚଉରାଶି ଖଣ୍ଡ (୨) ହୋଇ । କେବଣ କେବଣ ଆସନ । ପ୍ରଥମେ ସିଦ୍ଧାସନ, କୁମୁଦାସନ, କୋମଳାସନ, ବଜ୍ରାସନ, ବୀରାସନ, ସୁଖାସନ, ଚକ୍ରାସନ, ଚନ୍ଦ୍ରାସନ, ଶୀର୍ଷାସନ, ପଦ୍ମାସନ, ଧନୁରାସନ, କୂଳାସନ, ଭେକାସନ, କମଠାସନ, ଭଦ୍ରାସନ, ସ୍ୱସ୍ତିକାସନ, ଇତ୍ୟାଦି ଚୌରାଶି ଆସନର ମଧ୍ୟେ ଯାହା ଯେତେପାରୁ, ଏଥି ଚାରି ଆସନ ଶ୍ରେଷ୍ଠ ହୋଇ । ସେ କେବଣ କେବଣ ଆସନ—ପଦ୍ମାସନ, ଭଦ୍ରାସନ, ସ୍ୱସ୍ତିକାସନ, ସିଦ୍ଧାସନ, (୩) ଏମନ୍ତ ପ୍ରକାରେ ସିଦ୍ଧାସନେ ବସିବୁ । ଏ ସିଦ୍ଧାସନ କେମନ୍ତ । ବାମପାଦ ଅଗ୍ର ଜାନୁରେ ଦୃଢ଼କରି ନିବେଶିବୁ । ଦକ୍ଷିଣପାଦ ବୃଷଣ ଉପରେ ସ୍ଥାପିବୁ । ସ୍ଥାପି ସ୍ଥିରହୋଇ ରହିବୁ । କଣ୍ଠ ହୃଦୟ ନାଭି ସବୁ ଦଣ୍ଡବତ କରି ଧରିବୁ । ଅଧ ଉଚ୍ଚ ଅତି ନୀଚ ନୋହିବୁ । ମୂଳକମଳ ଚୁମ୍ବିବୁ । କର କମଳ (୪) ବାନ୍ଧିବୁ । ଚିବୁକ ହୃଦୟରେ ସନ୍ଧିବୁ । ବଙ୍କାନାଳ ଆକୋଚିବୁ । କୁକ୍ଷି ଦୁଇ ଅନ୍ୟୋନ୍ୟ ହସ୍ତରେ ସଂକୋଚିବୁ । ଦୃଷ୍ଟି ନାସାଗ୍ରେ ଦେବୁ । ଅପାନ ପବନ ଘରକୁ ଧ୍ୟାୟିବୁ । କମଳ ଅନ୍ତରେ ମଧନାଦ ଜାତ କରିବୁ । ପ୍ରାଣ ପବନକୁ ସ୍ଥିର କରି ହୃଦୟରେ ଧରିବୁ । ଏମନ୍ତ ଭାବକୁ ସାଧନା ଯୋଗ ବୋଲି । ଏଥି ଉତ୍ତାରେ ଅଷ୍ଟାଦଶ ବନ୍ଧ ଅଛି । କେବଣ କେବଣ ବନ୍ଧ । ମତ୍ସ୍ୟନ୍ଦ୍ରାଙ୍କ କେଶରୀ ବନ୍ଧ ଓଡ୍ଡିଆଣି ବନ୍ଧ, ଜାଳନ୍ଧରୀ ବନ୍ଧ, ଗ୍ରାମ ବନ୍ଧ, ଭୈରବ ବନ୍ଧ, ହିକୁଟ ବନ୍ଧ, ବୃଷମ ବନ୍ଧ, ଖେଚରୀମୁଦ୍ରା ବନ୍ଧ, ବିପରୀତ ବନ୍ଧ ଇତ୍ୟାଦି ଅଷ୍ଟାଦଶ ବନ୍ଧ ମଧ୍ୟରେ ମତ୍ସ୍ୟମାତ୍ରଙ୍କ କେଶରୀ ବନ୍ଧ, ଓଡ୍ଡିଆଣି

(୧) 'କ'ରେ ନାହିଁ । (୨) 'କ'ରେ ଚଉଷଠି ଖଣ୍ଡ (୩) 'କ'ରେ ଏଥୁ ଯାହା ଯେତେପାରୁ ଅଧିକା । (୪) 'କ' ହିକମଳ ।

Digitized by srujanika@gmail.com

ବନ୍ଧ, ଜାଳନ୍ଧର ବନ୍ଧ ଏ ତିନି ବନ୍ଧ କରିବ । ପୁଣି 'ଚତୁଃଷଷ୍ଟି' ମୁଦ୍ରା ଅଛି । ସେ ମୁଦ୍ରାମାନେ କେ କେ । ଉଦସ୍ୱା ମୁଦ୍ରା, ଉଲ୍ଲାସ ମୁଦ୍ରା, ଖେଚରୀ ମୁଦ୍ରା, ଗଗନ ମୁଦ୍ରା, ପରମ ମୁଦ୍ରା, ଶଙ୍ଖିନୀ ମୁଦ୍ରା, ସନ୍ତବ ମୁଦ୍ରା, ଭୈରବୀ ମୁଦ୍ରା, ଅମୃତ ମୁଦ୍ରା, କାପାଳୀ ମୁଦ୍ରା, ମୂଳମୁଖ ମୁଦ୍ରା, ଓଲଟ ମୁଦ୍ରା, ବିକଟ ମୁଦ୍ରା, ମହାଦ୍ରଷ୍ଟା ମୁଦ୍ରା, ତନସ୍ଥ ମୁଦ୍ରା, ତଳସ୍ଥ ମୁଦ୍ରା, ଭୂବି ମୁଦ୍ରା, ଅର୍ଦ୍ଧ ମୁଦ୍ରା, ଊର୍ଦ୍ଧ୍ୱ ମୁଦ୍ରା । ଇତ୍ୟାଦି କରି ଚତୁଃଷଷ୍ଟି ମୁଦ୍ରାରୁ, ଖେଚରୀ, ସମ୍ଭବୀ, ଅମୃତ, ଭୂବି, ଏ ଚାରି ମୁଦ୍ରା ଘେନିବ । ଘେନି ଖେଚରୀ ସ୍ଥାନେ ଜିହ୍ୱା କ୍ଷେପିବ । ଊର୍ଦ୍ଧ୍ୱ ଧୂମ୍ର ଜ୍ୟୋତି ଜ୍ୱାଳା ନିବାରିବ । ଚନ୍ଦ୍ରକଳା ନ ଯାଇବ । ଅମୃତ ପାନ କରିବ । ସାମ୍ଭବି କଳାରେ କରି ଶରୀରଯାକେ ପୂରିବ । ଏ ଚାରି ମୁଦ୍ରା ଘେନିବ । ଏ ଚାରି ମୁଦ୍ରା ଭଳି ଉତ୍ତାରେ ଏ ଶରୀର ଯେଉଁଠାରେ ଅଛି ଯାତ୍ରଏ ବ୍ୟେପଣ କରିବ । କେବଣ କେବଣ ପ୍ରକାରେ—ପ୍ରଥମେ ପାଦ ତଳିକ ରସାତଳ ବୋଲି । ପାଦର ବୁଢା ଆଙ୍ଗୁଳିକି ଧୂମ୍ରବର୍ଣ୍ଣ ଆକାଶ ବୋଲି କଳ୍ପିବ । ତଦୁପରି ମହାତଳ ବୋଲି । ପାଦକଳିକ ନୀଳାକାଶ ବୋଲି କଳ୍ପିବ । ନୀଳବର୍ଣ୍ଣ ରୂପେ ଦେବତା ଅଧିଷ୍ଠାନୀ ତଦୁପରି ଅଙ୍ଗିକ ତଳାତଳ ବୋଲି । ତାହା ପବନ ସ୍ୱରୂପ କରି କଳ୍ପିବ ପୀତ ସ୍ୱରୂପ କରି । ତହିଁ ଖଡ୍‌ଗଣ୍ଠିକି (୧) ସୁତଳ ବୋଲି । ଏହା ଜଳମସ୍ତ କରି ଦେଖିବ । ଏ ଜଳମସ୍ତ ଜଡ଼ ଆବର୍ତ୍ତ ଅଟଇ । ତଦୁପରି ଅଣ୍ଟୁ ଖୋଲକୁ ବିତଳ ବୋଲି । ଏ ବିତଳେ ବିଶ୍ୱନାଥ ଆକାଶେ ବସନ୍ତି । ଏ ବିପଶ୍ଚିତ ଲୋକ । ଏ ସମସ୍ତେ ତହିଁ ପାଦ ଊର୍ଦ୍ଧ୍ୱ ଶିର ତଳକୁ ଅଟଇ । ତଦୁପରି ଆଣ୍ଠୁକୁ ଅତଳ ବୋଲି । ଏଠେ ଚକ୍ରପୀଠ ବସଇ । ତଦୁପରି ଜାନୁକୁ ପାତାଳ ବୋଲି । ଏଠାରେ ନାଗ ଲୋକ (୨) ବସଇ । ତଦୁପରି ପାତାଳ ଦ୍ୱାର ବସଇ । ତଦୁପରି ମୂଳକମଳ ବସଇ, ମୂଳକମଳ ଉପରେ କନ୍ଦସ୍ଥାନ ବସଇ । କନ୍ଦସ୍ଥାନ ଉପରେ ଜ୍ୟୋତି ଚକ୍ର ବସଇ । ଜ୍ୟୋତିଚକ୍ର ଉପରେ ସ୍ୱାଧୀଷ୍ଠାନ ବସଇ, ସ୍ୱାଧୀଷ୍ଠାନ ଉପରେ ଊର୍ଦ୍ଧ୍ୱ (୩) କାଳସର୍ପ ବସଇ । ଊର୍ଦ୍ଧ୍ୱ କାଳ ସର୍ପ ଉପରେ ତିନି ତିହୁଡ଼ି (୪) ବସଇ । ତିନି ତିହୁଡ଼ି ଉପରେ ବଙ୍କାନାଳ ବସଇ । ବଙ୍କାନାଳ ଉପରେ ମଳଖଣ୍ଡ ବସଇ । ମଳଖଣ୍ଡ ଉପରେ ନାଡ଼ୀଚକ୍ର ବସଇ । ନାଡ଼ୀଚକ୍ର ଉପରେ କୁଣ୍ଡଳିନୀ ବସଇ । କୁଣ୍ଡଳିନୀ ଉପରେ ତ୍ରିକୂଟ ଯନ୍ତ୍ର ବସଇ । ତ୍ରିକୂଟ ଯନ୍ତ୍ର ଉପରେ ନାଭିକମଳ ବସଇ । ନାଭିକମଳ ଉପରେ ଅଗ୍ନିମଣ୍ଡଳ ବସଇ । ଅଗ୍ନିମଣ୍ଡଳ ଅନ୍ତର୍ଗତେ ବଡ଼ବାଗ୍ନି ବସଇ । ସେ ବଡ଼ବାଗ୍ନିକି ବେଢ଼ି ସାତ ସମୁଦ୍ର ବସଇ । ତହିଁ ଉପରେ ଅନ୍ତରୀକ୍ଷ ଲୋକ ବସଇ । ପଶ୍ଚିମ ଭାଗେ ମେରୁ ବସଇ । ସେ ମେରୁର ପାର୍ଶ୍ୱରେ ସର୍ଗଲକ୍ଷ (୫) ବସଇ । ସର୍ଗଲକ୍ଷ ଉପରେ ବାୟୁଲୋକ ବସଇ । ବାୟୁଲୋକ ଉପରେ ଅଷ୍ଟଦଳ ବସଇ । ଅଷ୍ଟଦଳ ଉପରେ

---

(୧) 'କ' ରେ ଖଡ୍‌ଗଣ୍ଠି (୨) 'ଖ' ରେ ନାଦଚକ୍ର (୩) 'କ' ରେ ଅର୍ଦ୍ଧ
(୪) 'କ'ରେ ତିନି ତିହୁଡ଼ି ବସଇ ନାହିଁ । (୫) 'ଖ' ରେ ସର୍ବାଲକ୍ଷ ।

Digitized by srujanika@gmail.com

ସୋମ ସୂର୍ଯ୍ୟାଗ୍ନି ମଣ୍ଡଳ ବସଇ । ଏଥେ ଆଦ୍ୟ ଲୋକ ବସଇ । ତଦୁପରି ଗନ୍ଧର୍ବ ଲୋକ ବସଇ । ଗନ୍ଧର୍ବ ଲୋକ ଉପରେ ନକ୍ଷତ୍ର ଲୋକ ବସଇ । ନକ୍ଷତ୍ର ଲୋକ ଉପରେ ଚନ୍ଦ୍ରଲୋକ ବସଇ, ଚନ୍ଦ୍ରଲୋକ ଉପରେ ଦେବଲୋକ ବସଇ । ଦ୍ୱାଦଶ ଦଳ ଉପରେ ବିଷ୍ଣୁ ବସଇ । ତଦୁପରି ଜନଲୋକ ବସଇ । ଜନଲୋକ କଣ୍ଠ ଦେଶକୁ ବୋଲି । ଏ ଷୋଡ଼ଶରେ ନାଦ ଗ୍ରହଣୀ ସରସ୍ୱତୀ ବସଇ । ତଦୁପରି ତଳପାଟି ତପଲୋକ ବସଇ । ତଦୁପରି ଘଣ୍ଟିକା ବସଇ । ଘଣ୍ଟିକା ଉପରେ ଲମ୍ବିକା ବସଇ । ଲମ୍ବିକା ଉପରେ ତାଳୁଚକ୍ର ବସଇ । ତାଳୁଚକ୍ର ଉପରେ ଊର୍ଦ୍ଧ୍ୱକାଳ ଗ୍ରନ୍ଥି ବସଇ । ଊର୍ଦ୍ଧ୍ୱକାଳ ଗ୍ରନ୍ଥି ଉପରେ ତ୍ରିବେଣୀ ସଙ୍ଗମ ବସଇ । ତ୍ରିବେଣୀ ସଙ୍ଗମ ଉପରେ କାଉଁସ୍ଥମଣ୍ଡଳ (୧) ବସଇ । କାଉଁସ୍ଥ (୨) ମଣ୍ଡଳ ଉପରେ ଶ୍ରୀହାଟ (୩) ପାଟଣା ବସଇ । ଶ୍ରୀହାଟ (୪) ପାଟଣା ଉପରେ ଭବଦେଶ (୫) ବସଇ । ଭବଦେଶ (୬) ଉପରେ ପରମହଂସ ବସଇ । ପରମ ହଂସ ଉପରେ ଶ୍ୱେତମଣ୍ଡଳ ବସଇ । ଶ୍ୱେତମଣ୍ଡଳ ଉପରେ ଜ୍ୟୋତିର୍ଲୋକ ବସଇ । ଜ୍ୟୋତିର୍ଲୋକ ଉପରେ ମହଲୋକ ବସଇ । ମହଲୋକ ଉପରେ ଚନ୍ଦ୍ରନାଡ଼ୀ ବସଇ । ତଦୁପରି ଊର୍ଦ୍ଧ୍ୱମୁଖ ସହସ୍ରଦଳ ବସଇ । ତଦୁପରି ଶିବଲୋକ ବସଇ । ତଦୁପରି ବ୍ରହ୍ମଲୋକ ବସଇ । ତଦୁପରି କାଳଲୋକ ବସଇ । ତଦୁପରି ଧ୍ରୁବଲୋକ ବସଇ । ତଦୁପରି ସହସ୍ର ଦଳକମଳ ବସଇ । ତଦୁପରି ପରମେଶ୍ୱର ବସଇ । ଏଠାରୁ ତେଶୀଙ୍କ ଅଞ୍ଜନ ନିରଞ୍ଜନ ଭୂମି ମାୟାମାୟ ସର୍ବପୂର୍ଣ୍ଣ ନିରନ୍ତର ପୂରିଅଛୁ (୭) ଏଥିର ଯେ ପଶ୍ଚିମ ଭାଗେ ମେରୁ ଦଣ୍ଡ କହିଲି, ସେ ମେରୁ ଷୋଡ଼ଶ ଡମ୍ବୁରୁ ହୋଇ । ସେ ଡମ୍ବୁରୁମାନଙ୍କର ନାମ— ବାୟୁଡମ୍ବୁରୁ । ଅଗ୍ନିଡମ୍ବୁରୁ । ଚନ୍ଦ୍ରଡମ୍ବୁରୁ । ସୂର୍ଯ୍ୟଡମ୍ବୁରୁ । ବ୍ରହ୍ମଡମ୍ବୁରୁ । ଦେବଡମ୍ବୁରୁ । ରୁଦ୍ରଡମ୍ବୁରୁ । ଭୈରବ ଡମ୍ବୁରୁ । ଗ୍ରନ୍ଥି ଡମ୍ବୁରୁ । କାଳ ଡମ୍ବୁର । କାମଡମ୍ବୁରୁ । ଭ୍ରମରଗୁମ୍ଫା-ଡମ୍ବୁରୁ । ଊର୍ଦ୍ଧ୍ୱଡମ୍ବୁରୁ । ମଧ୍ୟଡମ୍ବୁରୁ । ଅଧଡମ୍ବୁରୁ । ଏହାକୁ ଭେଦିଲେ ସିଦ୍ଧ ହୋଇ ତାହା ଶୁଣ (୮) ।

ହେ ଦେବ ବ୍ରହ୍ମଡମ୍ବୁରୁ ଭେଦିଲେ ବ୍ରହ୍ମଲୋକ ଯାଇ । ରୁଦ୍ରଡମ୍ବୁରୁ ଭେଦିଲେ ରୁଦ୍ରଲୋକ ଯାଇ । ଭୈରବ ଡମ୍ବୁରୁ ଭେଦିଲେ ତ୍ରିକାଳ ଥାଇ ଅମର ହୋଇ । କାଳ-ଡମ୍ବୁରୁ ଭେଦିଲେ କାଳକୁ ଜିଣଇ । କାମଡମ୍ବୁରୁ ଭେଦିଲେ କାମ ସିଦ୍ଧି ହୋଇ । ଊର୍ଦ୍ଧ୍ୱଡମ୍ବୁରୁ ଭେଦିଲେ ଆକାଶଗାମୀ ହୋଇ । ଏ ଡମ୍ବୁରୁମାନଙ୍କ ଅଧିଷ୍ଠାତ୍ରୀ ଦେବତାମାନଙ୍କୁ ମନେ ମନେ ପୂଜିବୁ । ବ୍ରହ୍ମଡମ୍ବୁରୁରେ ବ୍ରହ୍ମା, ରୁଦ୍ରଡମ୍ବୁରୁରେ ରୁଦ୍ର, ଭୈରବକାଳ ଅଧିଷ୍ଠାତ୍ରୀ

---

(୧) 'ଖ' ରେ କାମସ୍ଥମଣ୍ଡଳ (୨) 'ଖ' ରେ କାମସ୍ଥ (୩) 'କ' ରେ ଶ୍ରୀହାଟ

(୪) 'କ' ରେ ଶ୍ରୀହାଟ (୫) 'କ' ଭୁବନେଶ୍ୱର (୬) 'କ' ଭୁବନେଶ୍ୱର (୭) 'ଖ' ରେ ଏଠାରୁ ତେଶୀକଠାରୁ ପୂରିଅଛୁ ପର୍ଯ୍ୟନ୍ତ ନାହିଁ ।

(୮) 'ଖ' ରେ ଏ ଡମ୍ବୁରୁମାନ ଭେଦିଲେ ଯଶ ହୋଇ ।

Digitized by srujanika@gmail.com

ହୁଅନ୍ତି । ଏ ଷୋଡ଼ଶ ଡମ୍ବରୁକୁ ଅଣ୍ଡେ କରି ଏ ଶରୀର ଧାରଣା ଅଛୁ । ଏ ଷୋଡ଼ଶ ଡମ୍ବରୁରେ ଚନ୍ଦ୍ର ଷୋଡ଼ଶ କଳା ବସନ୍ତି, ଷୋଡ଼ଶ କଳା କେ କେ ଅମୃତା, କଲ୍ଲୋଳିନୀ, ଉତ୍ପଳିନୀ ଉନ୍ମାଦନୀ, ତରଙ୍ଗିଣୀ, ଶୋଷଣ୍ଡଳୀ, ଲମ୍ପଟା, ଲହରୀ, ଲେଲା, ଲଳିତା, ଉଲ୍ଲୁତ, ଶ୍ରବନ୍ତୀ, ପ୍ରବାହା, ସନ୍ଧ୍ୟା, ପ୍ରସନ୍ନୀ, ପ୍ରଜାଦୂଶୀଳା, ଏବଂଭୂତ ପ୍ରକାରେ ଚନ୍ଦ୍ରର ଷୋଡ଼ଶ କଳା । ଏ ଡମ୍ବରୁମାନଙ୍କୁ ମେରୁ ବୋଲି । ଏ ମେରୁ ଦ୍ୱାଦଶ ଶୃଙ୍ଗ (୧) ହୋଇ । ସେ ଶୃଙ୍ଗମାନେ ଦ୍ୱାଦଶନାଡ଼ୀ ହୋନ୍ତି । ଏ ଦ୍ୱାଦଶ ନାଡ଼ୀରେ ଦ୍ୱାଦଶ ଆଦିତ୍ୟ ବସନ୍ତି ।

ଦ୍ୱାଦଶ ଆଦିତ୍ୟର ଦ୍ୱାଦଶ କଳା । କେ କେ ସେ । ତପନୀକଳା ଖର୍ବ ଖର୍ବ ତାପ କରାଇ । ଗ୍ରାସନୀକଳା ଜଗତ ଶରୀରକୁ ଗ୍ରାସଇ । ଉଷ୍ଣନୀକଳା ଉଷ୍ଣ କରଇ । ଆକୋଚନୀକଳା ଆକୋଚନ କରଇ । ଶୋଷଣୀକଳା ସମସ୍ତ ଶୋଷଇ । ପ୍ରବୋଧନୀକଳା ସମସ୍ତ ପ୍ରବୋଧ କରାଇ, ଅକ୍ଷିଣୀକଳା ଚକ୍ଷୁ ପ୍ରକାଶଇ । ତୁଷ୍ଟିକଳା ସନ୍ତୋଷ କରାଇ । ଊର୍ଦ୍ଧ୍ୱନୀକଳା ଊର୍ଦ୍ଧ୍ୱରେଖା କରାଇ । କୃଷ୍ଣରେଖାକଳା ମୁଖ କୃଷ୍ଣ କରାଇ । କରଣାବର୍ତ୍ତୀକଳା କରଣମାନ ଜାତ କରାଇ । ପ୍ରଭାନାମ କଳା ଜ୍ୟୋତିର୍ମୟ କରାଇ । ଏମନ୍ତେ ତାପିନୀ, ଗ୍ରାସିନୀ, ଉଷ୍ଣିନୀ, ଆକୋଚନୀ, ଶୋଷଣୀ, ପ୍ରବୋଧିନୀ, ଅକ୍ଷିଣୀ, ତୁଷ୍ଟନୀ, ଊର୍ଦ୍ଧ୍ୱନୀ, କୃଷ୍ଣରେଖା, କରଣାବର୍ତ୍ତୀ, ପ୍ରଭାକା, ଏ ସୂର୍ଯ୍ୟର ଦ୍ୱାଦଶକଳା । ଏମନ୍ତେ ଏ ଦ୍ୱାଦଶ କଳାକୁ ଦ୍ୱାଦଶ ଆଦିତ୍ୟ ବୋଲି । ଏ ଦ୍ୱାଦଶ ନାଡ଼ୀରେ ବସନ୍ତି । ଦଶ ପବନେ ଅଗ୍ନିର ଦଶକଳା ବସନ୍ତି । ସେ ଦଶ ପବନ କେ କେ । ପ୍ରାଣପବନ, ସମାନ, ବ୍ୟାନ, ଉଦାନ, ଅପାନ, ନାଗ, କୂର୍ମ, କୃକଳ, ଦେବଦତ୍ତ, ଧନଞ୍ଜୟ, ଇତି ଦଶପବନ । ପ୍ରାଣାଦି ବ୍ୟକ୍ତ ପଞ୍ଚପବନ । ନାଗାଦି ଅବ୍ୟକ୍ତ ପଞ୍ଚପବନ । ହୃଦୟ, ଗୁଦ, ନାଭି, କଣ୍ଠ, ସର୍ବ ଦେହାଦିରେ ପ୍ରାଣାଦି ପଞ୍ଚପବନମାନେ ବସନ୍ତି । ବାକ୍‌ପାଦ, ପାଣିଗୁଦ, ଉପସ୍ଥରେ ନାଗାଦି କରି ସେ ପଞ୍ଚପବନେ ବସନ୍ତି । ଏମନ୍ତେ ଏ ଦଶ ପବନଙ୍କରେ (୨) ଅଗ୍ନିରୁ ଦଶକଳା ବସଇ । କଳାମାନ କେ କେ । ଦାକ୍ଷିଣିକା, ନାଗଜୋ, ଜ୍ୱାଳା, ସ୍ଫୁଲିଙ୍ଗା, ପ୍ରଚଣ୍ଡା, ପାବକା, ରୌଦ୍ରୀ, ଦାହା, ପ୍ରାଣା, ସଞ୍ଚାବଳୀ, ଇତି ଅଗ୍ନି ଦଶକଳା । ଏକାଦଶୀ ହନ କଳା । ସେ ଜ୍ୟୋତି ବ୍ରହ୍ମଦ୍ୱାରେ ବସଇ । ଏ ଦଶପବନେ ଦଶ ନାଡ଼ୀରେ ବସନ୍ତି । ଏ ଦଶ ନାଡ଼ୀ କେ କେ । ଇଡ଼ା, ପିଙ୍ଗଳା, ଶୁଷମ୍ନା, ଗାନ୍ଧାରୀ ହସ୍ତିଜିହ୍ୱା ପୁଷା, ଅଲମ୍ବୁଷା, କୌକ୍ଷୀ, ଶଙ୍ଖିନୀ, ସ୍ୱସ୍ତିତା, ଇଡ଼ା, ପିଙ୍ଗଳା ନାସାଦ୍ୱାରେ ବହଇ (୩) ଶୁଷୁମ୍ନା ତାଳୁ ସମ ବ୍ରହ୍ମରନ୍ଧ୍ର ପର୍ଯ୍ୟନ୍ତେ ବହଇ । ଅଧରୁ ହସ୍ତିଜିହ୍ୱା ବହଇ । କର୍ଣ୍ଣଦ୍ୱାରେ ଗାନ୍ଧାରୀ ବହଇ । ପୂଷା ଅଲମ୍ବୁଷା ଚକ୍ଷୁଦ୍ୱାରେ ବହଇ । କୌକ୍ଷୀ ଗୁହ୍ୟ ଦ୍ୱାରେ ବହଇ । ଶଙ୍ଖିନୀ ଲିଙ୍ଗଦ୍ୱାରେ ବହଇ । ସ୍ୱସ୍ତିତା ବ୍ରହ୍ମରନ୍ଧ୍ର ପର୍ଯ୍ୟନ୍ତେ ବହଇ । ଏମନ୍ତେ ଇଡ଼ାନାଡ଼ୀ । ଶ୍ୱେତବର୍ଣ୍ଣ ପିଙ୍ଗଳା ପୀତବର୍ଣ୍ଣ, ଶୁଷୁମ୍ନା ଜ୍ୟୋତିର୍ମୟ ହୋଇ । ଗାନ୍ଧାରୀ ନୀଳବର୍ଣ୍ଣ,

(୧) 'କ' ରେ ଶଙ୍ଖ (୨) 'କ' ଦଶକଳାରେ (୩) 'ଖ' ରେ ବସନ୍ତି ।

Digitized by srujanika@gmail.com

ପୂଷା ଲୋହିତ ବର୍ଣ୍ଣ, ଅଲମ୍ବୁଷା ଧୂମ୍ରବର୍ଣ୍ଣ, କୌଷୀ ପାଣ୍ଡୁର ବର୍ଣ୍ଣ ହୋଇ । ହସ୍ତୀଜିହ୍ୱା ହରିତ ବର୍ଣ୍ଣ ହୋଇ ଶଙ୍ଖିନୀ ଶ୍ୱେତବର୍ଣ୍ଣ ହୋଇ । ଏ ନାଡ଼ୀମାନଙ୍କୁ ଆଶ୍ରେକରି ଅନେକ ନାଡ଼ୀମାନେ ଅଛନ୍ତି । କେ ଅତ୍ୟନ୍ତ ଦୃଷ୍ଟ, କେ ଅତ୍ୟନ୍ତ ବକ୍ର, କେ କୁଣ୍ଡଳ ଭାବ, କେ ଚକ୍ରଗୁଚ୍ଛ (୧) ପ୍ରାୟେକ । କେ ମୃଣାଳ ତନ୍ତୁଭାବ । କେ କୁରୁବଲ୍ଲୀ କୁସୁମଭାବ କେ କୁରୁପ ଭାବ, କେ ଦୁର୍ଲ୍ଲିମସ୍ୱ, କେ ପଦ୍ମରସ୍ୱ । କେ ସୌମ୍ୟ ଭାବ । କେ ଶ୍ୱାସଭାବ । ଏମନ୍ତେ ବାସ୍ତ୍ରାଣ ସହସ୍ର ନାଡ଼ୀମାନ କମ୍ପମାନ କରି ଅଧ ଊର୍ଦ୍ଧ୍ୱ ହୋଇଅଛନ୍ତି । ଏ ଅଦୃଶ୍ୟ । ଏହା ଜାଣି ନୁହଇ । ଅନେକ ଅଭ୍ୟାସେ ସେ ଦୃଶ୍ୟ ହୁଅଇ । ଏମନ୍ତେ ସେ ନାଡ଼ୀମାନଙ୍କରୁ ଦଶକୁ ଦୁଇନାଡ଼ୀ ଲେଖାଏ ପବନ ଛୁଡ଼ାଉଆଇ । ଏମନ୍ତେ ଶଏ ବର୍ଷେ ପ୍ରାଣୀଙ୍କ ମଲ ବୋଲି ବୋଲନ୍ତି । ଯାବେ ପବନ ଯାହା ନାଡ଼ୀରୁ ନ ଗୁଣ୍ଡି କୁମ୍ଭକ ପ୍ରକାରେ ପୂରକ ହୋଇ ପୂର୍ଣ୍ଣ ହୋଇ । ସ୍ଥିରହୋଇ ପ୍ରାଣ ପବନ ଏକ ଦ୍ୱାରେ ଏକା ରହିଲେ ଦେହରୁ ଜୀବନ ନ ଯାଇ ସର୍ବଦା । ଏମନ୍ତେ ସେ ତମ୍ବୁରୁମାନଙ୍କ ମଧ୍ୟରେ ଘୃତ ବୋଲି ନାଡ଼ୀ ଏକ ହୋଇ । ସେ ଘୃତ ନାଡ଼ୀ ଅନ୍ତର୍ଗତେ ଶୂନ୍ୟବୋଲି ନାଡ଼ୀ ଏକ (୨) ହୋଇ । ସେ ଶୂନ୍ୟ ନାଡ଼ୀ ଅନ୍ତର୍ଗତେ ସୂକ୍ଷ୍ମନାଳ ବୋଲି ଖଣ୍ଡିଏକ ହୋଇ । ସୂକ୍ଷ୍ମନାଳ ଅନ୍ତର୍ଗତ ଜ୍ୟୋତି ବୋଲି ନାଡ଼ୀ ଏକ ହୋଇ । ସେ ଜ୍ୟୋତି ନାଡ଼ୀ ଅନ୍ତର୍ଗତେ ବ୍ରହ୍ମବୋଲି ନାଡ଼ୀ ଏକ ହୋଇ । ସେ ବ୍ରହ୍ମନାଡ଼ୀରେ ଚନ୍ଦ୍ରସୂର୍ଯ୍ୟଙ୍କ ସମକରି ଭରିଲେ ସମସ୍ତ ନାଡ଼ୀମାନଙ୍କରୁ ପବନ ଗୁଡ଼ଇ । ସେ ନାଡ଼ୀ ମୃଣାଳ ସୂତ୍ର ସହସ୍ର ଭାଗକଲେ ଯେମନ୍ତ ସୂକ୍ଷ୍ମ ତହୁଁ ଅତିଅନ୍ତ ସୂକ୍ଷ୍ମ ଅଟଇ । ଏମନ୍ତେ ଉପର ଦନ୍ତପାଟି ଠାରୁ ଚୌଶିକ ଦ୍ୱାଦଶ (୩) ଆଙ୍ଗୁଳ ଉତ୍ସର୍ଗ ଅଟଇ ତାହାକୁ ଅଚଳ ବ୍ରହ୍ମାଣ୍ଡ ବୋଲି । ସେ ନ ଚଳଇ । ତାହା ଭଗ୍ନ ନୋହଇ । ତହୁଁ ଆଙ୍ଗୁଳକେ ବ୍ରହ୍ମାଣ୍ଡ ଲେଖାଏଁ ଦ୍ୱାଦଶ ବ୍ରହ୍ମାଣ୍ଡ ବସଇ । ଏକବିଂଶତି ବ୍ରହ୍ମାଣ୍ଡ ନାଏ (୪) ତହିଁ ଊର୍ଦ୍ଧ୍ୱ ଶଙ୍ଖିନୀ (୫) ବୋଲି ବଡ଼ ଗୁପ୍ତ ହୋଇ ନାଳେକ ବସଇ । ସେ ନାଳ କର୍ମ ଯୋଗକୁ ଲୁବ୍ଧବଚନ ଅଟଇ । ଚନ୍ଦ୍ର ସୂକ୍ଷ୍ମକଳା (୬) ବୋଲି ତାକୁ । ସେ ବାଟେ ଚନ୍ଦ୍ର ସୂକ୍ଷ୍ମକଳା ଅମୃତ ସ୍ୱରୂପେ ସ୍ରୁଁ ଅଛୁ । ସେ ବାଟକୁ ପବନ ଊର୍ଦ୍ଧ୍ୱ କରି ସୁବୁଲ (୭) ପ୍ରାୟେକ କରି ସୁବୁଲ କର୍ମେ ଛନ୍ଦେ (୮) କହିଁ ନାଡ଼ରେ ପାଣି ଟୋକାଳି ପ୍ରାଏ କରି ଟୋକୁଥିଲେ । ଆକାଶ ସୂକ୍ଷଣା (୯) ଭେଦଇ । ତହିଁ ଉପରେ ଗୋଲ୍ହାଟ ମଣ୍ଡଳ ବୋଲି ଏକ ମଣ୍ଡଳ ବସଇ ସେ ମଣ୍ଡଳ ବାମାବର୍ତ୍ତି ହୋଇ । ସେଠାରେ ପ୍ରାଣଚନ୍ଦ୍ର ସମ୍ପୃକ୍ତ (୧୦) ଅମୃତ କୁଣ୍ଡ ହୋଇଅଛଇ । ଗମ୍ଭୀର ବର୍ତ୍ତିଠାରେ ଯେମନ୍ତ ପାଣି ରହଇ ତେମନ୍ତ ପ୍ରାୟେକ ହୋଇ । ତହିଁ ଅମୃତ ଥାଇ ।

---

(୧) 'ଖ' ରେ ଯନ୍ତ୍ରଘୂର୍ଣ୍ଣା (୨) 'କ' ରେ ବ୍ରହ୍ମନାଡ଼ୀ ଏକହୋଇ (୩) 'କ' ରେ ଦଶ (୪) 'କ' ରେ ନାସ୍ତିରେ (୫) 'କ' ରେ ସଙ୍ଗମୀ (୬) 'କ' ଚନ୍ଦ୍ର ସୂକ୍ଷ୍ମଣା (୭) 'କ' ରେମୁରଲୀ 'ଖ' ରେ ସୁତୂଲୀ (୮) 'କ' ରେ ସିରୁଳି କର୍ମେ ଛନ୍ଦେ (୯) 'କ' ରେ ଦୃଷ୍ଟ ଗଙ୍ଗା (୧୦) 'ଖ' ରେ ପ୍ରାଣଚନ୍ଦ୍ର ଶଶଧର ।

Digitized by srujanika@gmail.com

ତାହାକୁ ମହାରସ କୂପ ବୋଲି । ସେ ରସ କୂପ ଅଛଅନ୍ତି ଅମୂଲ୍ୟ । ଏକ କଣିକାକୁ ଗୋଟିଏ ମାଣିକ୍ୟ ନୁହଇ ତୁଲ୍ୟ । ସେ କୂପ ଆବୋରି କାଳ କାଞ୍ଚ ଥାଇ (୧) ସେକାଳ କାଞ୍ଚ କେମନ୍ତ (୨) । ଜନ୍ମ ହୋଇଲା ବେଳହୁଁ ଯେ ପୂର୍ବର ପବନ ମାର୍ଗ ଗ୍ରୁଢ଼ ବାହାରକୁ ବହଇ । ଇଅଁଳା ପିଅଁଳା (୩) ମାର୍ଗ ପାଇ ସେ ସୂକ୍ଷ୍ମ ମାର୍ଗ ଗ୍ରୁଢଇ । ଗ୍ରୁଢ଼ନ୍ତେ ତହିଁ ଖଣ୍ଡିଏ ମାଂସ ବଢ଼ଇ । ବଢ଼ି ସେ ଦ୍ୱାର ଗୋଟି ଆବୋରି ଥାଇ । ଊର୍ଦ୍ଧ୍ୱ ଶୀତଳି (୪) କର୍ମ କରନ୍ତେ ହେଁ ସେ ମାର୍ଗକୁ ପବନ ଯାଇ । ପବନ ନ ଗଲେ ଅବା ସେ ମାଂସ ଭେଦ ହୋଇବ । ଅବା ବିଭେଦ ନୋହିଲେ ମୁଣ୍ଡରେ ଯେ ଧାତୁମାନେ ମହାତରଳ ହୋଇଅଛନ୍ତି । ଏ ଜନ୍ମ ମରଣ ଦିଅନ୍ତି । ଦେହକୁ ଜରାବସ୍ଥା କରନ୍ତି । ସେ ଧାତୁମାନେ ନ ଶୁଖନ୍ତି । ପବନ ଲାଗିଲେ ଶୁଖିଯିବ । ଏମନ୍ତେ ସେ ମାର୍ଗକୁ ପବନ ନ ଯାଇ । ସେ ପବନ ମାର୍ଗ ରୁନ୍ଧିଲାକ କାଳ କାଞ୍ଚ ବୋଲି । କାଳ ଶବ୍ଦ ହେଲା କର୍ମା (୫) । ଯହୁଁ ସେ ସକାଶୁ ପ୍ରାଣୀକି ମୃତ୍ୟୁ ହୁଅଇ । ତହିଁକି କପାଳ ହସ୍ତ କର୍ମ ଯୋଗ ଏ ଗୃଣ କର୍ମ ଜାଣିଲେ ସେ ବିନ୍ଦୁକୁ ବିନ ପୀଡ଼ଇ । ପୀଡ଼ି ସେ ରସକୂପ ଛୁଟିଲା ପବନ ସଙ୍ଗେ ଧାଇଁ । ପବନ ମାର୍ଗ ପାଇଲେ ବାହାରି ନୁହଇ ସେ ସହସ୍ର ଦଳ କୋଠିକୁ ଧାଇଁ ଧାଇଲେ ରୋଗ ଶୋକ ଜରା ଜଡ଼ ତୁଟଇ । ଏହା ଚତୁଷଷ୍ଠୀ ଯୋଗ ମଧ୍ୟେ ଏହାକୁ ନିରୂପ ଯୋଗ ବୋଲି । ତଦନନ୍ତରେ ମୂଳ କମଳ ଚତୁର୍ଦ୍ଦିଗ ନିରୋଧି ତହିଁ ଥାଆନ୍ତି । ଅଧୋଗତ ଅପାନ ପବନକୁ ଊର୍ଦ୍ଧ୍ୱଗତ କରି ଗୁପ୍ତ କରି ହୁଁକାର ନାଦ ଆଚରିବ । ସାକମୁଦ୍ରା କରି ଅଗ୍ନି ପବନ ସଙ୍ଗେ ଉଠି ମଳଖଣ୍ଡ ପୋଡ଼ି ଅମୃତ କଳାମାନନ୍ତ ଊର୍ଦ୍ଧ୍ୱଗତ କରାଇ ଶରୀର ଆଗ ଗଳକମଳ ଯନ୍ତ୍ରରୋଗ (୬) ଏମାନଙ୍କୁ ପୋଡ଼ଇ । ଏମନ୍ତ ପ୍ରକାରେ କରି ପ୍ରାଣାୟାମ କରିବୁ । ସେ ପ୍ରାଣାୟାମ କେମନ୍ତ । ଏକ ପ୍ରଣବ ଯୋଗ ଶବ୍ଦରେ । ପ୍ରଣବ ଲକ୍ଷଣ ହାଦେ ଶୁଣ । ଏକା ହୋଇ ପ୍ରାଣ ପବନ ସେ ଅଛି । ହୃଦୟ ଦ୍ୱାରେ । ସେ ନାରାୟଣ ସ୍ୱରୂପ ଅଟଇ । ସେ ପ୍ରାଣପବନ ଚଳିଲା ଯହୁଁ । ତାହାର ଗତି ଅତ୍ୟନ୍ତ ଭବ-ଜ୍ଞାନ ବୋଲି ବିବେକ (୭) ଜାତ ହେଲା ତହୁଁ । ସେ ପ୍ରାଣ ପବନକୁ ଅଜ୍ଞାନ ଶକ୍ତି ହୋଇଲା ଶିବ ଶକ୍ତି ସଯୋଗ । ପ୍ରାଣପବନ ଦଶଧା ହୋଇଲା । ଏହାକୁ ପ୍ରାଣ ପବନ ବୋଲି । ଏ ଦଶ ପବନ ଅଣଗୁଣ କଳା ହୋଇ ଏ ପବନ ମନ ଆସ୍ୱର ମନକୁ ନିର୍ମଳ କରି । ନିର୍ମୋହିନୀ, ଶଙ୍ଖିନୀ, ଚଞ୍ଚଳା, ଲୀଳା, ଲମ୍ବିନୀ ଏ ପାଞ୍ଚଶକ୍ତି କମ୍ବର ମୂହଁରୁ ବୁହାଇବ ଯାବତ । ଚକ୍ର ଦକ୍ଷିଣାବର୍ତ୍ତି କରି ବଡ଼ବାନଳ ଧାରଣା ଆଚରି କୁମ୍ଭାର (୮) ଯନ୍ତ୍ର ପ୍ରାପ୍ତେକ କରି ଅଗ୍ନି ଜାଳିବାକୁ ହୁଂକାର ଧାପ୍ତି (୯) ଜାଳି ପ୍ରଜ୍ୱାଳ କରିବ । ସେ ଅଗ୍ନି ଶିଖା କୁଣ୍ଡଳୀନୀକୁ ଲାଗିବ । ସର୍ପଦଣ୍ଡ ବାଜିଲେ ଯେମନ୍ତ ଫେର (୧୦)

(୧) 'କ' ରେ ଟାକିଥାଇ (୨) 'କ' ରେ ସେ କେମନ୍ତ (୩) 'କ' ଇଡ଼ା ପିଙ୍ଗଳା (୪) 'ଖ' ରେ ସିତୁଳ (୫) 'କ' ରେ କାଳଗ୍ରହ ବହିଲା କର୍ମା (୬) 'କ' ରେ ଆଗମନ ଜଡ଼ (୭) 'ଖ' ରେ ବିବେକ (୮) 'କ' ରେ କମାର (୯) 'କ' ରେ ଧାପ (୧୦) 'କ' ରେ ଫେରୁ ।

Digitized by srujanika@gmail.com

ଧର ରହଇ (୧) ସେହି ମତ ହୋଇ ସେ ନାଭି ସଲଖ ହୋଇ ଉଭା ହୁଅନ୍ତେ, ଶଙ୍ଖିନୀ ବମ୍ବରକୁ ମନ ପବନ ବଳାଇବ ବଯୋଗିନୀ (୨) କର୍ମରେ କର । ସେହିମନ୍ତ ସେ ମନ ପବନରେ, ଆଧାରେ × ×, ଯୋନିରେ, ନାଭିରେ, ହୃଦସ୍ଥରେ, କଣ୍ଠରେ, କପାଳରେ, ଭ୍ରମର କୁହରରେ, ଭୃଙ୍ଗରେ, ଶ୍ରୀହଟ୍ଟରେ, କାମଘାଟରେ, ତ୍ରିବେଣୀରେ ଶଙ୍ଖିନୀରେ ପଶି ଏମାନଙ୍କୁ ଭେଦ ସହସ୍ରଦଳ ଶେଖରକୁ ବୋଲି ଗଲେ । ଚନ୍ଦ୍ର ସୂର୍ଯ୍ୟ ସମ ବୋଲି । ଏ ଯୋଗକୁ ଉନ୍ମଣି ବୋଲି (୩) । ଏ ଯୋଗରେ ବୃଦ୍ଧମାନେ କାମଦେବର ପ୍ରାପ୍ତେ (୪) ହୁଅନ୍ତି । ତଦନନ୍ତରେ ମୂଳକମଳ ଚତୁର୍ଦ୍ଦଳ ନିରୋଧି ତଦ୍ଧିଅନ୍ତା ଅପାନ ପବନକୁ ଊର୍ଦ୍ଧ୍ୱଗତ କରି ଗ୍ରୁପି. ଦୀର୍ଘକରି ହୁଙ୍କାର ନାଦ କରି ଉଚ୍ଚରିବ । ଲେକ ମୁଦ୍ରା କରି ତହୁଁ ଅଗ୍ନି ପବନ ସଙ୍ଗେ ଉଠି ମଳାଗ୍ରଣ୍ଡ ପୋଡ଼ି ଅମୃତ କଳାମାନ ଊର୍ଦ୍ଧ୍ୱଗତ କରି । ଶରୀରେ ମଳ (୫) ଯେଉଁ ରେଖା ଏମାନଙ୍କୁ ପୋଡ଼ଇ ନାଡ଼ୀମାନଙ୍କର ସନ୍ଧିଧରେ । ନାଳାମାନେ ସ୍ଥିର ପବନ ସଞ୍ଚାରଇ ନ ହେଉଥାନ୍ତି । ସେ ନାଳ ମାନଙ୍କୁ ଯୋଡ଼ଇ । ଏମନ୍ତେ ଅଚଳ ବ୍ରହ୍ମାଣ୍ଡ ଉପରେ ଯେଉଁ ଊର୍ଦ୍ଧ୍ୱ ଶଙ୍ଖିନୀ ବୋଲି ସେ ବାଟେ ବଙ୍କା ନାଳ ଭେଦ ତମ୍ଭରୁ ମଧ୍ୟ ବାଟେ ନାଡ଼ୀ ଚକ୍ର ଭେଦ ହୃଦସ୍ଥ ଆକାଶ ବାଟେ ଧ୍ୟାନ ଯୋଗ ବାଟେ କରି ସୂକ୍ଷ୍ମ ଯୋଗ ବାଟେ ଏ ଗୃହ ବାଟେ ପବନ ଊର୍ଦ୍ଧ୍ୱକୁ ଉଠଇ (୬) । ସମସ୍ତ ଦଳ ଭେଦ ସହସ୍ର ଦଳକୁ ଗମନ୍ତି । ସେ ଚକ୍ରକୂଟ ପଚ୍ଛରେ ସ୍ଥିର ପବନେ ଚୂର୍ଣ୍ଣିଭୂତ ହୁଅନ୍ତି । ହୋଇ ଲଏ ହୁଅନ୍ତି । ଏ ଯୋଗସିଦ୍ଧି ହୋଇଲେ ଏ ଦେହ ଆକାଶରେ ଯାଇ ।

ଏଥିଉତ୍ତାରେ ପ୍ରଣବ କରିବୁ । ସେ ପ୍ରଣବ କେମନ୍ତ । ଦ୍ୱାଦଶ ମାତ୍ରା ହୋଇ । ଉତ୍ତମ, ମଧ୍ୟମ, କନିଷ୍ଠ ହୋଇ । ବାମ ନାଶାରେ ଚନ୍ଦ୍ରମଣ୍ଡଳ ଧାରଣାରେ କରି ପବନକୁ ସେ ଷୋଳ ଅଂଶ ପୂରେଇବ । ନାଭି (୭) ପଦ୍ମେ କ୍ରମେ କ୍ରମେ କରି ଷୋଡ଼ଶ ଅଂଶେ ରୁହାଇବ । ସେ ଷୋଡ଼ଶ ଅଂଶକୁ କୁମ୍ଭକ କରିବ । ହୃଦସ୍ଥରେ ନାରାୟଣଙ୍କୁ ଧ୍ୟାନ ସଙ୍ଗତେ ଦକ୍ଷିଣ ନାସାରେ ତହୁଁ ଷୋଡ଼ଶ ଅଂଶକୁ ରେଚକ କରିବ । ଚକ୍ରଶିଖା ନାଳବାଟେ ଊର୍ଦ୍ଧ୍ୱଗତ ସହସ୍ରଦଳ ବାଟକୁ ଯିବ । ସମସ୍ତ ପବନ ସହସ୍ର ଦଳରେ ଚୂର୍ଣ୍ଣୀଭୂତ ହୋଇଲେ । ଜର, ଜଡ଼, ରୋଗ, ନିଦ୍ରା, ଘୋର କାଳରାତ୍ରି ଏହାକୁ ଗ୍ରାସି ଚନ୍ଦ୍ରରେ ମିଶିଲେ । ଚତୁଃଷଷ୍ଟୀ କଳା ଚନ୍ଦ୍ର ହୋଇ ବୋଲି ଜାଣି । ସ୍ଥିର ଷୋଳ ଅଂଶେ ଚତୁଃଷଷ୍ଟୀ ହୋଇଲା । ଅଳ୍ପ ସଂଖ୍ୟା ମାତ୍ରକେ ପ୍ରଣବ ଶୁଣ । ଇଡ଼ାଦ୍ୱାରେ ପୂରେଇ ପିଙ୍ଗଳା ଦ୍ୱାରେ ରେଚିବୁ । ପିଙ୍ଗଳା ଦ୍ୱାରେ ପୂରେଇ ଇଡ଼ାଦ୍ୱାରେ ରେଚିବୁ । ମଧ୍ୟ ସୁଷୁମ୍ନାରେ କୁମ୍ଭକ କରୁଥିବୁ । ସୋମ ସୂର୍ଯ୍ୟ ଧାରଣାରେ କରି । ଏହାକୁ ଲଘୁ ପ୍ରାଣାୟାମ ବୋଲି । ଏହିକୁ

(୧) 'କ' ରେ ଉଠଇ । (୨) 'କ' ରେ ବଜ୍ରୋଲି (୩) 'ଖ' ରେ ନାହିଁ । (୪) 'କ' ରେ ଉପାସ୍ଥେକ । (୫) 'କ' ଆମଳ । (୬) 'ଖ' ରେ ଉର୍ଦ୍ଧ୍ୱ ହୋଇ । (୭) 'ଖ' ରେ ଗର୍ଭ ।

Digitized by srujanika@gmail.com

ରସ କର୍ମ ଅଟଇ । ଅରୁନ୍ଧତୀ ମାର୍ଗ ଉପାଟ ଫେଡିବାକୁ ବୃଥାଏ ଜମ । ତଦନନ୍ତରେ ପ୍ରତ୍ୟାହାର କରିବ । ପବନକୁ ଚନ୍ଦ୍ରକଳା ଦ୍ୱାରେ କରି ଅଙ୍ଗନରୁ ଗ୍ରାସୁଥିବ । ଗ୍ରାସ କ୍ରମ କରି ଆକାଶକୁ ଗ୍ରାସୁଥିବ । ପ୍ରତ୍ୟାହାର ଅନ୍ତେ ପ୍ରତ୍ୟାହାର । ଆହାର ବୁଦ୍ଧି ସଂଯମ କରିବ । ଅଗ୍ନି, ମାହେନ୍ଦ୍ର, ବାରୁଣୀ, ବାୟୁ ଏ ଗୃହ ବେଳେରୁ ଅଗ୍ନି ବେଳ ଯେବେ ପିଙ୍ଗଳା ସେ ସୂର୍ଯ୍ୟ ନାଡ଼ୀ ବହି ପବନ ଥିବ । ସ୍ଥିର ହୃଦସ୍ଥ ଶାନ୍ତ ହୋଇବ । କଟୁ, ଲବଣ ତିକ୍ତ, ଅମ୍ଳ, କଷା, ମଧୁର, ବରଜିତ ଏଥି ରାଜସ ତାମସ ବରଜିତ । ରସ ସ୍ନିଗ୍ଧ ହୃଷ୍ଟ ସ୍ୱାଦୁ ଅଳ୍ପକରି ଯୁକ୍ତ ଆହାର କରିବ । ଦୁଇଭାଗ ଅନ୍ନ ପୁରେଇବ । ଭାଗେ ଜଳ ପୂରେଇବ । ଭାଗକ ପବନକୁ ଥିବ । ଏମନ୍ତ ଆହାର କରିବ । ତିକ୍ତର ମଧ୍ୟେ କମ୍ବୁ, କଷାର ମଧ୍ୟେ ହରଡ଼ା, ଅମ୍ଳର ମଧ୍ୟେ ଅଁଳା, ମଧୁରର ମଧ୍ୟେ ମହୁ, କଟୁର ମଧ୍ୟେ ଅଦା, ଲବଣର ମଧ୍ୟେ ସୈନ୍ଧବ, ରସର ମଧ୍ୟେ ଇକ୍ଷୁ, କ୍ଷୀରର ମଧ୍ୟେ ଗବ୍ୟ, ଧାନର ମଧ୍ୟେ ଯବ, ଅନ୍ନର ମଧ୍ୟେ ଶାଳିଅନ୍ନ, ଗୁଡ଼ର ମଧ୍ୟେ ସାକର, ବୀଜର ମଧ୍ୟେ ମରିଚ, ଲତାର ମଧ୍ୟେ ପଟୋଳ, ବୃକ୍ଷର ଫଳ ମଧ୍ୟେ ଶ୍ରୀଫଳ, ଲେପର ମଧ୍ୟେ କୃଷ୍ଣ ତୈଳ ଇତ୍ୟାଦି ଶୁଭ ପଦାର୍ଥମାନ ଯଥୋଚିତ ସମୟରେ ଭୋଗ କରିବ । ବାତଶ୍ଳେଷ ଶାନ୍ତ । ପୂର୍ଣ୍ଣାପୂର୍ଣ୍ଣ ସଦା ଆନନ୍ଦିତ ଆସ୍ୱାଦନାର୍ଥ ବାଞ୍ଛ ଏହାକୁ ପ୍ରତ୍ୟାହାର ବୋଲି ।

ତଦନନ୍ତରେ ଧ୍ୟାନ କରିବ । ସେ ଧ୍ୟାନ କେମନ୍ତ । ଶୂନ୍ୟ ଠୂଳ (୧) ଧ୍ୟାନ, ପାତାଳକାଶ ଧ୍ୟାନ, ଅଧ ଊର୍ଦ୍ଧ୍ୱ ମଧ୍ୟ ଧ୍ୟାନ, ନାଡ଼ୀଚକ୍ର ଧ୍ୟାନ, ପ୍ରାଣ ପବନ ଧ୍ୟାନ, ଜ୍ୟୋତିଃପ୍ରକାଶ ଧ୍ୟାନ, ଗଗନ ଶତଦଳ ଧ୍ୟାନ, କୁଣ୍ଡଳିନୀ ଧ୍ୟାନ, ପ୍ରତିଭା ଧ୍ୟାନ, ନିବିଡ଼ ଅନ୍ଧକାର ଧ୍ୟାନ, ଅବ୍ୟାକୁଳ ଧ୍ୟାନ, ବାସନା ଅବସ୍ଥା ଧ୍ୟାନ, ପଞ୍ଚଭୂତ ଧ୍ୟାନ ଇତ୍ୟାଦି କରି ଅନେକ ଧ୍ୟାନ କରିବୁ । ଅଧିଷ୍ଠାତ୍ରୀ କରିବ । କେବଣ କେବଣ ଅଧିଷ୍ଠାତ୍ରୀ । ହସ୍ତରେ ଇନ୍ଦ୍ର ଦେବତା, ପାଦରେ ବିଷ୍ଣୁ ଦେବତା, ଗମନରେ ପବନ ଶକ୍ତି ଅଧିଷ୍ଠାତ୍ରୀ ଦେବତା, ନାଭିରେ ଅଗ୍ନି ଦେବତା, ଆହାର ଜଠରେ ଯମ ଦେବତା, ଚକ୍ଷୁରେ ଅଗ୍ନି ଦେବତା, (୨), ମନରେ ଚନ୍ଦ୍ର ଦେବତା, ଜିହ୍ୱାରେ କାଳ ଦେବତା, ନିଦ୍ରାରେ କାଳରାତ୍ରୀ ଦେବତା, ପ୍ରଜ୍ଞାନରେ ନାରାୟଣ ଦେବତା, ଶ୍ରୋତ୍ରରେ ଆକାଶ ଦେବତା ଇତ୍ୟାଦି ଅଧିଷ୍ଠାତ୍ରୀ ଦେବତାମାନଙ୍କୁ ମାନସିକେ ପୂଜାକରି ଧ୍ୟାନ କରିବୁ ।

ଚତୁଃଷଷ୍ଠୀ ଧାରଣାମାନ ଅଛୁ । ଯୋଗ ରତ୍ନାକର ପ୍ରମାଣେ । କେବଣ କେବଣ ଧାରଣା । ବିରମ ଧାରଣା, ସହସ୍ର ଚକ୍ର ଧାରଣା (୩) ବଡ଼ବାନଳ ଧାରଣା, ପାବନ୍ତୀ ଧାରଣା, ପଞ୍ଚଭୂତ ଧାରଣା, ପରମହଂସ ଧାରଣା, ହୃମବନ୍ତ ଧାରଣା, ଦଗଗଦ ଧାରଣା, ସରସ୍ୱତୀ ଧାରଣା, ମହେଶ୍ୱର ଧାରଣା ଇତ୍ୟାଦି କରି ଚତୁଃଷଷ୍ଠୀ ଧାରଣା କରିବ (୪) । ଏ

(୧) 'ଖ' ରେ ସ୍ଥଳୀ (୨) 'ଖ' ରେ ଆଦିତ୍ୟ ଦେବତା (୩) 'କ' ରେ ନାହିଁ
(୪) 'ଖ' ପୋଥିରେ ଯେଉଁ ସମୟରେ ଯେଉଁ ଧାରଣା କରିବା ଅଧିକ ।

Digitized by srujanika@gmail.com

ଧାରଣାରେ କରି ଯେଉଁ ଧାରଣା ଯେଉଁ ଯୋଗୀ ବଶ କରିଅଛି ସେ ପ୍ରଳୟକାଳକୁ ଜିଣଇ। ବଜ୍ରକଳା ଧାରଣା କରିଲେ, ବ୍ରହ୍ମାଣ୍ଡ ଉତ୍ପତ୍ତି ପ୍ରଳୟ ହେଉଥିଲେ ହେଁ ମୁହୂର୍ତ୍ତେ ପ୍ରାୟେ ମଣଇ। ଯେଉଁ ସ୍ଥାନରେ ଯେମନ୍ତ ପ୍ରକାରେ ଧାରଣା କରିବ ତାହା ଜଗନ୍ନାଥଙ୍କ ଅନୁଗ୍ରହ ଥିଲେ ତାହା ସ୍ୱ ମରି (୧) ପାରଇ। ଭୁଷଣ୍ଡକାକ ବାରଣ (୨), ପ ବଟ୍ଟି, ଏ ଦୁଇ ଧାରଣା ଜାଣି ପ୍ରଳୟ କାଳମାନକୁ ବଞ୍ଚଇ। ଏ ଚତୁଃଷଷ୍ଟୀ ଧାରଣା ସମ୍ପୂର୍ଣ୍ଣ କରି ବଳଭଦ୍ର ହିଁ ସେ ଜାଣଇ। ହନୁମନ୍ତ (୩) ଆଠ ଧାରଣା ଜାଣଇ। ନନ୍ଦିକେଶ୍ୱରର ଦଶଧାରଣା ଜାଣଇ। କାର୍ତ୍ତିକେଶ୍ୱର ଦଶଧାରଣା ଜାଣନ୍ତି। ବୃଷଭ ଦ୍ୱାଦଶ ଧାରଣା ଜାଣଇ। ଈଶ୍ୱର ଭୈରବ ରୂପେ ଚତୁଃଷଷ୍ଟୀ ଧାରଣା ଜାଣଇ। ମହାକାଳ ଦ୍ୱାବିଂଶତି ଧାରଣା ଜାଣଇ। ବିଶ୍ୱକ୍‌ସେନ ଏକବିଂଶତି ଧାରଣା ଜାଣଇ। ଜୟ ବିଜୟ ସପ୍ତବିଂଶତି ଧାରଣା ଜାଣନ୍ତି। ଚତୁଃଷଷ୍ଟୀକ ସ୍ୱର ଘୁଞ୍ଚିଲେ ଯେତେ, ଶ୍ରୀ ଜଗନ୍ନାଥଙ୍କ ଅନୁଗ୍ରହରୁ ଯୋଗୀ ଜାଣଇ ତେତେ। ଏହାକୁ ଧାରଣା ଯୋଗ ବୋଲି।

ତଦନନ୍ତରେ ଲୟବ୍ୟୋମ ପଞ୍ଚମ ହୋମଧାରଣା କରିବ। ତଦନନ୍ତରେ ସମବୃତ୍ତାରେ ସମାଧି କରିବ। ଏମନ୍ତ ଯୋଗ ସ୍ୱୟଂ ଇନ୍ଦ୍ରଜାଲ ଅଗ୍ନି ସମ୍ପୂର୍ଣ୍ଣୀୟ ହୋଇ (୪)। ଜ୍ୟୋତିର୍ମୟ ହୋଇ ହାଦେ ପରମ ମହାତ୍ମ ମାନେ ସେ ଏହା ଜାଣି ପାରନ୍ତି। ସେ କେମନ୍ତ ମହାତ୍ମାମାନେ କୋଟି କୋଟି ପର୍ବତର ପ୍ରାୟେକ ଯାହାର ଧୈର୍ଯ୍ୟ କୋଟି କୋଟି ସିଂହର ପ୍ରାୟେକ ଯାହାର ଶୌର୍ଯ୍ୟ। କୋଟି କୋଟି ଯମର ପ୍ରାୟେକ ଯାହାର ନିଷ୍ଠୁର। କୋଟି କୋଟି ବଜ୍ର ପ୍ରାୟେକ ଯାହାର ହୃଦୟ କଠୋର। କୋଟି କୋଟି ଆକାଶର ପ୍ରାୟ ଯାହାର ଶୂନ୍ୟ। କୋଟି କୋଟି ବୃହସ୍ପତିର ପ୍ରାୟ ଯାହାର ବୁଦ୍ଧି। କୋଟି କୋଟି ମୃତ୍ୟୁର ପ୍ରାୟେ ଯାହାର ଶକ୍ତି (୫)। କୋଟି କୋଟି ସୂର୍ଯ୍ୟର ପ୍ରାୟେ ଯାହାର ଜ୍ୟୋତି। କୋଟି କୋଟି ସମୁଦ୍ରର ପ୍ରାୟେ ଯାହାର ପୂର୍ଣ୍ଣ। କୋଟି କୋଟି ଚନ୍ଦ୍ରର ପ୍ରାୟେ ଯେ ସୌମ୍ୟ। କୋଟି କୋଟି ଇନ୍ଦ୍ରର ପ୍ରାୟେ ଯେ ଯୋଗ। କୋଟି କୋଟି ଧନ୍ୱନ୍ତରୀ ପ୍ରାୟେ ଯେ ଆରୋଗ୍ୟ। କୋଟି କୋଟି ରଙ୍କର ପ୍ରାୟେ ଯେ ଇନ୍ଦ୍ରିୟ ଐଶ୍ୱର୍ଯ୍ୟ ସମ୍ପୂର୍ଣ୍ଣ। ସେ ମହାତ୍ମା ଜାଣି ପାରଇ। ଈଶ୍ୱର ବଳଭଦ୍ରଙ୍କ ଯୋଗ ପୂର୍ଣ୍ଣ। ହାଦେ ଅଶ୍ୱର ପ୍ରାୟେକ ଯେ କାମୁକ ହୋଇବ, ନରନ୍ତର ଯେ ମିଥ୍ୟା କହିବ, ଅହୋରାତ୍ରେ ଯେ ମାଦେକ (୬) ହୋଇବ, ସର୍ବଥା ଇନ୍ଦ୍ରିୟ ଜିଣି ନ ପାରିବ। ପିଶାଚର ପ୍ରାୟେକ ପ୍ରକୃତି ହୋଇବ। ବେଗାଦି ଦୋଷ ନରନ୍ତରେ ଥିବ। ଏବଂଭୂତ ନରାଧମମାନଙ୍କୁ ଜଗନ୍ନାଥ ଅନୁଗ୍ରହ କଲେ। ଯୋଗ ସାଧନ

---

(୧) 'କ' ରେ ଜାଣି। (୨) 'ଖ' ରେ ଭୁଷଣ୍ଡମାରଣୀ। (୩) 'ଖ' ରେ ହନୁମାନ (୪) 'କ' ରେ ଅନିତ୍ୟଶକ୍ତିର ନିତ୍ୟ ହୋଇ (୫) 'କ' ରେ କୋଟି ଠାରୁ ଯନ୍ତ୍ର ପର୍ଯ୍ୟନ୍ତ ନାହିଁ। ତାହା ବଦଳରେ —"କୋଟି କୋଟି ଚନ୍ଦ୍ରର ପ୍ରାୟେ ଯାହାର ଆହ୍ଲାଦ କର ଭ୍ରାନ୍ତି" ଅଛି। (୬) 'ଖ' ରେ ମଦ।

Digitized by srujanika@gmail.com

କରିପାରଇ ଅବଦ୍ଧେଲେ । ଶ୍ରୀ ଜଗନ୍ନାଥଙ୍କର ସେବକମାନଙ୍କର ପାଦରଜ ଘେନିମାରୁଁ କରି, ନାରାୟଣ ଦାସ ଏହା ପାଇଲି ବସନ୍ତ । ଏମନ୍ତ ବୋଲି ଭୁବନେଶ୍ୱରୀ ଆଜ୍ଞାଦେଲି ଯନ୍ତୁଁ, କାମାନନ୍ଦ ଯୋଗୀଯୋଗ ଥୋକାଏ ସାଧିଲି ଚନ୍ତୁଁ ।

ସେହି ଏହି ଯୋଗ ସାଧନ କରି ଦେହ କନ୍ଦର୍ପର ପ୍ରାପ୍ତେ (୧) କରିଅଛୁ । କାମାକ୍ଷୀ ମନ୍ତ୍ର ଉପାସନା କଲରୁ କରି ବଶୀକରଣ ବିଦ୍ୟା ପାଇଅଛୁ । ସମସ୍ତ ଶକ୍ତି ସିଦ୍ଧ ହୋଇଅଛୁ । କେବଳ ଶକ୍ତି, ପର୍ବତ ସ୍ଖଳନ ଶକ୍ତି, ଅପରାଜିତ ଶକ୍ତି (୨) । ସୂକ୍ଷ୍ମ ଶକ୍ତି, ଚଳନ ଶକ୍ତି, ବୁଦ୍ଧି ଶକ୍ତି, ଚେତସ୍ମ ଶକ୍ତି, । ଏ ଶକ୍ତିମାନେ କ୍ରମେ ସିଦ୍ଧ ହୋଇଅଛନ୍ତି । ଯନ୍ତୁଁ ଦେଇଅଛୁ ଯୋଗବେ ମଠ । ବୁଦ୍ଧିଯୋଗ ଶକ୍ତ୍ୟେ ହୋଇଅଛୁ । ଯନ୍ତୁଁ ବାସୁଦେବର ଭକ୍ତ ନୋହୁଅଛୁ । ଏ ଯୋଗ ପୂର୍ବେ ସରସ୍ୱତୀଙ୍କୁ ପରମେଶ୍ୱର କହିଲେ । ସରସ୍ୱତୀ ଅନୁଗ୍ରହ କରି ଭୁବନେଶ୍ୱରୀଙ୍କି କହିଲେ । ଭୁବନେଶ୍ୱରୀ ଅନୁଗ୍ରହପୂର୍ବକ କାମାନନ୍ଦଙ୍କୁ କହିଲେ । ତାହା ନାରାୟଣ ଦାସ ଶ୍ରୀକୃଷ୍ଣ ପଦାରବିନ୍ଦରୁ କରି (୩) ପାଇଲି । ଏ ଅଂଶର ନାମ ତ୍ରୈଲୋକ୍ୟ ଜୟ ଜିକିରଣଙ୍କ ମତେ କଥାରେ ଚତୁର୍ଥ ଅଂଶ ହୋଇଲା ସମ୍ପୂର୍ଣ୍ଣ । ଏବେ ପଞ୍ଚମ ଅଂଶ ପ୍ରଥମ ପକ୍ଷ ରସକଳାର ସୁଧ ନିଧି (୪) ବୋଲି ପଞ୍ଚମ ଅଂଶର ନାମ । ରସରତ୍ନ ଅଧିକାରେ ଶୁଣିଲେ ସଞ୍ଚଳ କାମ । ଏମନ୍ତେ ସେ କାମାନନ୍ଦ ଯୋଗୀ ଯୋଗ ସିଦ୍ଧି ପାଇ, ବିଶ୍ୱସ୍ତ ରସକୁ ଧ୍ୟାଇ ଭୂମଣ୍ଡଳକୁ ବଡ଼ ବଡ଼ ବୋଲି ଆରମ୍ଭେ ଶାସ୍ତ୍ର କହଇ । ଈଶ୍ୱର ମାୟାରେ କରି କେ କେଉଁଅଙ୍ଗେ ଅଛୁ । ଏହା ଜାଣି ନୋହଇ । ଯେ ଯେତେ ଜାଣଇ ସେହି ତେତେ ହେଁ କହିପାରଇ ।

ଏମନ୍ତେ ସେ ଅନିଳ ଖେଚର, ଅନ ଯେ ପବନ, ତାହାର ପରି ବ୍ୟଗ୍ର ଅଟଇ, ଖେଚର ଆକାଶର ଚର ଅଟଇ । ଧୂମ୍ର ନୀଳ ଅଟଇ । ମଙ୍ଗଳଗ୍ରହ ପରି ଦୁଇ ଚକ୍ଷୁ ଅଟଇ । ଇଚ୍ଛାକଲେ ଆଦିତ୍ୟ ମଣ୍ଡଳ ପଶଇ । ମନ କଲେ ଧ୍ରୁବଲୋକ ଯାଏ ସ୍ଥିର ଲାଗଇ । ସ୍ୱଭାବେ ତାଳଗଛ ଗୋଟା ପ୍ରାପ୍ତେ ହୋଇଥାଇ । ଭୂତ ଭବିଷ୍ୟ ସକଳ ଶାସ୍ତ୍ର ଜାଣଇ । ସ୍ତୁତି କରି ଈଶ୍ୱରକୁ ମଣଇ । ଅଚରଚରକୁ ଯାଇ ପାରଇ । ମହାବାତେ ରହି ପାରଇ । ରୁଣ୍ଡେ ଭେଳି ବାଇ ପାରଇ । ସ୍ଥୂଳ ପଦାର୍ଥ ଖାଇ ପାରଇ । ଅଗ୍ନି, ଜଳ, ପବନେ ଥାଇ ପାରଇ । ଦୂର ଲୋକକୁ ଯାଇ ପାରଇ । ବଜ୍ର ପଡ଼ିଲେ ସହି ପାରଇ । ଗଗନ ମାର୍ଗେ ଉଡ଼ି ପାରଇ । ନିମିଷକେ ତ୍ରିଭୁବନ ଭ୍ରମି ପାରଇ । ଶୂନ୍ୟେ ଲମ୍ବ ହୋଇ ରହିପାରଇ । ଦୃଶ୍ୟେ ଅଦୃଶ୍ୟେ ମିଶି ପାରଇ । ବଜ୍ରକୂଳ ମାର୍ଗେ ପଶି ପାରଇ । କାମ କଉତକେ ରସି ପାରଇ । ବୀରମାନଙ୍କୁ ଗ୍ରାସି ପାରଇ । ଧନରତ୍ନମାନ ହରି ପାରଇ । ନାନାବର୍ଣ୍ଣ ଧରି

---

(୧) 'କ' ରେ ବଜ୍ରପ୍ରାପ୍ତେକ କରିଅଛୁ । (୨) 'ଖ' ରେ ଅପରାଜିତା (୩) 'କ' ରେ ପାଦସେବାରୁ (୪) 'କ' ରେ ଖଡ଼୍ଗ ।

Digitized by srujanika@gmail.com

ପାରଇ । ନଦୀ ପର୍ବତ ପରିଗ ହସ୍ତ ଖଣ୍ଡାଙ୍କ (୧) ଧରି ପାରଇ । ପବନେ ଗମି ପାରଇ ଜଳ ଭିତରେ ବୁଡ଼ି ପାରଇ । ପକ୍ଷୀର ପ୍ରାୟେକ ଉଡ଼ି ପାରଇ । ମନୁଷ୍ୟ ପ୍ରାୟେକ କଥା କହୁଥାଇ । ପୂର୍ବେ ବାୟୁଦେବଙ୍କୁ ଅଧମ ଭକ୍ତି କଲା ଯନ୍ତୁ, ପାପର ବଳେ ଭୂତ ଶରୀର ପାଇଲା ତନ୍ତୁ । ସେ ଭୂତ ପାର୍ବତୀଙ୍କ ସମ୍ମୁଖରେ ନୃତ୍ୟ କଲା ଯନ୍ତୁ, ମାହେଶ୍ୱରୀ ଅନୁଗ୍ରହ କଲେ ତନ୍ତୁ । ପ୍ରଳୟ କାଳରେ (୨) ରକ୍ଷା କରଇ । ପୂର୍ବ ପ୍ରାୟେ କରି ମନେ ଧରଇ । ଏବଂଭୂତ ଅନଳ ଖେଚର ନାମେ ଭୂତ କାମାନନ୍ଦର ସଙ୍ଗ ସଖା ହୋଇ । ମହାବିଦ୍ୟାର ବଳେ ପ୍ରସନ୍ନ କରାଇ ଆତ୍ମତତ୍ତ୍ୱ ବଶ କରିଅଛୁ । ଅନ୍ୟ ଭୂତମାନେ ପଞ୍ଚମ ତତ୍ତ୍ୱ ଷଷ୍ଠ ତତ୍ତ୍ୱ ସପ୍ତମ ତତ୍ତ୍ୱ ହୋନ୍ତି । ଅଷ୍ଟମ ତତ୍ତ୍ୱ ହୋଇଲେ ତାହାକୁ ଚଣ୍ଡ ବୋଲି । ଚଣ୍ଡ ଦ୍ୱାଦଶ ତତ୍ତ୍ୱପାଏ ହୋଇ (୩) । ତ୍ରୟୋଦଶ ତତ୍ତ୍ୱକୁ ବେତାଳ ବୋଲି । ବେତାଳ ପଞ୍ଚଦଶ ତତ୍ତ୍ୱ ପାଏ ହୋଇ । (୪) ଷୋଡ଼ଶ ତତ୍ତ୍ୱକୁ ବିଦ୍ୟାଧର ବୋଲି । ଏ ଅଷ୍ଟାଦଶ ପାଏ ହୁଅନ୍ତି । ଊନବିଂଶ ତତ୍ତ୍ୱଠାରୁ ଏକବିଂଶ ତତ୍ତ୍ୱପାଏ ଯକ୍ଷ ଲିଙ୍ଗ ହୋଇ । ଚତୁର୍ବିଂଶତି ତତ୍ତ୍ୱକୁ ସିଦ୍ଧ ବୋଲି ଏ ଶରୀର ପବନ ସ୍ୱରୂପ ହୋଇ । ଏବଂଭୂତ ପୃଥ୍ୱୀର ସ୍ଥୂଳ ନାନାକାର କଠିନ ଗନ୍ଧ, ଏ ସ୍ଥୂଳ ତତ୍ତ୍ୱକୁ ଗ୍ରହି, ଏକବିଂଶତି ତତ୍ତ୍ୱ ପାଇଅଛୁ । ଯନ୍ତୁ ବାୟୁଦେବର ଭକ୍ତି ରହୁଅଛୁ, ତନ୍ତୁ ପାପର ବଳେ ଭୂତ ହୋଇ (୫) ଦେବତା ପ୍ରଭାବ ହୋଇଅଛୁ । ଏମନ୍ତେ ଭୂତ, ଅଧିଭୂତ, ମହାଭୂତ, ଦିବ୍ୟଭୂତ ଇତ୍ୟାଦି କରି ପରମ ଭୂତମାନେ ହୁଅନ୍ତି । ଗୁଣ ଅଧୀତ ଜୀବ ଜାଣିବାରୁ କରି ମହାଭୂତ ପରମେଶ୍ୱରଙ୍କୁ (୬) ବୋଲି । ଅଧିଭୂତ ଈଶ୍ୱରଙ୍କୁ ବୋଲି ସିଦ୍ଧମାନଙ୍କୁ ଦିବ୍ୟଭୂତ ବୋଲି ସିଦ୍ଧମାନଙ୍କୁ ଦିବ୍ୟଭୂତ ବୋଲି । ଏ ଦିବ୍ୟ ଭୂତରେ ଗଣନାଥ, ଅନଳ ଖେଚର ହୋଇ ।

କାମାନନ୍ଦର ଭୂତ, ପ୍ରେତ, ପିଶାଚ ଯୋଗିନୀ, ଡାକିନୀ (୭), ଚଣ୍ଡ, ବେତାଳଗଣ ହିଙ୍ଗୁଳ ସୈନ୍ୟରେ ଏବଂଭୂତ ସେନାପତି ହୋଇ । ସେ କାମାନନ୍ଦର ନାମେକ ଇନ୍ଦ୍ର ଅମାତ୍ୟ ହୋଇ । ପାର୍ବତୀ ଏହାକୁ ଭୂତଚୂଡ଼ାମଣି ପଦ ଦେଇଅଛନ୍ତି । ଏମନ୍ତେ ସେ ଭୂତଚୂଡ଼ାମଣିକ ରାଜା, ହସ୍ତ (୮) ସେଠା ଦେଇ, ପଦ୍ମଶଲ ସେ ଭୂତ ପୁଙ୍ଗବ ! ପୂର୍ବେ ସହା ପସ୍ତଲେ ସେ ଅଭିନବ ଚୈତନ୍ୟ ନାମେ ଭୁ ଦ୍ରାବିଣ ପଣ୍ଡିତ କଣ୍ଟକରେ ଜନ୍ମ ହୋଇଅଛୁ । ଜ୍ଞାନ ସୁଧାନିଧି ନାମ ବହିଅଛୁ । ସମସ୍ତ ଶାସ୍ତ୍ରେ ନିପୁଣ ହୋଇଅଛୁ । ରୂପ ଗୁଣ ସମସ୍ତଙ୍କୁ ମୋହୁଅଛୁ । ରାଜ୍ୟବିଧି ଶୋଭା ପାଉଅଛୁ । ପୂର୍ବ ଜ୍ଞାନନିଧି ତାହାର ପାସୋର ଯାଉଅଛୁ । ଏହାକୁ ପାଇ ଅବିଦ୍ୟା ମୃତ୍ୟୁ ସଞ୍ଜୀବନ କରଣୀ କନ୍ୟା ଜନ୍ମ ହୋଇଅଛୁ ।

---

(୧) 'କ' ରେ ପ୍ରଳୟ କାଳମାନଙ୍କରୁ (୨) 'ଖ' ରେ ହୁଅନ୍ତି (୩) 'ଖ' ରେ ହୁଅନ୍ତି । (୪) 'କ' ରେ ଭୂତତତ୍ତ୍ୱ ପାଇଲେ ହେଁ । (୫) 'କ' ରେ କୃଷ୍ଣଙ୍କୁ (୬) 'କ' ରେ ଯକ୍ଷିଣୀ (୭) 'କ' ରେ ହାତ (୮) 'ଖ' ରେ ହୋଇଅଛୁ ।

Digitized by srujanika@gmail.com

ଏବେ ସେ କନ୍ୟା କେଉଁ ରାଜା କଟକରେ କେମନ୍ତ ପ୍ରକାରେ ଅଛୁ (୧) ଏହା କହ । ସେ କଥା କର୍ଣ୍ଣକୁ ଭୂଷଣ ଅଟଇ । ମୋତେ ଆନ ନ ଘଟଇ ଶ୍ରବଣ ଅମୃତ ପାନକଲ ପ୍ରାୟେକ ଶୁଣିମି । ମହାଦ୍ୱାର (୨) ବଳେ ହରି ଆଣିମି । ଆଲିଙ୍ଗନ କରିବି । ତାହାର ସ୍ତନକଳସ (୩) ଆଶ୍ରେକର କାମ ଜଳଧି ତରିବି । ତେ‌ଲୋକ୍ୟ ସୁନ୍ଦର ଅଛୁ ତାହାର ଛନ୍ଦି । ତାହାକୁ ଭୋଗକଲେ ସେ ସକଳ ସୁଖ ପାଇ । ସେ କି ବିଦ୍ୟାଧରି, ସୁରାଙ୍ଗନା ବା, ନାଗାଙ୍ଗନା ବା, କି ଦକ୍ଷ କଥା, ଶିବାଙ୍ଗନା, ଦିବ୍ୟ ସୀମନ୍ତିନୀ ବା, ବଳନ—ଦେହା, ମୃଗ ଦର୍ଶିନୀ । ହେ ମିତ୍ର ତୈଲୋକ୍ୟର ମଧ୍ୟେ ଦିବ୍ୟ ସୁନ୍ଦରୀମାନଙ୍କୁ ମୁଁ ବଳେ ଅପହରି ଆଣିପାରଇ । ସେ ଅବା କେତେ ମାତ୍ରଟି । ତାହାର ଜନ୍ମର ବୃତ୍ତାନ୍ତ ଯେ ପୂର୍ବେ କହିଲୁ, ଏବେ ସେ କାହିଁଅଛୁ କହ । ଏହାଶୁଣି ସେ ଭୃତ୍ୟ ବୋଇଲା । ଶ୍ରୀ ଇନ୍ଦ୍ରଜାଲିକ ଯୋଗେନ୍ଦ୍ର ପୁରୁଷ । ପୂର୍ବେ ଯେମନ୍ତ କହିଲି ସେ ପ୍ରକାର ସେ କନ୍ୟା ଜନ୍ମ ହୋଇଲା । (୪) ଈଶ୍ୱର ଆଜ୍ଞାଉଁ କରି ସର୍ବଦା ତାହାର ନବଯୌବନ ସିଦ୍ଧ ହୋଇଲା । ମାନସରୋବର କୂଳେ ତପ କରୁଥା ବୋଲି ପାର୍ବତୀ କହିଲେ (୫) ଥୋକାଏ ଦିନ ଥିବୁ ଯେ ତୋତେ ନେଇ ଆସନ୍ତି ତାହାର ସଙ୍ଗତେ ମୃତ୍ୟୁ ଲୋକକୁ ଯିବୁ । ଧର୍ମଧ୍ୱଜ ରାଜାର ଦୁହିତା ହୋଇବୁ । ତଦନ୍ତରେ ତୋହର ଭର୍ତ୍ତାକୁ ପାଇବୁ । ତୁ ମୋହର ଦେହରୁ ଜନ୍ମ । ତୋହର ଭର୍ତ୍ତା ଈଶ୍ୱରଙ୍କ ସମ । ଏମନ୍ତ ଆଜ୍ଞାପାଇ ସେ କଥା ମାନସରୋବର (୬) କୂଳେ ରହିଲା । ଜଗତ ମୋହିଲା । ଦ୍ୱିତୀୟଚନ୍ଦ୍ର ଉଦୟ ପରି (୭) ମୁଖ ଶୋହିଲା । ମାନସରୋବରରେ ପଦ୍ମବନେ ଅଛୁ । ସେ ସୁବର୍ଣ୍ଣ ପଦ୍ମ ଅଟଇ । କେଶର ପଦ୍ମରାଗ ମାଣିକ୍ୟ, ପୁଷ୍କର ବଜ୍ରକାଠର ହୀରା, ନାଡ଼ମର୍କତ ମୃଣାଳ ଶୁଦ୍ଧସ୍ଫଟିକ । ପରାଗ ସିନ୍ଦୂର । ମକରନ୍ଦ ଅମୃତ । ପଙ୍କ ମୃଗନାଭି କସ୍ତୁରୀ । ସେ ପଦ୍ମ ଜ୍ୟୋତି ଶିଖାମାନେ ଉଠିଅଛନ୍ତି । ସେ ପଦ୍ମ ଶିଶିରେ ନାଶ ନ ଯାଇ । ଚନ୍ଦ୍ର ଉଦୟରେ ଫୁଟଇ । ସର୍ବଦା ମଳିନ ନ ହୋଇ । ପୂଜିତ ହୋଇଥାଇ । ସେ ପଦ୍ମବନକୁ ପବନ ଦେବତା ପଶି ନ ପାରଇ । ଭ୍ରମର ଚୁମ୍ବି ନ ପାରଇ ।

ଲକ୍ଷ୍ମୀଦେବୀ ଅମର ସ୍ତ୍ରୀମାନଙ୍କ ସଙ୍ଗରେ ଯେବେ ସେହି ପଦ୍ମବନରେ ବିହରୁଥାନ୍ତି (୮) । ଏମନ୍ତେ ସେ ପଦ୍ମ ବନରେ, କ୍ରୀଡ଼ା କରନ୍ତେ ଏକ ଦିନେ ସେ କଥାକୁ ଦେଖିଲେ । ଅମୃତ ନୟନେ ନିରେଖିଲେ । ତାହାର ମୁଖ ଚାହିଁ ପୁଣ ପୁଣ ନିରେଖି ଅଶ୍ଚର୍ଯ୍ୟ ପାଇଲେ । ଆଶ୍ଚର୍ଯ୍ୟ ପାଇ (୯) ଆପଣା ଦେହକୁ ଚାହିଁଲେ । ପୁଣି ତାହାର ଦେହକୁ ଚାହିଁଲେ । କାହିଁ

---

(୧) 'କ' ରେ ମାହେନ୍ଦ୍ର ଦ୍ୱାର (୨) 'କ' ପର୍ବତ (୩) 'ଖ' ରେ ହୋଇଲା (୪) 'ଖ' ରେ ବୋଇଲେ (୫) 'ଖ' ରେ ଖାଲି ସରୋବର ଅଛୁ । (୬) 'କ' ରେ ଦୁଇ ଚନ୍ଦ୍ର ପରି (୭) 'ଖ' ରେ ବିହାର କରୁଥାନ୍ତି (୮) 'ଖ' ରେ ହୋଇ (୯) 'ଖ' ରେ ଭାଳିବାକୁଟି ।

Digitized by srujanika@gmail.com

ବିସ୍ମୟରେ ବିଧାତା ସୃଷ୍ଟି ନାଁ ହରଇ । ସେ ନାରୀଙ୍କ ଶିପୂର ସୁନ୍ଦରୀମାନଙ୍କର ଗର୍ବ ହରନ୍ତାକୁଟି (୧) ଏହାକୁ ଜନ୍ମ ଜାଥିଛୁ । ସଙ୍କେତ ବନ୍ଦୀଗନ୍ତା ପତିବାସୀ ଅମର ସ୍ତ୍ରୀମାନେ ଲକ୍ଷ୍ମୀଙ୍କି ବୁଦ୍ଧି ତା ଦେହକୁ ଗ୍ରହାନ୍ତି । ଅନ୍ୟୋନ୍ୟ ବୁଦ୍ଧିଙ୍କର ଚିତ୍ତ ଚକ୍ଷୁ ହରଇ । ଏମନ୍ତେ ସେ ଲକ୍ଷ୍ମୀଦେବୀ ଆପଣାକୁ ଆପଣେ ଅବସରେ ପାଇ ପଣ୍ଡିତାମାନଙ୍କୁ ପଚ୍ଛରିଲେ । ଆଗୋ ମୁଁ ଏ କନ୍ୟାର ପ୍ରାୟେ (୨) ହରଇ କି । ଏହା ଶୁଣି ବୋଇଲେ ସେମାନେ, ସ୍ୱେ ଦେବୀ ତୁ ଜଗତର ଲକ୍ଷ୍ମୀ, ନାରାୟଣର ପାଟମହିଷୀ । ତୁମ୍ଭଙ୍କୁ (୩) ତୁଳନାବାକୁ ନାହିଁ । ପୁଣି ଏହି ତୋହର ଦୁହିତା ପ୍ରାପ୍ତ ହଣଇ । ଅବଶ୍ୟ ମାତାର ତନୁଁ ଯୁବା ହିଁଅ ଶୋଭା ପାଇ । ଏହା ଶୁଣି କମଳା ବିସ୍ମରିଲେ ଏହା ଦେଖିଲେ ନ ପୁଣ ମୋତେ ନାରାୟଣ ଗ୍ରହନ୍ତି । ପୁରୁଷମାନେ ଭ୍ରମର ପ୍ରାୟେ ସିନା । ନବୀନ ଭଲ ପାଇଲେ ଶରଧା କରନ୍ତି । ଏମନ୍ତ ବିଚାରି (୪) ସେ କଥାକୁ ଦୁହିତା କରି କଳ୍ପିଲେ । ବିଚାରିଲେ ମୁଁ ଏହାକୁ ପୁତ୍ରୀ କଲେ ପରମେଶ୍ୱରଙ୍କର ହିଁଅ ହୋଇବ । ଆଉ ସେ ଭାବନା ନ କରିବେ । ଏମନ୍ତ ବିଚାରି, ସେ କଥାକୁ ହକାରି, ଦୁହିତା କରି, ଦିବ୍ୟ ବସ୍ତ୍ର ଅଳଙ୍କାର ଭରି, ଦେବସ୍ତ୍ରୀମାନଙ୍କର ପ୍ରାୟେ କରି ସଙ୍ଗେ ଘେନି ବିହରୁଥାନ୍ତି ।

ଏମନ୍ତେ ସେ ମେରୁପର୍ବତର ଲଗେ, କାଞ୍ଚନସ୍ଥଳୀ ପ୍ରଦେଶରେ, ସିନ୍ଧୁନଦୀତୀରେ, ମଧୁମାଳା ବନ ନିକଟରେ, ଅନ୍ଧକାର ଭୂମି ପାଶରେ, ପୃଥ୍ୱୀତିଳକ ବୋଲି ନାମ କଟକ ବସଇ । ସେ କଟକରେ ଧର୍ମଧ୍ୱଜ ବୋଲି ରଜା ଏକ ହୋଇ । ତାହାର କୋକିଳାବତୀ ବୋଲି ପାଟମହିଷୀ । ସେ ରଜା ଅତ୍ୟନ୍ତ ବୈଷ୍ଣବ ଅଟଇ । ଧର୍ମବନ୍ତ ଅଟଇ । ବାସୁଦେବର ଚିତ୍ତ ମନବୃତ୍ତି ଦେଇ ତାହାଙ୍କ ନାମ ପାରାୟଣ ଥାଇ । ନଡ଼ ଗୋଟିଏ ପ୍ରାପ୍ତ ହୋଇଥାଇ । ସ୍ତ୍ରୀମାନେ ଧନ୍ୟ ସକଳ କର୍ମ କରନ୍ତି । ଦେଖିଥିଲେହେଁ ନ ଦେଖଇ । ଶୁଣୁଥିଲେହେଁ ନ ଶୁଣଇ । ଶୀତ ଉଷ୍ଣ ନ ଜାଣଇ । ଅମାତ୍ୟମାନେ ରାଜ୍ୟ ଚିନ୍ତା କରୁଥାନ୍ତି । ତିକ୍ତ, ଅମ୍ଳ, (୫) କଟୁ, କଷା, ମଧୁର, ଲବଣାଦି ସ୍ୱାଦୁମାନନ୍ତ ନ ଜାଣଇ । ସ୍ତ୍ରୀମାନେ ଯଥୋଚିତ ବେଳେ (୬) ଘଟଣେ ହୁ କରାନ୍ତି । କଣ୍ଠରେ ଘୁଣ୍ଟି ଘୁଣ୍ଟି କରି ଭୁଞ୍ଜାଇ ଦିଅନ୍ତି । ସେ ମାହାତ୍ମା ବାସୁଦେବର ଚିତ୍ତ ମନ ବୃତ୍ତି ଦେଇ ଦେହ ଜ୍ଞାନ ଶୂନ୍ୟ ରଜା ହୋଇଥାଇ । ଏମନ୍ତେ ସେ ରଜା ଦିନକର ଏକାଦଶୀ ଦିନରେ ଉଜାଗର ହୋଇ ବିଷ୍ଣୁଙ୍କ ଧ୍ୟାନ ମଥାରେ ମହାଦୀପ ଦେଇ ବସିଅଛି । ଏମନ୍ତର ସମୟେ ଶତ୍ରୁ ସୈନ୍ୟ ଘେନି ବାହୁଲ । ରଜାଙ୍କୁ ତଗର ଜଣାନ୍ତେ ସେ ରଜା ସମାଧିରେ କରି ସମାହିତ ହୋଇ ବସିଅଛି । ମୀନ ଧ୍ୱଜ, ଆଙ୍କୁଶ, ଶଙ୍ଖ, ପଦ୍ମ, ଚକ୍ର, ମତ୍ସ୍ୟରେଖା ଅଙ୍କିତ ଲକ୍ଷ୍ମୀ ଆଶ୍ରୟ ପାଦପଦ୍ମକୁ ଯତ୍ନ ଚିନ୍ତା କରୁଅଛନ୍ତି, ଉତ୍ତୁଁ କରି

---

(୧) 'ଜ' ରେ ଯଶ (୨) 'କ' ରେ ଚୋରେ (୩) 'କ' ରେ ଏବଂ ଭଳ (୪) 'ଖ'ରେ ଆମ୍ବିଳ (୫) 'ଖ' ରେ କର (୬) 'କ' ରେ ସୈନ୍ୟ ।

Digitized by srujanika@gmail.com

ଆହାର ବରନ୍ତ ନ ଶୁଣିଲ । ଏମନ୍ତେ ଅମାତ୍ୟମାନଙ୍କରେ ଶତ୍ରୁ (୧) ନିବାରଣ ନ ଗଲ । ନ ଯାନ୍ତେ ରାଜାର ନଗରେ ଆସି ଶତ୍ରୁ ରାଜା ସୈନ୍ୟମାନେ ବେଢ଼ିଲେ । କଟକ ଜୁର କଲେ । ମହାଦେଇମାନେ ପୁନଃ ପୁନଃ କରି କଳହଂସୀ ସ୍ୱପ୍ନ ପ୍ରାପ୍ତେ ଧ୍ୱନି (୨) କ୍ରୀଡ଼ା କରନ୍ତେହେଁ ସେ ରାଜାର ସମାଧ ନ ଭଙ୍ଗିଲ ଶତ୍ରୁ ସୈନ୍ୟମାନେ ଭିତରକୁ ପଶିବାକୁ ଲୋଡ଼ିଲେକ ତହୁଁ । ନଗ୍ରେ ଅଗ୍ନି ଲଗାଇବାକୁ ବିଗ୍ଭର କରନ୍ତେ, ସେ ମହାପ୍ରଭୁ ବାସୁଦେବ ବୈଷ୍ଣବମାନଙ୍କର ମାନନ୍ତ (୩) ରକ୍ଷା କରନା ନିମନ୍ତେ ସୁଦର୍ଶନ ଚକ୍ରକୁ ଆଗହୁଁ (୪) ଆଜ୍ଞା ହୋଇଅଛି । ଏମନ୍ତେ ସେ ପୁରକୁ ସେହିଠାରୁ ସୁଦର୍ଶନ ରକ୍ଷା କରଥାଇ । କେବେଁ ଅବକାଶ ନ ଥାଇ । ଏମନ୍ତେ ସେ ରାଜାର ସ୍ତ୍ରୀ କାମ୍ୟ ନାହିଁ, ମୈଥୁନ ନାହିଁ । ବାସୁଦେବର ତହିଁ ଇନ୍ଦ୍ରିୟମାନଙ୍କୁ ସମର୍ପିଥାଇ । ସ୍ତ୍ରୀଙ୍କୁ ବାସୁଦେବ ବୋଲି ଜାଣଇ । ଦେହ ବୁଦ୍ଧି ଥିଲେ ସେ ମଦନ ବଶକୁ ଯିବ ସିନା । ଏମନ୍ତେ ସେ ରାଜା ଲୟରେ ଥାଆନ୍ତେ ହେଁ ଚକ୍ରର କହ୍ନଣସି କଣିକା ମାତ୍ରକ ତେଜରେ ଶତ୍ରୁ ସୈନ୍ୟ ନାଶଗଲ ।

ଏମନ୍ତେ ସେ ରାଜାର ପାଟମହିଷୀ କୋକିଳାବେଗୀ । ଲକ୍ଷ୍ମୀଦେବୀଙ୍କି ଅନେକ ପ୍ରକାରେ ସେବା କରୁଥାଇ । ଅନେକ କାଷ୍ଟରେ (୫) ସେବା କରନ୍ତେ ଲକ୍ଷ୍ମୀଦେବୀ ପ୍ରସନ୍ନ ହୋଇଲେ । ଅର୍ଦ୍ଧ ରାତ୍ରେ ନିବଡ଼ ଅନ୍ଧକାର ମଧ୍ୟରେ ବସି ମହାଲକ୍ଷ୍ମୀଙ୍କି ଧ୍ୟାନ କରନ୍ତେ, ଲକ୍ଷ୍ମୀଦେବୀ ମୂର୍ତ୍ତିବନ୍ତ ହୋଇ, ଭୂମିକି ଅଲଗ୍ନ ଗୃହେ ଆସି ପ୍ରବେଶ ହୋଇଲେ । କେମନ୍ତ ପ୍ରକାରେ ହୋଇ (୬) । ସହସ୍ର ସହସ୍ର ଚନ୍ଦ୍ର, ସହସ୍ର ସହସ୍ର ସୂର୍ଯ୍ୟ, ସହସ୍ର ସହସ୍ର ବିଜୁଳି, ସହସ୍ର ସହସ୍ର ଅଗ୍ନି, ସହସ୍ର ସହସ୍ର ମାଣିକ୍ୟର ଜ୍ୟୋତି ସମସ୍ତ ଚୂର୍ଣ୍ଣୀଭୂତ କଲେହେଁ ସେ ଲକ୍ଷ୍ମୀଦେବୀର କାନ୍ତିକି ସରି ନୋହିଇ । ବକ୍ଷ୍ଣସ୍ଥଳ ଜିଣି ମାଣିକ୍ୟଙ୍କର ଶିଖାମାନେ ଉଠି ଅଛନ୍ତି । ମୁଖପଦ୍ମର ବାସ ଚତୁର୍ଦ୍ଦିଗ ଲୋକଙ୍କୁ ଯାଉଅଛି । ଦେବତାମାନେ କ୍ଷୀରସମୁଦ୍ର ମନ୍ଥି ଯେଉଁ ଅମୃତ ଜାତ କଲେ, ତେମନ୍ତ ସହସ୍ର ସହସ୍ର ଅମୃତ ସମୁଦ୍ରମାନ ମନ୍ଥିଲେ ଯେଉଁ ଅମୃତ କଳା ଉଦ୍ଭବ ତହୁଁ ବିଶେଷ ଅମୃତନିଧି ଅଟଇ । ଏମନ୍ତେ ସେ ଅମୃତ ସମୁଦ୍ରମାନ କୋଟି କୋଟି ହୋଇ ଅଧରାମୃତରୁ ଉଚ୍ଛୁଳିଲା ପରାଏ ହୋଇ ଦିଶୁଅଛନ୍ତି । ଚକ୍ଷୁ ଅପାଙ୍ଗେ ଗ୍ଭହାନ୍ତେ ସଚରାଚର ଜଗତଯାକ ସବୁ ଜନ୍ମ (୭) ପ୍ରାପ୍ତ ହୋଇ ଲବଣୀ ପ୍ରାପ୍ତ ହୋଇ ତରଳ-ଅନ୍ଧକାରେ ଲସ୍ତ ହୋଇ ସୁପ୍ତିର ପ୍ରାପ୍ତେ-ଅଜ୍ଞାନ ହୋଇ । ସେ ଅପାଙ୍ଗ କାଉଁସି ଦେବୀର କାମଦେବ ଅଟଇ । ନାରାୟଣଙ୍କୁ ହିଁ ସେ ଜନ୍ମ ଦୁଃଖ ଦିଅନ୍ତା ଅଟଇ । ଅନନ୍ତରୂପୀ

(୧) 'କ'ରେ ଖୋଲ ( ଗୋଲ ? ) କରି ଆକର୍ଷି କରି । (୨) 'ଖ'ରେ ନାହିଁ । (୩) 'କ'ରେ ଅନେକ ପୂର୍ବହୁଁ । (୪) 'ଖ'ରେ ସେଠାରେ । (୫) 'କ'ରେ ପ୍ରାପ୍ତେକ ହୋଇ । (୬) 'କ'ରେ ଜନ୍ମ । (୭) 'କ'ରେ, ଅନନ୍ତ ରୂପ, ପୃଥ୍ୱୀଭାର ନିସ୍ତନ୍ତ ଅଟଇ ।

Digitized by srujanika@gmail.com

ପୃଥ୍ୱୀଭାର ସହନ୍ତା ଅଟଇ (୧) । ମସ୍ତ କମଠକୁ ଏ ଜଗତଭାର ବହନ୍ତା ଅଟଇ । ନିର୍ଗୁଣ ବ୍ରହ୍ମକୁ ହିଁ (୨) ଗୁଣମାନ କରନ୍ତା ଅଟଇ । ସେ ଅପାଙ୍ଗ ଖେଳରେ ତରଳ ତରଙ୍ଗେ ଗତାଗତ ହୁଅନ୍ତେ, ଏ ଚରାଚର ଜଗତ ସେ ଅପାଙ୍ଗ ସଙ୍କେତେ ଉଦେ ଅସ୍ତ ହେଉଅଛନ୍ତି କି ? ସେ ଚକ୍ଷୁର (୩) ଅପାଙ୍ଗ ଲୀଳାରୁ ବ୍ରହ୍ମା, ଇନ୍ଦ୍ର, ରୁଦ୍ର ପଦମାନଙ୍କର ଲକ୍ଷ୍ମୀମାନେ ସହସ୍ର ସହସ୍ର ହୋଇ ସ୍ଫୁରୁ ଅଛନ୍ତି କି ? ଅମୃତ ଶୀକରମାନେ ପଡ଼ୁଅଛନ୍ତି (୪) କି ? ସେ ଚକ୍ଷୁରୁ କୌଣସି କୋଣ ଭାଗ କରୁଣାର ଚନ୍ଦ୍ର ସୂର୍ଯ୍ୟ ହେଉଅଛନ୍ତି କି ? ସେ ଚକ୍ଷୁ ଅପାଙ୍ଗ ଲୀଳାରେ ଯେତେ ଚନ୍ଦ୍ର ଅନାଦି ସୃଷ୍ଟିଠାରୁ ହୋଇଲେଣି ଏବେ ଯେତେ ଚନ୍ଦ୍ର ହୋଇବେ, ଏ ସବୁ ଚନ୍ଦ୍ରମାନଙ୍କୁ ଏକ କରି (୫) ସବୁଙ୍କର କଳଙ୍କମାନ କାଢ଼ି ପକାଇ, ଅମୃତ ସମୁଦ୍ରେ ମିଶାଇ, ବିଶ୍ୱକର୍ମାକୁ ସେ ବଳାଇ, ଏକ ଚନ୍ଦ୍ର କରି କଳ୍ପିଲେ ହେଁ ସେ ଲକ୍ଷ୍ମୀଦେବୀର ବଦନଚନ୍ଦ୍ରକୁ ସରି ନୋହୁ ନିଉଛଣା ପ୍ରତ୍ୟେକ ହୋଇବ । ସେ ମୁଖଚନ୍ଦ୍ର ଲାବଣ୍ୟ କହୁ ଲେଉଟନ୍ତେ ହେଁ ମନ ବୁଦ୍ଧି ଅସ୍ତକୁ (୬) ଯାନ୍ତି । ଯେଉଁ ମୁଖପଦ୍ମ ଆଶ୍ରେକରି କାମଦେବ ଜଗତେ ଦେବଦଳନ ପଦ ପାଇଲା । ନାରାୟଣଙ୍କୁ ବନ୍ଦୀ କରିବାକୁ ଦୁଇ କର୍ଣ୍ଣେ ଚନ୍ଦ ଚାଟଙ୍କ ଦୁଇ ଭରିଅଛୁ । ସେ ଚାଟଙ୍କ ଦୁଇ କେମନ୍ତ ଅଟଇ । ଏକ ସଂସାର ଚନ୍ଦ, ଆରେକ ଜ୍ଞାନଚନ୍ଦ । ଏ ଦୁହିଁକି ସମପ୍ରକାରେ ଧରିଅଛୁ । ପୁଣି ସେ ଚାଟଙ୍କ ଦୁଇ କେମନ୍ତ ଅଟଇ । ସକଳ ବ୍ରହ୍ମାଣ୍ଡମାନଙ୍କର ଦେବ ଗନ୍ଧର୍ବ ଯକ୍ଷ କିନ୍ନରାଦି କରି ସକଳ କାମଦେବମାନଙ୍କୁ ବନ୍ଦୀ କଲୁ ବୋଲି କର୍ଣ୍ଣରେ କହୁଅଛନ୍ତି କି ? ତହିଁ ଆନ୍ତା ମଣିମାନେ ଦୀପ୍ତମାନ (୭) ହୁଅନ୍ତେ ତହୁଁ ସକଳ ବ୍ରହ୍ମାଣ୍ଡମାନଙ୍କରେ ଆଦିତ୍ୟ କିରଣମାନ ସ୍ଫୁରୁ ଅଛନ୍ତି କି ? (୮) ଜୀବନ ନିଧିର ପ୍ରତ୍ୟେକ ହୋଇ କଣ୍ଠରେ ଶଙ୍ଖିନୀ (୯) ବର୍ତ୍ତୁଳ ଶରଦଚନ୍ଦ୍ର ପ୍ରତ୍ୟେକ ହୋଇ ଧବଳ ମୁକ୍ତା ମାଳମାନ (୧୦) ଶୋଭା ପାଆନ୍ତେ ଦେବତାମାନେ ଅମୃତସ୍ନାନ କରନ୍ତେ ଟୋପି ଟୋପି ହୋଇ ସେ ରହୁଅଛନ୍ତି କି ? ସ୍ତନମଣ୍ଡଳ ଦୁଇ ସକଳ ଜଗତଜୀବନ ନିଧି ଯେ ଅମୃତ ରତ୍ନ ତହିଁ, ପୂରେଇଲା ଅଛୁ କି ? ରୋମ କର୍ଣିକାରେ (୧୧) ଆନ୍ତା ସ୍ୱେଦ କଣିକାମାନେ କାମ ବ୍ରହ୍ମ ବ୍ରହ୍ମାଣ୍ଡକୁ କାରୁଣ୍ୟ ଜଳଟି କି ? ସେ ସ୍ତନ ସଂକଟେ (୧୨) ପଡ଼ି କାମଦେବ ନିମଗ୍ନ ହୋଇଲା କି ? ଗମ୍ଭୀର ନାଭି ସକଳ ଜଗତର ସକଳ ସୁଖ ଥିବାର ବିବର କି ? ମଧ୍ୟଦେଶ ହିଁ ସେ ନାରାୟଣ···କମାଣିବାର ଅଙ୍କୁଶ ସଙ୍ଗତ ବଳୀ କି ? ଚରଣ ଦୁଇ ସମସ୍ତ ବିଦ୍ୟାମାନଙ୍କର, ସମସ୍ତ ନିଧିମାନଙ୍କର, ସମସ୍ତ ଐଶ୍ୱର୍ଯ୍ୟମାନଙ୍କର, ସମସ୍ତ ଜନ୍ମ ତପଫଳମାନଙ୍କର ଆଶ୍ରିତ ଧାମ କି ? ଚରଣେ ପ୍ରଣାମ କରିବାରୁ କରି ରଙ୍ଗ ଲାଗି ସେ

---

(୧) 'ଖ'ରେ ନାହିଁ । (୨) 'ଖ'ରେ ଲକ୍ଷ୍ମୀର । (୩) 'କ'ରେ ଉଠୁ ଅଛନ୍ତି । (୪) 'ଖ'ରେ ଗୋଟିଆଇ । (୫) 'କ'ରେ ଗ୍ରସ୍ତକୁ । (୬) 'କ'ରେ ଜାପ୍ୟମାନ । (୭) 'କ'ରେ ପୁରିଅଛନ୍ତି କି ? (୮) 'ଖ'ରେ ଶଙ୍ଖ ନିଧିରି । (୯) 'ଖ'ରେ ମୁକ୍ତା ମାଳେକ । (୧୦) 'କ'ରେ ସେ ସ୍ତନ ମକରୀରେ (୧୧) 'ଖ'ରେ ନିକଟେ । (୧୨) 'ଖ'ରେ ସମସ୍ତଙ୍କର ।

Digitized by srujanika@gmail.com

ସୂର୍ଯ୍ୟର ଅରୁଣ କାନ୍ତି କି ? ସମସ୍ତ ବ୍ରହ୍ମମାନେ, ସମସ୍ତ ଦେବତାମାନେ, ସମସ୍ତ ଭୂତମାନେ, ସମସ୍ତଙ୍କର (୧) ଧ୍ୟାନ ଚିନ୍ତାମଣି ଇନ୍ଦୁ କି ସେ ? ସେ ପାଦପଦ୍ମ ସ୍ୱର୍ଣପାଦୁକରେ ଅମର ସ୍ତ୍ରୀମାନେ ପ୍ରଣିପତ୍ୟ କରୁଅଛନ୍ତି (୨) ତାହାଙ୍କର ଚୂଡ଼ାମଣିମାନଙ୍କର ଧବଳଶିଖା ଉଠନ୍ତେ ସେ ପାଦପଦ୍ମ ଧୋଇଲ ପରାଏ ହୋଇଅଛୁ'କି ? ସନ୍ଧ୍ୟାବାଳିମାନେ' ସେ ଚରଣ ହୃଦୟରେ ଧରି କୁଙ୍କୁମ ବୋଳିବାରୁ ସେ ଆରକ୍ତ ହୋଇଅଛୁ କି ? ସେ ନଖପଂକ୍ତି ପ୍ରକାଶ ହୁଅନ୍ତେ ଅନ୍ଧକାର ଭୂମିରୁ ଅନ୍ଧକାର ଛଡ଼ାଇଅଛୁ କି (୩) ? ପାତାଳ ତଳ ଅନ୍ଧକାର ନଖ ଜ୍ୟୋତି ପ୍ରକାଶ କରାଉଅଛନ୍ତି କି ? ଏମନ୍ତେ ସେ ଲକ୍ଷ୍ମୀ ଦେବୀ । ସେ ଶ୍ୱେତପଦ୍ମାସନ ହୋଇ, ଶ୍ୱେତ ମଣି ଲଗ, ଶ୍ୱେତ ପଂକଜମାଳା ଧରି, ଶ୍ୱେତ ପଦ୍ମ ଧରି, ଶ୍ୱେତ ବସ୍ତ୍ର ପିନ୍ଧି, ଶ୍ୱେତ ପୁଷ୍ପ କବରୀରେ ବାନ୍ଧି, ଶ୍ୱେତ ଚନ୍ଦନ ଲେପି ହୋଇ (୪) ଶ୍ୱେତ ଚାମର ମଣ୍ଡିଳ ରଥରେ, ଶ୍ୱେତ ଅଶ୍ୱ ଚାରିଗୋଟା ଯୋଚ, ଶ୍ୱେତ ଗଜ ଚାରିଗୋଟା, ଚାରି ପାଶରେ ଶ୍ୱେତ କୁମ୍ଭ ଚାରିଗୋଟା ଧରି ଉଭା ହୋଇଅଛୁ । ସେ ଘଟ ଚାରିଗୋଟା ଶ୍ୱେତ ଗଙ୍ଗାଜଳ ଅମୃତ ସହିତ କରି ତ୍ରୈଲୋକ୍ୟ ଚୂଡ଼ାମଣିରେ ଅଭିଷେକ କରାଉଅଛନ୍ତି । ଏମନ୍ତ ହୋଇ ସେ ଲକ୍ଷ୍ମୀ ଦେବୀ ପ୍ରସନ୍ନ ହୋଇ । ସେ କୋକିଳାବତୀ କଟରେ ଉଭା ହୋଇଲେ । ବର ମାଗ ବୋଇଲେ । ସେ ମହାଦେବୀ ମହାଲକ୍ଷ୍ମୀର ମୂର୍ତ୍ତିକୁ ଚାହିଁ ସେହିକ୍ଷଣେ ଅଜ୍ଞାନ ହୋଇଲ । ମନକୁ ମୋହିଲ । ତ୍ରୈଲୋକ୍ୟ ଶୋହିଲ । ଆନନ୍ଦେ ବୁଡ଼ିଲ । ସ୍ତ୍ରୀ ପୁରୁଷ ବୋଲି ବାରି ନେ ହିଲ । ଆଶ୍ଚର୍ଯ୍ୟ ହୋଇଲ । ମୋହ ଯାଇ ଶୋଇଲ (୫) । ଚାହିଁ ନୋହିଲ । ଅଦୃଶ୍ୟ ଅପୂର୍ବ (୬) ଦେଖିଲ । ତ୍ରିଦିବ ରୂପକୁ ତ୍ରିଦିବ ଦେଖି ଟଳିଲ । ଦଣ୍ଡକେ ସଚେତ ହୋଇଲ (୬) କରପଦ୍ମ ଯୋଡ଼ିଲ । । ବୋଇଲ ହେ ମାତଃ ! ମୋତେ ଯେବେ ଦେବ ବର । ତୋହର ପ୍ରାପ୍ତିକ କରି ସନ୍ତୋଷ କର । ଏହା ଶୁଣି ଗୋପାମଣିଏ (୮) ବୋଇଲେ ହସି । ମୋହର ପରାଏ ହୋଇ ମୁହିଁ ସେ ଅଛୁ । ଆରେକ ଅବତାର ପାର୍ବତୀ ଦେହରୁ ଜାତ କରିଅଛୁ । ସେ ମନୁଷ୍ୟ ରୂପ ହୋଇଅଛୁ (୯) । ତୋହର ଭକ୍ତିବଳେ ତାହାକୁ ଦେବ ଗୋ ମୃଗାକ୍ଷି । ଏମନ୍ତ ବୋଲି ସେ ଅବିଦ୍ୟା ମୃତସଞ୍ଜିବନୀ (୧୦) କନ୍ୟାର ହସ୍ତ (୧୧) ଧରି ପୂର୍ବ କଥା ସୁମରି ବୋଇଲେ ମୁଁ ଏହାଙ୍କୁ ଅଛୁ ଦୁହିତା କରି । ଏ ମୋହର ପ୍ରାଣେଶ୍ୱରୀ (୧୨) ଅନେକ ଯତ୍ନେ ଜନ୍ମ କଲି ଗହଣୀ । ଏହାକୁ ବର ପଣେ ଭଜନ କରିବି । ମୁଁ ତୋତେ ଏହାକୁ ଦେଲି ଦୁହିତା (୧୩) କରି । ଏହାକୁ ଅନେକ ଯତ୍ନେ ପ୍ରତିପାଳି ଥିବୁ । ମୋତେ ଯେମନ୍ତ ଦେଖୁ ତେମନ୍ତ

---

(୧) 'କ'ରେ ପ୍ରମାଣ କରି ଶୁଅନ୍ତେ, ବକ୍ଷରେ କରନ୍ତେ । (୨) 'କ'ରେ ଛାଡ଼ିଅଛୁ କି ? (୩) 'ଖ'ରେ ନାହିଁ । (୪) 'ଖ'ରେ ମୋହ ଜାଲେ ମୋହିଲ । (୫) 'କ'ରେ ଅଦୃଷ୍ଟ ପୂର୍ବ ରୂପ । (୬) 'ଖ'ରେ ନାହିଁ । (୭) କରେ ଯୋଗାମଣି । (୮) 'କ'ରେ ଧରିଅଛୁ । (୯) 'ଖ'ରେ ମୃତସଞ୍ଜିବନୀ କରଣୀ । (୧୦) 'କ'ରେ ହାତ । (୧୧) 'ଖ'ରେ ନାହିଁ । (୧୨) 'କ'ରେ ଝିଅ । (୧୩) 'ଖ'ରେ ବଧୂ ।

Digitized by srujanika@gmail.com

ଦେଖିବୁ । ଏହାର ସକାଶରୁଁ ଅନେକ ଶ୍ରେଷ୍ଠ ପାଇବୁ । ଏ ଅଯୋନି ଜାତ ଅଟଇ । ଏହାର ଅଙ୍ଗସଙ୍ଗ ପାଇବ ଯେ, ଏ ପୃଥିବୀରେ ଦ୍ୱିତୀୟ ଈଶ୍ୱର ସେ । ଏହାକୁ ତୁ ହେଲେ ନ କରିବୁ ହେଳା (୧) । ଏହା ଇଚ୍ଛାଏ ଏ ବରିବ ଯାହା । ଅନେକ ରାଜପୁତ୍ର ଆଣି ସ୍ୱୟମ୍ବର କରିବୁ । ଏହା ମନକୁ ନ ଯୋଗାଇଲେ ବାହୁଡ଼ାଇ ଦେବୁ । ଏମନ୍ତ ବୋଲି ସେ କନ୍ୟାକୁ ସମର୍ପି ଦେଲେ, ଆଲିଙ୍ଗନ କରି କଣ୍ଠରେ କହିଲେ । ଶୁଣ ମାତ ! ହାଦେ ଚୈତ୍ର (୨) ଶୁକ୍ଳ ତ୍ରୟୋଦଶୀ (୩) ଦିନରେ ଶ୍ୱେତ ସରୋବର କୂଳରେ ଯେଉଁ କୁମର ତୋତେ ବିଭ୍ରାନ୍ତ (୪) ହୋଇ ଦେଖିବ (୫) ଈଶ୍ୱର କରି ସ୍ତନକୁ ଟିପିବ. ତୋହର ଗଳାରେ ଅମୃତମଣି ଲମ୍ବାଇବ, ସେ ତୋହର ଚକ୍ଷୁକୁ ଖଣ୍ଡେନ୍ଦୁ,ଚୂଡ଼ାମଣି ପ୍ରାପ୍ତେକ ଦଶିବ । ସେ ତୋହର ଭର୍ତ୍ତା ଟି । ଏହୁ ନିକଟେ ତାହାକୁ ସ୍ୱପନେ ଦେଖୁ ସିନା । ଏବଂଭୂତ ଆଜ୍ଞା ଦେଇ ସେ କନ୍ୟାକୁ ରାଜାର ଦୁହିତା ପଣେ (୬) ଥୋଇ, ପରମେଶ୍ୱରଙ୍କ ପାଦପଦ୍ମ (୭) ସେବା କରିବାକୁ ଗଲେ ବେଗ (୮) ହୋଇ । ଆକାଶମାର୍ଗେ ବୈକୁଣ୍ଠକୁ ଗଲେ । ଶୁଣ ଯୋଗେନ୍ଦ୍ର (୯) ପୁରୁଷ ହାଦେ ଏମନ୍ତ ହୋଇ ସେ କଥା ଅଛୁ ଅବନୀ ତଳକ (୧୦) କଟକରେ । ସେ ଧର୍ମଧ୍ୱଜ ରାଜାର ନଗରେ କୋକିଳାବତୀ ପାଟମହିଷୀ ପୁରେ । ବ୍ରହ୍ମା, ଇନ୍ଦ୍ର, ରୁଦ୍ର ଯାହାକୁ ନ ପାରିବେ ମୂର୍ଚ୍ଛି ଆଉ ଇତର ଲୋକେ ଗ୍ରାର କି କଥା ଅଛୁ । ତ୍ରୈଲୋକ୍ୟ ଯାହାକୁ ସୁନ୍ଦର ପଣେ ନ ଘଟଇ ସେ (୧୧) ପ୍ରାପ୍ତ ହେବାକୁ ଦୁର୍ଲ୍ଲଭ ଅଟଇ । ସେ ପୁତ୍ରୀକୁ ତନ୍ତ ରକ୍ଷା କରିଅଛୁ । ତୁ ଯେ ପଚାରିଲୁ ଜଗତ ସୁନ୍ଦରୀ ସ୍ୱରୂପରେ ସର୍ବାହୁଁ ଶ୍ରେଷ୍ଠ କେ ଅଛୁ ବୋଲି (୧୨) । ସେ କଥା ବିସ୍ତାର କରି ମୁଁ କହିଲି ଯାହା । ଉପାଏ (୧୩) କରି ଆଣି ପାରିଲେ ଆଣ ତାହା । ଏହା ଶୁଣି ସେ ଇନ୍ଦ୍ରଜାଲିକ ଯୋଗୀ ଅଷ୍ଟ ଐଶ୍ୱର୍ଯ୍ୟ ଭୋଗୀ, ହରଷ ହୋଇଲା । ମିତ୍ରକୁ (୧୪) ଆଲିଙ୍ଗନ କରି ବୋଇଲା । ମୁଁ ବିନଷ୍ଟ ହୋଇ ବୋଲୁଅଛୁ (୧୫) ତୋତେ । ସେ ମନ୍ମଥ ସରିତ (୧୬) ନିଧୁକ ପ୍ରାପତ କର ମୋତେ । ଏମନ୍ତ ବଚନ ସେ ଯୋଗୀ ବୋଇଲା । କାମଦେବର ଶରକୁ ଅଇଲା । ଶୀତଳ ନିଶ୍ୱାସ ତପ୍ତ (୧୭) ହୋଇ ବହିଲା । କ୍ଷୁଧା ନ ରୁଚିଲା । ବାଟ ନ ଦିଶିଲା । ଚନ୍ଦ୍ର ରଶ୍ମି ତପତ ଲଗିଲା । ସଜଳ ଶରଧା ଝରିଲା । ମଳୟ ପବନ ଦହିଲା । କାମ ବାଣ ସହିଲା । ଶ୍ରବଣ ମାର୍ଗକେ ମୋହିଲା । ସ୍ୱେଦଧାର ବହିଲା । ମନ କନ୍ୟା ତହିଁ ରହିଲା । ଅପ୍ରାପତ ପ୍ରାପତ କରି କଳ୍ପିଲା ।

---

(୧) 'କ'ରେ ଚଇତ । (୨) 'ଭ'ରେ ଚତୁର୍ଦ୍ଦଶୀ । (୩) 'ଖ'ରେ ସମର୍ପି । (୪) 'କ'ରେ ନିରେଖିବ । (୫) 'କରେ କର । (୬) 'ଖ'ରେ ନାହିଁ । (୭) 'କ'ରେ ବ୍ୟଗ୍ର ବ୍ୟଗ୍ର (୮) 'କ'ରେ ଯୋଗୀନ୍ଦ୍ର (୯) 'କ'ରେ ତ୍ରିଲୋକ । (୧୦) 'କ'ରେ ଏ । (୧୧) 'କ'ରେ ତୁ ଯେ ପଚାରିଲୁ ସେ କନ୍ୟାର କଥା । (୧୨) 'କ'ରେ ଉପାୟ କଲେ (୧୩) 'କ'ରେ ମିତ୍ରକୁ । (୧୪) 'ଖ'ରେ ହୋଇଅଛୁ । (୧୫) 'ଖ'ରେ ଈଶ୍ୱର, 'କ'ରେ ସଞ୍ଜୀବ । (୧୬) 'କ'ରେ ହସ୍ତ । (୧୭) 'କ'ରେ ବଢ଼ି ।

Digitized by srujanika@gmail.com

ଜଟକଟଯାକକୁ କନ୍ୟାରୂପ କରି ଦେଖିଲା । ମନ୍ମଥ ଅଗ୍ନି ଲଗିଲା । ହେଠ ଯୋଗ ଭାଗିଲା । ବନ୍ଧ (୧) ଛନ୍ଦ ତରକିଲା (୨) ଅନୁବ୍ରତ ଚନ୍ଦ୍ର ଗଳିଲା (୩) । କାମପାଶେ ପଡ଼ିଲା । ଘୋଳ ଡମ୍ବରୁ ସଡ଼ିଲା (୪) ଚକ୍ଷୁ ଓଲଟିଲା (୫) । ହୃଦସ୍ଥ ଫୁଟିଲା । ଦର୍ପ ତୁଟିଲା । କାଳ ଭେଟିଲା । ଖଗ ଚନ୍ଦ୍ର ଲଗିଲା । ନିରନ୍ତରେ ମନ୍ମଥ ଜାଗିଲା । ରସପଙ୍କେ ଲସି ତା ଦେହ ହୋଇଲା ଖିନ୍ନ । ଅଙ୍ଗମାନ କି କାମଦେବ କରୁଅଛି ଭିନ୍ନ । ଏବଂଭୂତ ବିରହ ଅବସ୍ଥା ପାଇ ସେ ଅନଳ ଖେଚର ଭୂତକୁ ବୋଇଲା । ହେ ସଖା ! ମୋ କଥା ଯେବେ ଅଛି ମନେ, ଅନ୍ତର ଏଥିକି କାର୍ଯ୍ୟ ହେବ ରହି । ସେ କଟକକୁ ବୋଲି ବେଗ ଯିବା । ଚନ୍ଦ୍ରକୁ ଅବଜ୍ଞା କରି କନ୍ୟାକୁ ହରି ଆଣିବା । ଏ ଗନ୍ଧର୍ବ କନ୍ୟାଠୁଁ ବଡ଼ ନୋହଇ । ଏମନ୍ତ ବିଚାରି ସେ ଯୋଗୀ ନଶ୍ୱାସ ବାଣ, ଯିବାର ଲଗ୍ନ ବିସ୍ତାରି, କାକଚରିତ ଆଚରି, କନକଦଣ୍ଡ ଖଡ଼ଗ ସୁମରି, ବେତାଳମାନଙ୍କୁ ହକାରି ଆଜ୍ଞା ଦେଲା । ଅବିମାଠଳକ କଟକକୁ (୬) କଡ଼ାଅଁ ବୋଲି ବୋଇଲା । ଶଙ୍ଖନାଦ (୭) ବାଇଲା । ଜାଲନ୍ଧରୀ ବିଦ୍ୟାରେ କରି ରଥ ଯୋଟିଏ କରି ସାଜିଲା (୮) ସେ ରଥ ଶୁକ୍ତିଷ୍ଫଟିକର ପ୍ରାୟେ ଦିଶଇ । ରଥଧ୍ୱଜ ପତାକାରେ ବିଜୁଳି ତେଜ ମିଶଇ । ଚକ୍ରଚକ୍ର ଧୂମ୍ରବର୍ଣ୍ଣ (୯) ଦିଶଇ । ରଥ ଭିତରେ (୧୦) କି ନିର୍ଧୂମ ଅଗ୍ନି ପ୍ରକାଶଇ । କୁହୁଡ଼ି ମେଘଖଣ୍ଡ ପ୍ରାୟେକି ସେ ରଥ ଦିଶଇ । ଧ୍ୱନି ମେଘର ଗର୍ଜ୍ଜନ ପ୍ରାୟେକ ଶୁଭଇ । ସେ ରଥେ ସହସ୍ରେ ପିଶାଚୀ (୧୧) ଯୋଚିଲା ଅଛି ।

ସେମାନେ କେ ଉଷ୍ଟ୍ର ମୁଖ, କେ ବ୍ୟାଘ୍ର ମୁଖ, କେ ଶୃଗାଳ ମୁଖ, କେ ଶକୁନି ମୁଖ କେ ବିଡ଼ାଳ ମୁଖ, କେ କାକ ମୁଖ, କେ ଅଶ୍ୱ ମୁଖ, କେ ଗୋ ମୁଖ ଏମନ୍ତ ହୋଇ ସେ ପିଶାଚୀମାନେ (୧୨) ରଥ ବହି ଛନ୍ତି । ଏମନ୍ତେ ସେ ଯୋଗୀ ବାୟୁ, ମାହେନ୍ଦ୍ର, ଅଗ୍ନି, ବାରୁଣୀ ମଣ୍ଡଳ ବିସ୍ତାରି, ବାରୁଣୀ ବେଳେ ଭୈରବ ସୁମରି ରଥରେ ବସିଲା । ମନେ ମନେ ହସିଲା । ଭୂତଗଣେ ବେଷ୍ଟିତ ହୋଇ ରୁଦ୍ର ପ୍ରାୟେକ ଦିଶିଲା । ଏମନ୍ତେ ସେ କଟକକୁ ଗମନ କରି ଯାଆନ୍ତେ, ଆଗେ ହୋଇଛନ୍ତି ଭୂତମାନେ ମେଘ ମଣ୍ଡଳର ପ୍ରାୟେ ଖଣ୍ଡ ଖଣ୍ଡ ହୋଇ ଧୂମ୍ରବର୍ଣ୍ଣ ହୋଇ ହାତରେ ଗୋରୁହାଡ଼ ମାନଙ୍କୁ ଧେନି ଅଛନ୍ତି । ଘୋର ଧ୍ୱନିରେ ଉଡ଼ି ଅଛନ୍ତି । ଗଗନ ମାର୍ଗେ ଛିଡ଼ି ଅଛନ୍ତି । ପଥିକମାନଙ୍କୁ ଲାଗୁଅଛନ୍ତି । ପଣାପଏଡ଼ ମାଗୁ ଅଛନ୍ତି । କାହାକୁ ଜଳେ ବୁଡ଼ାଇ ଅଛନ୍ତି । ଧୋବାରୁଠମାନଙ୍କୁ ହଡ଼ାଇ ଅଛନ୍ତି । ବାଳକ ପୁଅମାନଙ୍କୁ ଲାଗୁ ଅଛନ୍ତି । ତାହାଙ୍କ ପଛେ ପଛେ ଅମୋଘ ପ୍ରେତମାନେ ଗୋଡ଼ାଉ

---

(୧) 'ଖ' ରେ କୁରୁଳିଲା (୨) 'ଖ' ରେ ଛିଦ୍ର ଶବ୍ଦଚନ୍ଦ ଚଳିଲା (୩) 'ଖ' ରେ ନାହିଁ (୪) 'ଖ' ରେ ଲେଉଟିଲା । (୫) 'କ' ରେ ପୃଥ୍ୱୀ ମୁଖ ଟଳକୁ (୬) 'କ' ରେ ସିଂହନାଦ (୭) 'କ' କଳିଲା (୮) 'ଖ' ରେ ଧୂମ୍ରମସ୍ତ (୯) 'ଖ' ରେ ରଥ ଦଣ୍ଡରେ (୧୦) 'କ' ରେ ପିଶାଚ (୧୧) 'କ' ରେ ପିଶାଚ । (୧୨) 'ଖ'ରେ ଦଣ୍ଡ ।

Digitized by srujanika@gmail.com

ଅଛନ୍ତି । ଏମାନେ ଦେହରେ ନର ଅଛ ଅଟନ୍ତି । ସୂଚୀ ମୁଖ ଅଟନ୍ତି । ଗୁଦ୍ର ପ୍ରମାଣେ ପେଟ ଅଟନ୍ତି । ସେମାନେ ଅଙ୍ଗରେ ତୃଷାର୍ତ୍ତି ହେଉଅଛନ୍ତି । ଏମାନଙ୍କୁ ଯୋଗୀ ଅଜ୍ଞା ପ୍ରମାଣେ ସମାଚାରେ କଣ୍ଡ (୧) ପାଣିମାନ ବନ୍ଧ କରନ୍ତରେ ଦେଉଅଛନ୍ତି । ସେ ସୈନ୍ୟଙ୍କୁ ସେ ପାଣି ଦେଇ ତାହା ରେ ସେ ଏକା ପାଣିମାନନ୍ତ ଦେଇ ହୋଇ । ତଦନନ୍ତରେ ପିଶାଚମାନେ ଚାଲୁ ଅଛନ୍ତି । ଏକେ ଆରକେ ବୁଲୁଅଛନ୍ତି । ହସ୍ତୀର ପ୍ରାୟେ ଝୁଲୁ ଅଛନ୍ତି । ମର୍କଟର ପ୍ରାୟ ଲୀଳା କରୁଅଛନ୍ତି । ଖାଦ୍ୟ ପଦାର୍ଥ ଭକ୍ଷଣ କରୁ ଅଛନ୍ତି । ତଦନନ୍ତରେ ବେତାଳମାନେ ହାତରେ ଲୁହା ବାଡ଼ି ଗୋଟାଏ ଗୋଟାଏ ଘେନି ପର୍ବତ ପ୍ରାୟେକ ହୋଇ ଚାଲିଅଛନ୍ତି ।

ଏଙ୍କୁ ଆରେକ ଙ୍କୁ (୨) ଅଛନ୍ତି । ତଦନ୍ତରେ ଚଣ୍ଡମାନ ଚାଲିଅଛନ୍ତି । ସବୁର ପଛରେ ଚତୁଃଷଷ୍ଠୀ ଯୋଗିନୀମାନେ ପଞ୍ଚବାଘ ବାହନ ସହିତ ହୋଇ ଅଛନ୍ତି । ଦୁଇ ପାର୍ଶ୍ୱରେ ଚାମର ଧରିଅଛନ୍ତି । ଭୂତ ସେନାପତି ସେ ଅନଳ ଖେଚର ଗୋଟାଏ ବଡ଼ ଅଶ୍ୱ ସଜକରି ତାହାର ଉପରେ ବସିଅଛି । କେଉଁ ବେତାଳମାନେ ହାତୀମାନ ବନରୁ ଧରିଆଣି ତା ଉପରେ ବସିଅଛନ୍ତି । ଏମନ୍ତେ ସଙ୍ଘୋ ନାମ ଦାକ୍ଷିଣୀ (୩) କୋଳରେ ଧରି ସିଂହନାଦ କରି ପାର୍ବତୀ ସହିତ ରୁଦ୍ର ପ୍ରାୟ ହୋଇ ଯାଉଅଛି । ମହାଭୈରବୀ ଚଣ୍ଡୀମାତୃକା ସହିତ ହୋଇ ସାଙ୍ଗେ ସଙ୍ଗେ ଆସୁଅଛନ୍ତି । ଭୂତ ପ୍ରେତମାନେ ଡାକୁଅଛନ୍ତି । ଏମନ୍ତେ ସେ ଐନ୍ଦ୍ରଜାଲିକ ଯୋଗେଶ୍ୱର ପୁରୁଷ ଗମନ କରିଯାନ୍ତେ, ପିଶାଚ ଗଣମାନ ଖେଁ ଖେଁ ଧ୍ୱନି କରନ୍ତେ, ଭୂତମାନେ ଫେଁ ଫେଁ କରନ୍ତେ, ବେତାଳମାନେ ସିଂହନାଦ ବଜାନ୍ତେ, ଚଣ୍ଡମାନେ ରେ ରେ କାର ଗର୍ଜନ୍ତେ, ଯୋଗିନୀମାନେ ହୁଙ୍କାରେ ରଡ଼ି ପାଡ଼ନ୍ତେ, ଡାକନୀମାନେ ଡାକନ୍ତେ, ସମୁଦ୍ର ମନ୍ଥନର ଦ୍ରବ୍ୟ ଶୁଭୁଅଛି । କି ଗଗନେ ଗନ୍ଧର୍ବ ନଗରେ ମିଶୁଅଛନ୍ତି । କି ନାନାବର୍ଣ୍ଣ ମେଘପଟଳ ପବନେ କରି ଚଳୁଅଛନ୍ତି । ହନ୍ତଶ୍ରୀ ସମୁଦ୍ର ମନ୍ଥନ କରନ୍ତେ ପ୍ରପଞ୍ଚ ନକ୍ଷତ୍ରୀ ହପୁନ ଅଛି । ଏବ ଭୂତ ପ୍ରକାରେ ଗମନ କରନ୍ତେ ଭୂତସେନାପତି ଅନଳଖେଚର, ପ୍ରେତ ସେନାପତି ଅମୁଖ୍ୟ କାପାଳିକ, ମଲ୍ଲ ସେନାପତି ଜାଡ଼ୁ ମଲ୍ଲ, ଚଣ୍ଡ ସେନାପତି ଭୈରମୁଣ୍ଡ, ବେତାଳ ସେନାପତି କାଳକଳ୍ପ, ପିଶାଚ ସେନାପତି କପିଳ ପୈଙ୍ଗଳ ବୀର ସେନାପତି ଧୂମଶିଖା, ଯକ୍ଷ ସେନାପତି ମଣିଭଦ୍ର, ବଜ୍ରଦୈତ୍ୟ, ସେନାପତି ରକ୍ତାକ୍ଷ, ଗୁହ୍ୟକ ସେନାପତି କାନ୍ତ ମୁଖ, ଦାକ୍ଷିଣୀ ସେନାପତି ଶିବା ମୁଖ, ମାତୃକା ସେନାପତି ମାୟାହମ୍ବୀ ଇତ୍ୟାଦି କରି ସମସ୍ତେ ମୁଖରବ ଧ୍ୱନି କରି ବୀର ବେତାଳମାନେ ବାହନ ପଞ୍ଚବାଘ ସହିତାଦି କରି ବେନି ପାର୍ଶ୍ୱେ ଗମନ କରୁଅଛନ୍ତି । ଗଗନମାର୍ଗେ ଭ୍ରମୁଅଛନ୍ତି । ଆକାଶରେ ଡେଇଁ ଝମ୍ପୁ ଅଛନ୍ତି । ଡାକନୀମାନଙ୍କୁ ଧରି ଅଛନ୍ତି । କଳ ପୋଷାଏ ଭରିଅଛନ୍ତି । ଏମନ୍ତେ ସେ ଐନ୍ଦ୍ରଜାଲିକ ସେନା ଘେନି ଯାଆନ୍ତେ, ଅବନୀ ମୁଖ ତଳକ କଟକରେ ପ୍ରବେଶ ହୋଇଲ୍ସ ସପଡ ବସ ଅନ୍ତେ । ସେ କଟକ କୋଣେ ଥାଇଁ ରମ୍ୟସ୍ଥାନ ଦେଖି ରହିଲେ ।

---

(୧) 'କ' ରେ ବୁଲୁ । (୨) 'କ'ରେ ଯକ୍ଷିଣୀ । (୩) 'ଖ'ରେ ଅନ୍ତ୍ରଶ୍ରବରେ ଯାଇ ।

Digitized by srujanika@gmail.com

ହରମ ନଦୀତଟେ ଅମ୍ର ବନେକ ଅଛି । ସେ ବନ ଭିତରେ ହୋଇ ରଉଦ୍ରିସ୍ଥା ଡାକିଣୀଙ୍କ ଆଜ୍ଞା ଦେଇ, ପୁର ଗୋଟିଏ ଭିଆଇ ଅର୍ଣ୍ଣପୂର୍ଣ୍ଣା ମନ୍ତ୍ର ସୁମରି, କଳସ ଚନ୍ଦ୍ରାମଣି ବିଦ୍ୟାରେ ଭରି, ଭୋଗାଦି ପଦାର୍ଥମାନ ଉତ୍ପେନ୍ନ ହୋଇଲା । ସେ ଭୂତମାନଙ୍କୁ ତଳୀ ପ୍ରେତମାନଙ୍କୁ ପତ୍ରାଞ୍ଜଳୀ, ଚଣ୍ଡମାନଙ୍କୁ କୂଢ଼ କୂଢ଼ କରି, ବେତାଳମାନଙ୍କୁ ଖଣ୍ଡକ୍ଷୀର ଭରି ପିଶାଚ ବ୍ରହ୍ମରାକ୍ଷସମାନଙ୍କୁ ମାଂସମାନ ପୋଡ଼ି, ମଲ୍ଲବୀରମାନଙ୍କୁ ମଦବାଟିରେ ଭରି, ଯୋଗିନୀମାନଙ୍କୁ ମଣ୍ଡଳବଳୀ କରି, ଅନ୍ନ ବ୍ୟଞ୍ଜନ ସମସ୍ତେ ନେଇଁ ଖାଇଲେ । ସେ ଦିନ ତହିଁ ସୁସ୍ଥ ହୋଇ ରହିଲେ । କଙ୍କାଳମୁଖା ବେତାଳକୁ ହକାରି ଶୂନ୍ୟକରି ପଠାଇଲେ । ସେ ବେତାଳକୁ ଆଜ୍ଞା ହୋଇଲା । ତୁ ଧାରେକାରେଁ ଦିଗୁ । ତୁଷ୍ଟ ହେବେ ଯାହିଁ ପ୍ରବେଶ ହୋଇବୁ । ବଳାବଳ ଦୃଶ୍ୟାଦୃଶ୍ୟ ହାନିଲାଭ ପରୀକ୍ଷାକରି କନ୍ୟା ଥିବା ଭୂମି ମଣି ଆସିବୁ । ସେ ଯୋଗେନ୍ଦ୍ରର ଆଜ୍ଞା ପାଇ, ସେ ବେତାଳ ହରଷ ହୋଇ, ବିଡ଼ାଳ ବେଶ ଧରି, ଉଲୂକ ବିଦ୍ୟାରେ କରି, ସେ କଟକେ ପ୍ରବେଶ ହୋଇଲା । ସମସ୍ତ କଥାମାନ ଜାଣି ଅନ୍ତେଶ୍ୱରେ ମିଳିଲା । ଦ୍ୱାମେନ ଜଣି କନ୍ୟାରୂପ ଦେଖିଲା ଯହୁଁ, ସେହିକ୍ଷଣି ମୋହ ଯାଇ ପଡ଼ିଲା ତହୁଁ । ଦଣ୍ଡକେ ଚେତା ପାଇ ଧୈର୍ଯ୍ୟ ହୋଇ ବୋଇଲା । ଆହେ ଦୃଢ଼ ପାଟଙ୍ଗ ତଏ । ଏ କନ୍ୟା ପୃଥ୍ୱୀଙ୍କ ଧନ୍ୟ ଧନ୍ୟ । ସମସ୍ତ ଯୋଗେଶ ଯୋଗୀ । ଏହାପାଇଁ କମ୍ପା ନ ମରିବ ଯୋଗୀ । ଏମନ୍ତ ବିଚାରି, ସେ ନବର ଭିତରେ ରହିଲା ଦିନାଗ୍ରରେ । ଭଲ ପଦାର୍ଥମାନ ମନ୍ତ୍ରାର୍ଥ ରୂପେ ଖାଇଲା । କନ୍ୟାର ସକଳ ଚେଷ୍ଟାମାନ ମଣିଲା । ଏମନ୍ତେ ସକଳ କଥାମାନଙ୍କୁ ବୁଝିଲା ।

ପଞ୍ଚ ଦିବସ ଭିତରେ ଯୋଗୀ ସମ୍ମୁଖରେ ମିଳିଲା । କରପଦ୍ମ ଯୋଡ଼ି ବୋଇଲା । ହେ ନାଥ ! ତୋହର ଆଜ୍ଞା ପ୍ରମାଣେ ଗଲି । ଗୁପ୍ତ ରୂପ ଧରି ନଗରେ ପ୍ରବେଶ ହୋଇଲି । ନଗରରେ ରଥ ଗଜ ଅଶ୍ୱରେ ପୂର୍ଣ୍ଣ, ପଦାତି ରଥୀ ମହାରଥୀରେ ପୂର୍ଣ୍ଣ, ସମୁଦ୍ର ପ୍ରାୟେ କଟକ ଶୋଭା ପାଉଅଛି । ପଞ୍ଚଶବ୍ଦ ଭେରୀ ବାଜୁଅଛି । ହାଟ ପେଣ୍ଠମାନ ପରିମଳ ଅଟଇ । ରାଜମାର୍ଗେ ଲଜ୍ଜମ୍ବିନୀ ସ୍ତ୍ରୀମାନେ ରାଜହଂସୀ ପ୍ରାୟେକ ଗମନେ ଶୋଭା ପାଉଅଛନ୍ତି । ନଗର ଭିତରେ ପଶିବାକୁ ନ ହୁଅନ୍ତି ଲୋକମାନେ ରକ୍ଷୀ ଅଛନ୍ତି । ପ୍ରଥମ ସିଂହଦ୍ୱାରେ ଚତୁର୍ଦ୍ଦଂଷ୍ଟ୍ରା । କେତେଣ ଦ୍ୱାରେ ଢଙ୍କାମାନ ହୋଉଅଛି । ଶ୍ୱେତବର୍ଣ୍ଣ ପର୍ବତ ଶୃଙ୍ଗ ପ୍ରାୟେକ ଦଶ ସହସ୍ର ମତ୍ତଗଜ ସେ ଦ୍ୱାରେ ଅଛନ୍ତି । ତାହାଙ୍କର ମଦଧାରମାନ ପଡ଼ିବାରୁ କରି ପଥ ପିଚ୍ଛିଲ ହୋଇଅଛି । ପୁଣି ସେ ଦ୍ୱାରେ ବାୟୁ ବେଗ ଅଶ୍ୱେ ଅଛନ୍ତି । ଆର ଦ୍ୱାରେ ଅମନାତ୍ୟ ଅଛନ୍ତି । କାହିଁ ରଥ ଘର ଛନ୍ଦ ଆକାର, କାହିଁ ଦିବ୍ୟ ଘର, ସହସ୍ର ଘର, ହେମ ଘର । ଏଣେ କରି ପୁରୁଷ ବୃତ ହେଉଅଛି ଉତ୍ତମ ମଲ ଗୋଟାଏ ନଗର ରକ୍ଷା କରନ୍ତି । ମୁହିଁ କଷ୍ଟେ କଷ୍ଟେ ଭିତରେ ପଶିଲି । ଅନ୍ତଃପୁରେ ପ୍ରବେଶ ହୋଇଲି । ତହିଁ ସେ କନ୍ୟା ଅଛି । ତାହାକୁ ଦେଖିଲେ ଇନ୍ଦ୍ର, ବ୍ରହ୍ମା, ରୁଦ୍ର, ନ ପାରିବେ ମୂର୍ଚ୍ଛି । ମୁହିଁ ତା ମୁଖ

Digitized by srujanika@gmail.com

ଦେଖିବା ମାତ୍ରେକେ କାମଶର ଅଜ୍ଞାନ କଲା । କନ୍ୟାର ଅପାଙ୍ଗ ଅଗ୍ନିରେ ଘୃତ ଖଣ୍ଡ ପ୍ରାପ୍ତେକ ହୋଇ ତରଳି ମ୍ଭୂଥିଲା । କଷ୍ଟେ କଷ୍ଟେ ପ୍ରାଣ ପାଇ ଜିଇ ଅଛିଲା । ସେ କନ୍ୟା ସ୍ୱପ୍ନେ ଏକ ଦିନକେ ଏବଂ ପୁରୁଷେକ ଦେଖିଲା । ଦେଖି ଅତ୍ୟନ୍ତ ବିରହ ହୋଇଲା । ତାହାର ସଖୀ ଯେ ଚିତ୍ରବନ୍ତୀ ସେ ମନ୍ତ୍ରୀ ଦୁହିତା । ସେ ତାହାକୁ ସକଳ ଭୁବନ ଯୁବା-ମାନଙ୍କୁ କହିଲା । ଚିତ୍ରପଟ ଲିହି ଦେଖାଇଲା । କାହାର ରୂପକୁ ନ ଭଜିଲା ସହୁଁ । ରୁଦ୍ର ସୁଧାନିଧି କୁମରଙ୍କୁ ଚିତ୍ରପଟେ ଲିହି ଦେଖାଇଲା ତହୁଁ ।

ସେ କୁମରଙ୍କୁ ଦେଖି ଲଜ୍ଜା ପାଇ କନ୍ୟା ମଥା ପୋତିଲା । ହରଷ ହୋଇଲା । ଏହି ଯେ ପ୍ରାଣେଶ୍ୱର ମୋହର ବୋଲି ବୋଇଲା । ଶୁଦ୍ଧସ୍ଫଟିକ କାନ୍ଥରେ ମୃଗନାଭି କସ୍ତୁରୀ ଘେନି କୁମରଙ୍କୁ ଲିହି ନିଜ ନେତ୍ରରେ ଦେଖୁଥାଇ । ଆନକଥାରେ ରସ ନପାଇ । ସ୍ତନ ମଣ୍ଡଳର ମଧ୍ୟେ ତାହାକୁ ଆରୋପି ଉପବେଶ କରୁଥାଇ । ମନେ ମନେ ଆଲିଙ୍ଗନ କରୁଥାଇ । ସଖୀମାନେ ନିବର୍ତ୍ତି କରାଇ ବୋଧୁଥାନ୍ତି । ତାହାର ମନଜ୍ଞାନ ସ୍ୱପ୍ନ ବୁଝି ରୁଦ୍ର ସୁଧାନିଧି ଚିନ୍ତି ସେ ଥାଇ । ଏତେବେଳ ସଖୀଙ୍କ କଥା ଏମନ୍ତ । ଏବେ ଉପରକୁ କାର୍ଯ୍ୟ ବିଚାର କରିବା ଯେମନ୍ତ । ଏ ବଚନ କହିବା ମାତ୍ରକେ କାମାନନ୍ଦ ଯୋଗୀର ବିରହ ବାଧା ଦ୍ୱିଗୁଣ ହୋଇଲା । ଅଗ୍ନିରାଶି ଯେମନ୍ତ ଘୃତଧାର ପାଇଲା । ଅତି ଆକୁଳ ହୋଇ କାମ ପୀଡ଼ା ପାଇ ସେନାପତିମାନଙ୍କୁ ଯେନ ଚିନ୍ତୁଥୁ ଅଛି । କିସ ଉପାୟେ କରିବା । ଏମନ୍ତ ଶୁଣି ଜଣେ ବୋଇଲା ବଳେ ଆଣିବା । ଆରେକ ବୋଇଲା ଧନ ଦେଇ କିଣି ଆଣିବା । କେ ବୋଇଲେ । ଷେଳକ ଲଗାଇବା । କେ ବୋଇଲା ରାଜାକୁ ଲଗିବା କନ୍ୟାଦାନ ମାଗିବା । କେ ବୋଇଲା ନଗ୍ର ପୋଡ଼ିବା । କେ ବୋଇଲା ବାଳକଙ୍କୁ ଲଗିବା । କେ ବୋଇଲା ମୋହନ କରିବା । ଉଲୂକ ବିଦ୍ୟାରେ କରି ଖଟ ସହିତେ ମୃଣ୍ଡିଆଇ ଆଣିବା । କେ ବୋଇଲା କୁହୁକ କରିବା । କେ ବୋଇଲା ଇନ୍ଦ୍ରଜାଲ ଦେଖାଇବା । କେ ବୋଇଲା ମହାଦେବୀଙ୍କ ନଗିବା । ସମସ୍ତ ଲୋକଙ୍କୁ ଘଉଡ଼ାଇ ଦେଇ ସେ କନ୍ୟା ଆଣିବା । କେ ବୋଇଲା ଅନ୍ଧକାର କରିବା । କରି ଖଟ ମୃଣ୍ଡିଆଇ ଆଣିବା । କେ ବୋଇଲା ମହାଦେବୀଙ୍କ ଅବତାର କରିବ । ସେ ମୃଗକେଶୀକି ତୋ ପାଶେ ସମର୍ପାଇବ । ଦ୍ୱାକ୍ଷିଣୀମାନେ ବୋଇଲେ ଆଣି ମୁଁ ଦେଇ । ତାହାର ଇଚ୍ଛାଏ ଆସିବ ଏକା ହୋଇ । ଅନିଳଶେଖର ବୋଇଲା ମୁଁ ପବନ ସ୍ୱରୂପ ହୋଇ କଟକଯାକ ଦେବ ଉଡ଼ାଇ । କଙ୍କାଳ ମୁଖ ଏକା ମୋହର ସଙ୍ଗତେ ଥିବ । ଉଡ଼ୁ ଉଡ଼ୁ କନ୍ୟାକୁ ଧରି ଆଣିବ । ଏବଂ ଭୂତ ବିଚାର କରନ୍ତେ ଭୂତମାନେ ବୋଇଲେ କମାରୁ ଅନଧରୁ । କଟକଯାକ ଆମ୍ଭେ ମୃଣ୍ଡିଆଇ ଆଣିପାରୁଁ । ଚଣ୍ଡମାନେ ବୋଇଲେ ଆମ୍ଭେ ଯୁଦ୍ଧ କରିବୁଁ । ଶର ସନ୍ଧାନ କରି ସେ କନ୍ୟାକୁ ଆଣିମୁଁ । ଯୋଗୀ ବୋଇଲା ବ୍ରହ୍ମଦୈତ୍ୟ ଜଣେ ପଠିଆଇବା । ସେ କନ୍ୟାକୁ ଲଗୁ । ତାହାର ବୋଲେ ନ ଛାଡ଼ୁ । ଆମ୍ଭେ ରାଉଳ ପଶି ଯିବୁଁ । ସତ୍ୟ କରାଇ ସେ କନ୍ୟାକୁ ଆଣିମୁଁ । ସୁନ୍ଦରୀ

Digitized by srujanika@gmail.com

କ ସେ ସମର୍ପି ଦେଲେ । ଏ ବ୍ରହ୍ମରାକ୍ଷସ ଆସିବ ଅନ୍ତର ହୁଲେ । ନୋହିଲେ ଦେଇବୁ ସେହନିମି ପ୍ରାଣ । ଏହି ବସ୍ତର ସେ ଅଟଇ ପ୍ରମାଣ । ଏମନ୍ତ ବଗୃଶ ସେ ଭୂତ ସୈନ୍ୟକୁ ପେଷିଦେଲ । ବାର ସହସ୍ର ଅଠଶ ଭୂତ ଗଣିତା ହୋଇଲ । ସେ ଭୂତମାନଙ୍କୁ ଆଜ୍ଞା ଦେଲ । ତୁମ୍ଭେ ଅନ୍ତପୁରମାନଙ୍କୁ ଲଗ ବୋଇଲ । ଥୋକାଏ ଲଗିବ ଅନ୍ୟଧାମାନଙ୍କୁ । ଥୋକାଏ ଲଗିବ ଜନ ପ୍ରଜାଙ୍କୁ । ବେତାଳମାନଙ୍କୁ ବୋଇଲ ହସି । ତୁମ୍ଭେ ହସ୍ତୀ ଘୋଡ଼ା ଫେଡ଼ିଦଅ ପଣି । ଚଣ୍ଡମାନଙ୍କୁ ବୋଇଲ ତୁମ୍ଭେ ଯିବ । ନଗ୍ରଆଙ୍କାନ୍ତେ ଅଗ୍ନି ଜାଳିବ । ପିଶାଚମାନଙ୍କୁ ଡାଆରେ କହିଲ । ବାଳ ପୁଅମାନଙ୍କୁ ଡରାଅ ବୋଇଲ । ଯୋଗ୍ନୀମାନଙ୍କୁ ଅଜ୍ଞା ଦେଲ ରାଇ । ଅନ୍ତଃପୁରେ ଧ୍ୱନିକରିବ ଚମତ୍କାର ହୋଇ । ଉପଦର୍ପ-ନାମ ଦାକ୍ଷିଣୀ କି ବୋଇଲ ତୁ ଯିବୁ ହାତୀ ଘୋଡ଼ା ସୈନ୍ୟ ହରି ଆଣିବୁ । ବେତାଳମାନଙ୍କୁ ବୋଇଲ ତୁମ୍ଭେ ଅଦୃଶ୍ୟ ହୋଇବ । ଅନ୍ନେଶ୍ୱର ପୂଜାପାକ ଚୁଲୁଥିବ । ସହସ୍ର ସହସ୍ର ହୋଇ ଭସ୍ମ କରାଇବ । ଖାଇବ ନାହିଁ । ଅଗ୍ନିଲକେତର ଭୂତକୁ ବୋଇଲ । ତୁ ବେଗେ ପବନ ରୂପ ହୋଇବୁ । ତୁଳା ପରାଏ କରି କନ୍ୟାକୁ ଉଡ଼ାଇ ଆଣିବୁ । ଉଗ୍ରଚଣ୍ଡି ମୁଣ୍ଡକୁ ବୋଇଲ ତୁ ଥିବୁ ଲୁକି । ଏ ଗୋଳମାଳ ହେଉଥିଲେ ମୋତେ ଦେବୁ ଡାକି । ବ୍ରହ୍ମ-କୁମାର ଚଣ୍ଡକୁ ବୋଇଲ । ତୁ ଏହିକ୍ଷଣି ଯିବୁ । ଯାହାର ଘରେ ଚୁଲ୍ଲି ଜାଳି ନ ଦେବୁ । ଶଙ୍କୁକର୍ଣ୍ଣକୁ ବୋଇଲ ଧାଡକାରେ ଯିବୁ ଧାଇଁ । ପାଣି କୁମ୍ଭମାନଙ୍କୁ ଦେବୁ ଜଳରେ ବୁଡ଼ାଇ । ସୂଚୀ ମୁଖକୁ ବୋଇଲ ସୂଚୀ ମୁଖେ ହାଣ୍ଡି କଣା କରିବୁ । ବେଳ ପଡ଼ିଲେ ସେ କନ୍ୟାକୁ ଆଣିବୁ । ସାମୁଣି ଚଣ୍ଡିକୁ ବୋଇଲ ସହସ୍ର ସହସ୍ର ସାଗୁଣା ଘେନି କଟକରେ ଉଡ଼ୁଥିବୁ । ଚିଲ ଯେମନ୍ତ ମାଂସ ଘେନି ଯାଇ ଝାମ୍ପି । ରୁଦ୍ର ବେଳ ପଡ଼ିଲେ କନ୍ୟାକୁ ଆଣିବୁ ରାମ୍ପି । ସରଳାନାମ ଦାକ୍ଷିଣୀକି ବୋଇଲ । ତୁ ଯିବୁ । କନ୍ଦରୁ ତାହାର ଲକ୍ଷ୍ମୀ ହରି ଆଣିବୁ । ଜାଡ଼ ମଲ୍ଲିକୁ ହକାରି ଦେଲ, ଉପଦେଶ । ରାଜାର ହୃଦସ୍ଥରେ ଯାଇ ହୋଇବୁ ତୁ ପ୍ରବେଶ । ପ୍ରେତମାନଙ୍କୁ ବୋଇଲ ତୁମ୍ଭେମାନେ ଯିବ । କନ୍ୟା ପ୍ରାପତ ହୋଇବା ଯାଏ ଭସ୍ମ ଦେଖାଉଥିବ । ସୁଷୁପ୍ତି ବ୍ରହ୍ମମାନେ ହେଉଥିବେ ଟଣ୍ଡେ । ଗୋବ୍ରହ୍ମଣମାନ ମାରୁଥିବ ନିତ୍ୟେ । ଶୃଗାଳ ମୁଖା ଚଣ୍ଡକୁ ବୋଇଲ, ତୁ ହାଦେ ଲାଲୁ ସ୍ୱରୂପ ହୋଇବୁ । ନଗର ସ୍ତମ୍ଭ ପାରୁଶରେ ଭସ୍ମ ଦେଖାଇବୁ । ଇଷ୍ଟପଦ ମାତୃକାମାନଙ୍କୁ ଆଜ୍ଞାଦେଲ । କନ୍ୟା ଛୀଡ଼ା ନଦୀରେ ରହି ଜଡ଼ିତ ହୋଇ ନାବ ସ୍ୱରୂପେ ଥିବୁ । କନ୍ୟା ବସିଲେ ବୁଡ଼ାଇ ଆଣିବୁ । ଚତୁଃଷଷ୍ଠୀ ଯୋଗ୍ନୀକି ବୋଇଲ ହର୍ଷେ । କନ୍ୟାର କୋଠାପୁରେ ତୁମ୍ଭେ ମଣ୍ଡପ ହୋଇଥିବ । ମଣ୍ଡପେ ବସିଲେ କନ୍ୟା ଉଡ଼ାଇ ଆଣିବ ଆକାଶେ । ଏମନ୍ତ ପ୍ରକାରେ ଉପାୟମାନ ସମସ୍ତଙ୍କୁ ଦେଇ । ତୁନି ହୋଇ ରହିଲ ସେ କନ୍ୟାକୁ ଟଣ୍ଡେ ଧ୍ୟାୟି । ସେ ଯୋଗୀର ଆଜ୍ଞା ପ୍ରମାଣେ ସମସ୍ତେ ହେଁ ଗଲେ । କଟକ ଗୋଠାରେ ପଶି ଅରିଷ୍ଟି ଉତ୍ପାତ ଭସ୍ମ ଗୋଳମାଳମାନ ଜାତ କଲେ । ଅନ୍ତଃପୁର ଗୋଳ ସବୁହିଁ ବଳିଲ । ତାହାରେ ଏକଘର ଛାଡ଼ି ଆରକ ପଳାଇଲ । ହାତୀମାନେ ଫିଟି ବୁଲିଲେ ଦାଣ୍ଡେ । ଉଲଗ୍ନ ହୋଇଲେ ସ୍ତ୍ରୀମାନେ ବସନ ବାନ୍ଧିଲେ ମୁଣ୍ଡେ । ବାଳପୁଅମାନେ କାରନ୍ତରେ ରଡ଼ିଲେ । ଧ୍ୱଜ

Digitized by srujanika@gmail.com

ପତାକାମାନ ଛିଣ୍ଡି ପଡ଼ିଲେ । ବେବଣ ଲୋକମାନେ ଭୂମିରେ ଗଡ଼ିଲେ । କାକ ଶୃଗାଳମାନ ନଗରରେ ଧାଇଁଲେ । କେଉଁଆଡ଼େ ସୈନ୍ୟବଳ ଦିଶଇ । କେଉଁଆଡ଼େ ଅନ୍ଧକାର ମିଶାଇ । କେଉଁଆଡ଼େ ସର୍ପେ ପୂରିଲେ । ଗୃହ କଣ୍ଠରେ ବୋବାଳି ପାଡ଼ିଲେ । ସ୍ତ୍ରୀମାନେ ଅବତାର ହୋଇଗଲେ । ନଗର ଭିତରେ ଅଗ୍ନି ଲାଗିବ ବୋଇଲେ । ଯେବଣ ଅମନାତ୍ୟମାନେ ଡାଳକରି ଲେଉଡ଼ନ୍ତି । ତାହାର ବାଳ ଧରି ବେତାଳମାନେ ପାଡ଼ନ୍ତି । କଉଁ ଭୂତମାନେ ଗୋରୁ ପ୍ରାୟେ ହୋଇ ରଡ଼ି ଛାଡ଼ନ୍ତି । ସୁନ୍ଦରୀମାନଙ୍କୁ ବଳାତ୍କାରେ ଉପଭୋଗ କରନ୍ତି । ହୁଙ୍କାର ମୁଖ ନାଦ ଛାଡ଼ିବାର ଶବଦେ ଯେବଣ ଅମନାତ୍ୟମାନେ । ଆକାଶ ହିଁ ପୂରିଅଛି ଗୋଳନାଦେ । ଘୋଡ଼ା ହାତୀ ମନୁଷ୍ୟରେ ହୋଇଲା ଗହଳ । ହୁରିଆ ଜଳିଥାଏ କଲେକ ଗୋଳ । ସକଳ ଉତ୍ପାତ ଅତିଶ୍ରେ ଉତ୍ପାତମାନ ଦେଖି । ଲୋକେ ପଳାଉ ଅଛନ୍ତି ହୋଇଣ ମନେ ଦୁଃଖୀ । କେ ବୃକ୍ଷମାନଙ୍କେ ଉଠିଅଛନ୍ତି । କେ କପାଟ କଳି ପଶୁଅଛନ୍ତି । କେ ଜଳ ଭିତରେ ରହିଅଛନ୍ତି । କେ ଆଟୁଗମ୍ଭୀରରେ ବସିଅଛନ୍ତି । କେ ଅଳି, ମାଳିମାନ ଲୁଚିଉ ଅଛନ୍ତି, କେ ପର୍ବତ ଗୁହାକୁ ପଳାଉ ଅଛନ୍ତି । କେ ଅରକ୍ଷି ବୋଲି ଡାକୁ ଅଛନ୍ତି । କେ ନରସିଂହ ନରସିଂହ ଜପୁ ଅଛନ୍ତି । ଏମନ୍ତରେ ନଗର ଭିତରେ ପଶି ରଜାକୁ ହିଁ ବ୍ରହ୍ମଦୈତ୍ୟ ଆକର୍ଷି ଅଛନ୍ତି । ବିଷ୍ଣୁ ତେଜେ ଆହ୍ୱାଦ ନ ପାରନ୍ତି । ଯୋଗୀ ଆଜ୍ଞାକୁ କରିଅଛନ୍ତି ଆବୋରି । ଏବଂଭୂତ ପ୍ରକାରେ ନାହାରେ ଭିତରେ ଗୋଳ ବାଜିଲା ଯହୁଁ । ରଜା ଚନ୍ଦ୍ରାପାଳ ବାସୁଦେବଙ୍କୁ ସୁମରଣା କଲା ତହୁଁ । ସୁଦର୍ଶନ ଚକ୍ର ସେହିକ୍ଷଣି ଜାଣିଲେ । କୋଟି ସୂର୍ଯ୍ୟ ତେଜ ହୋଇ ସେହିକ୍ଷଣି ଅଇଲେ । ସେ ଚକ୍ର କେମନ୍ତ ଅଟଇ । ମହାଶକ୍ତି ଅଟଇ । ଦିବ୍ୟ ଜ୍ୟୋତି ଅଟଇ । ଅନନ୍ତବୀର୍ଯ୍ୟ ଅଟଇ । ସମସ୍ତ ଠାବେ ଉଦେ ହୁଅନ୍ତା ଅଟଇ । ଅମୋଘ ଅଟଇ । ସେ ଚକ୍ର ବାସୁଦେବର ଆଜ୍ଞା ପ୍ରମାଣେ । ବୈଷ୍ଣବମାନଙ୍କୁ ରକ୍ଷା କରିବା ନିମିତ୍ତେ ଗୁପ୍ତ ହୋଇ ବୈଷ୍ଣବମାନଙ୍କ ସନ୍ନିଧିରେ ଥାଇ । ଏମନ୍ତେ ସେ ରଜା ସୁମରିଲେକ ଯହୁଁ । ସେ ଚକ୍ର କେହୁଣସି ତେଜ କଣିକାମାତ୍ର ଉଦେ ହୋଇଲେକ ତହୁଁ । ପ୍ରଳୟ କାଳର ଅଗ୍ନି ରଶ୍ମିକ ତେଜ ପ୍ରକାଶିଲେ । ଭୂତମାନେ ଯେ ଯହିଁ ରହିଥିଲେ ଦରପୋଡ଼ା ହୋଇ ଫେ ଫେ ନାଦ କରି ପଳାଇଲେ । ଚକ୍ରତେଜକୁ ସହିଁ । ମୂର୍ଚ୍ଛାଗତ ହୋଇ । ଗତପ୍ରାଣ ପାଇ । ଚଢ଼େଇ ପ୍ରାୟେ ହୋଇ ଉଡ଼ି ବକଲେ ପଳାଇଲେ । ବ୍ରହ୍ମରାକ୍ଷସମାନେ ପେଡ଼ିମଲେ । ଯୋଗିନୀ ବେତାଳମାନେ ଜାହି ଜାହି ବୋଲି କଷ୍ଟ କଷ୍ଟ ହୋଇ ଗଲେ । ମୂର୍ଚ୍ଛାଗତ ହୋଇ ପୁଣି ପ୍ରାଣ ପାଇଲେ । ଆମୋକ୍ଷ ପ୍ରେତମାନେ ପ୍ରେତ ଦେହ ଛାଡ଼ି । ଚକ୍ରରେ ପୋଡ଼ନ୍ତେ ବସିଲେ ସ୍ୱର୍ଗପୁର ମାଡ଼ି । ଏମନ୍ତେ ସେ ସବୁ ବରତଣିଅମାନେ ଯାଇ । ଯୋଗୀ କଣ୍ଠରେ ପଡ଼ିଲେ କରୁଡ଼ି ହୋଇ । କେ ଢଣି ଢଣି ଶୋଷେ ବୋଲୁଅଛି । କେ ପାଣି ପିଉଅଛି । କେ ନାନା ରଡ଼ି ପାଡ଼ୁଅଛି । କେ ପୋଡ଼ା ଦାଢ଼ି ଘସୁଅଛି । କେ ଯୋଗୀ କୁ ଛାଡ଼ି ବନ ମାର୍ଗରେ ପଳାଉଅଛି । କେ ଅଚେତନ ହୋଇ ପଡ଼ୁଅଛି । କାହା ଦେହରୁ ପ୍ରାଣ ଛାଡ଼ୁଅଛି । କେ ମାଙ୍କଡ଼ ଦାନ୍ତ ଦେଉଅଛି । କାହା ଦେହରୁ ସବୁ କାନ୍ତି ତୁଟିଅଛି । କେ ମୁହଁ ମାଡ଼ି ଶୋଇଅଛି ।

Digitized by srujanika@gmail.com

କାହା ଦେହରୁ ଅଙ୍କୁର ସରଅଛୁ । କାହାର ଆଖି ଦୁଇ ଫୁଟିଅଛୁ । କାହାର ଶ୍ରୋଣମାନ ପୋଡ଼ି ଯାଉଅଛୁ । ଏମନ୍ତ ସେ ସୈନ୍ୟର ଆକୁଳ ଦେଖି । ଯୋଗୀ କୋପ ମୁଖେ ଗୁହିଁଲା ଦେନ ଆଖି । ରକ୍ତ କୁମୁଦର ପ୍ରସ୍ତ ବୁଲାଇଲା ଦେନ ନୟନ । କାହାର ଗର୍ବ ହୋଇଲା ଖର୍ଜ୍ଜିଲ । ଏ ମୋହର ସୈନ୍ୟ । ଯେ ଗ୍ରାମାନଙ୍କ ପବୃଶଲ ଯୋଗୀ । ଏ କର୍ମ୍ମ ହୋଇଲେ ଏତେ ବ ଦୁଃଖ ଭାଗୀ । ଯୋଗୀର ବଚନ ଶୁଣି । କରପଡ ଯୋଡ଼ି ବୋଲୁ ଅଛୁ ଦାଢ଼ି ପୋଡ଼ା ଭୂତ ଚୂଡ଼ାମଣି । ହାଦେ ସ୍ୱେ ନାଥ ! ତୋହର ଆଜ୍ଞା ପ୍ରମାଣେ ଗଲୁ । ଅନେକ ପ୍ରକାରେ ବଘ୍ନ ମାନନ୍ତ କଲୁ । କନ୍ୟାକୁ ହରି ଆଣିବାର ବେଳେ । ଅଭୂତ ଚକ୍ରାକୃତ ହୋଇ ଏକ ବସ୍ତୁ ବ ଦଶିଲା ଆକାଶ ମଣ୍ଡଳେ । ସେ କାଲାନ୍ତକ କାଳଚକ୍ର । ଯାହା ଦେଖିଲେ ଡରଇ ଶମ୍ଭୁ । ମୁଁ ତୋତେ ଆଦ୍ୟହୁଁ କହୁନାହିଁ—ଗୁଲ ବେଗେ ଯିବା, କଷ୍ଟ କଷ୍ଟ ହୋଇ ପ୍ରାଣ ପାଇବା । ଏହା ଶୁଣି ସେ ଯୋଗୀ । ପ୍ରତିଜ୍ଞା କର ବୋଲୁଅଛୁ ଶିରଫଣି । ରହ ରହ ବୋଲ ଚକ୍ରକୋଟି ଏହ୍ୱକ୍ଷଣି ଜାଣିମା । କନ୍ୟାକୁ ହୋଇଲେ ଆଣିମା । ଯେବେ ସେ ତୁମ୍ଭମାନଙ୍କର ଦୁଃ…… ।

ଏମନ୍ତ ସେ ବଶ୍ୱର ଭୈରବୀ ଚଣ୍ଡିକି ହକାରୁ । ସ୍ୱସ୍ୱେମ୍ଭ କର ସ୍ମରଣା କରନ୍ତେ । ମହା ଭୈରବୀ ଚଣ୍ଡୀ ଆସି ମିଳଲ ଅଦ୍ଭୂତେ । ସେ ଚଣ୍ଡୀର ଶିର ଆକାଶେ ଲଗୁଅଛୁ । ଜିହ୍ୱ ଲହ ଲହ ଅନ୍ତରରେ ଆହାର ମାଗୁଅଛୁ । କାଳଚକ୍ର ପ୍ରାୟେ ଦୁଇ ଚକ୍ଷୁ ଦଶୁଅଛୁ । ପ୍ରଳୟ କାଳର ବିଜୁଳି ପ୍ରାୟେ ଜିହ୍ୱାରେ ଅଗ୍ନି କଣିକାମାନ ଦଶୁଅଛନ୍ତି । ମୂଷଳ ପ୍ରମାଣେ ଦନ୍ତ ପାଟି ଦଶୁଅଛୁ । ବଳେ ବଳେ ଯୁଟିଳି ପ୍ରାୟେ ହୋଇ ପାଟି ଦୁଇ ଘସୁଅଛୁ । ତହୁଁ ଅଗ୍ନି କଣିକାମାନ ଦଶୁଅଛୁ । ନିଶ୍ୱାସ ତେଜେ ଜଗ ବୃକ୍ଷମାନେ ଜଳ ଯାଉଅଛନ୍ତି । ଧୂମଶିଖା ଧରିଅଛୁ । ମୁଣ୍ଡମାଳ ଗୋଟାଏ ଭରିଅଛୁ । ରକ୍ତ ବସ୍ତ୍ରେକ ପିନ୍ଧିଅଛୁ । ଆକାଶଯାକ ବୁଲିଅଛୁ । ଫେ ଫେ କାର ରଡ଼ି ଗୁଡ଼ୁଅଛୁ । ଭୂମିଗୁଡ଼ି ଉଡ଼ୁଅଛୁ । ଦାନ୍ତରୁ ମହା ହୁଳୁକାମାନେ ହେଉଅଛନ୍ତି ଜାତ । ବ୍ୟାଘ୍ର ଶବ୍ଦ କରୁଅଛୁ ଯେହ୍ନେ ମହା ବଜ୍ରପାତ । ବ୍ରହ୍ମାଣ୍ଡ ଖପରକ ଯାଉଅଛୁ ଫାଟି । ଏକ ଉପରେ ଆରେକ ପଡ଼ନ୍ତେ ପାଟି । ଏକ ଖଡ଼୍‌ଗେକ ଧରି । ଯୋଗୀ ସ୍ମୁଖରେ ମିଳଲ ହୁଙ୍କାର ନାଦ କରି । ସେ ମହାଭୈରବୀ ଚଣ୍ଡୀକି ଦେଖି । ଯୋଗୀ ଆସନ ଉପେକ୍ଷି ପାଏ ପଡ଼ି ଶୋଇଲା । ଏ କଟକ ପୁରଜନମାନଙ୍କୁ ଭକ୍ଷ ଅବିଦ୍ୟା ମୃତ-ସଞ୍ଜୀବକ କନ୍ୟାକୁ ଅଣ ବୋଲି ବୋଇଲା । ସେ ଯୋଷାମଣି ଯୋଗୀର ଆଜ୍ଞା ପାଇଲା ଯହୁଁ । ବଜୁଳି ସହିତ ଚଡ଼କ ପ୍ରାୟେ ନାଦକରି ଧାଇଲା ତହୁଁ । କନ୍ୟାପୁରେ ପ୍ରବେଶ ହୋଇବାର ବେଳେ । ଚକ୍ର ତେଜ ଅଗ୍ନି କଣିକାମାନ ଲଗିଲା ଅବହେଳେ । କେଶେ ବସ୍ତ୍ରେ ଅଗ୍ନି ଲଗିଲା ଯାଇଁ । ରୋମାବଳୀମାନେ ହେଉଛନ୍ତି ଦଗ୍ଧ । ସେ କନ୍ୟାକୁ ଆଣିବାକୁ ଯେ ମନ କରିଥିଲା । ଅନ୍ତସ୍ତଳ ହୋଇ ଧର୍ମଧର୍ମେ ପଳାଇ ଅଇଲା । ମୁହଁ ବୁଲାଇ ଭୂମିରେ ପଡ଼ିଲା । ପର୍ବତ ପକ୍ଷକ ଇନ୍ଦ୍ର ଛେଦିଲା । ଚହିଁକବା ମାତ୍ରକେ ଘୋଟଇ ଅଗ୍ନି ଶିଖା । ସମୁଦ୍ରେ

Digitized by srujanika@gmail.com

ପଡ଼ିଲା ଯାଇ କେଉଁ ନାହିଁ ସଖା । ଅଧାଙ୍ଗ ପୋଡ଼ିଲା । ଧର୍ମ ଧର୍ମ ହୋଇ ଯାଇ ଯୋଗୀ ଭୂମିରେ ପଡ଼ିଲା । ଅଙ୍ଗାର ଜ୍ୟୋତି ପ୍ରାୟେକ ହୋଇ । ସେ ଭୈରବୀ ଚଣ୍ଡୀ ବ୍ୟର୍ଥ ହୋଇଲା ଯହୁଁ । ଯୋଗୀର ସମସ୍ତ ଶସ୍ତ୍ରମାନ ସରିଲା ତହୁଁ । ଅନଳ ଖେଚରଙ୍କୁ ରାଜ ଆଜ୍ଞା ଦେଲା । କି ବୁଦ୍ଧି କରିବା କହସି ବୋଇଲା । ସେ ଭୂତ ବୋଇଲା ଆମ୍ଭମାନଙ୍କ ଠାକୁର ତୁ । ତୋହର ଠାକୁର ପାର୍ବତୀ । ପାର୍ବତୀ ମାୟାରେ କରି ଏ ଜଗତକୁ ମୋହିଲା ଅଛି । ପାର୍ବତୀ ଠାକୁର ଈଶ୍ୱର । ସେ ଭଏ ହିଁ ଚକକୁ ହାରି ଯୋଡ଼ିଲେକ କର । ଫଙ୍କ ପବନେ କି ଉଡ଼ଇ ମେରୁ । ମାଛି ଝରଡ଼କ ସର୍ପ ଧରଇ ଫେରୁ । ଏ ଚକକୁ ଆମ୍ଭେ ନ ପାରି । ଏବେ ପ୍ରାଣ ଘେନ ପଳାଇବା ଅପସରି । ସେ କନ୍ୟା ରୁଦ୍ର ସୁଧାନିଧିଙ୍କ ବରିବ । ସେ କୁମର କନ୍ୟା ଘେନ ନିଜ ପୁରେ ପ୍ରବେଶ ହୋଇବ । ସେ କଟକେ ପ୍ରବେଶ ହୋଇବା ଉତ୍ତାରେ । ଏ ଚକ ଆଉ ନ ଥିବ ସେଠାରେ । ନିମିଷ ମାତ୍ରକେ କନ୍ୟା ନେବା ବେଳାରେ । ଏମନ୍ତ ବିଚାର ନିଶ୍ଚୟ କଲେ । ରୁଦ୍ର ସୁଧାନିଧି ସଙ୍ଗେ ପ୍ରୀତି କରିବା ବୋଲି ବୋଇଲେ । କାଣ ପିଶାଚମାନଙ୍କର ଚେଷ୍ଟା । ନନ୍ଦବଳେ ଭଲ କଲେ ।

ସେଠାରୁ ପାଙ୍କମୁଖ ହୋଇ ବାହୁଡ଼ି ଆଇଲେ । ବସୁଧାମଣ୍ଡଳ କଟକରେ ପ୍ରବେଶ ହୋଇଲେ । ଶାଙ୍ଖମୁଖ ମଣ୍ଡପରେ ଆସନ କରି ବସିବାର ବେଳେ ଅମୃତ ତରଙ୍ଗିଣୀ ନଦୀର କୂଳେ । ସମସ୍ତେ ମିଳିଲେ ଅତ୍ୟନ୍ତ କୁତୂହଳେ । ସେ ନଦୀ ପାରି ହୋଇଲେ କଟକେ ପଶି । ତହିଁ ନିରନ୍ତରେ ରାଜପୁରୁଷମାନେ ପାରି ହେଉଅଛନ୍ତି ନାବେ ବସି । ସେ ନାବମାନେ ପର୍ବତ ପ୍ରାୟେକ ଅଟନ୍ତି । କେ ମଗର ମୁଖ । କେ ଅଷ୍ଟମଙ୍ଗ । କେ ତ୍ରିପୁର । କେ ହିମାଳୟ ସଦୃଶ । କେ ରଥ ଆକାର । କାହିଁ ସହସ୍ରେ ଆହୁଲା ପଡ଼ୁଅଛି । କେ ବହନ୍ତା ସ୍ରୋତେ ଠେଲୁଅଛି । କାହିଁ ପତାକାବଳୀ ଉଡ଼ୁଅଛି । କେ କେବଳ ମଙ୍ଗ ଢାଳୁଅଛନ୍ତି । ମଙ୍ଗୁଆଳମାନେ ଦୋହଡ଼ି ଗୀତ ଗାଉଅଛନ୍ତି । କେ ପୋଡ଼ପିଠା ଖାଉଅଛନ୍ତି । କେ କଟକକୁ ବୋଲି ମଙ୍ଗ ଠେକ ଦେଉ ଅଛନ୍ତି । କେ ଆହୁଲାରେ କରି ବାହୁଅଛନ୍ତି । ଏବଂଭୂତ ନାବରେ । କାମାନନ୍ଦ ଯୋଗୀନ୍ଦ୍ର ଯାଇଁ ମିଳିଲା ସନ୍ନିଧିରେ । କାପାଳିକ ବୋଲି କୈବର୍ତ୍ତମାନେ ବସାଇ ନ ଦେଲେ ଯହୁଁ । ଲଜ୍ଜା ପାଇ କାମାନନ୍ଦ ବାହୁଡ଼ିଲା ତହୁଁ । ତାମସରେ କରି କୃଷ୍ଣାଜିନ ଗୁଲ ଖଣ୍ଡିଏ କାଢ଼ିଲା । ତାହା ନେଇ ପାଣିରେ ପାଡ଼ିଲା । ଉପରେ ଚଢ଼ିଲା । ବାହାନ୍ତେ ନାବରୁ ସେ ବେଗେ ଚଳିଲା । ସୋତେ ନ ପଡ଼ିଲା । ଜଳେ ନ ବୁଡ଼ିଲା । ଏହା ଦେଖି ସମସ୍ତଙ୍କ ଚମତ୍କାର ଲାଗିଲା ।

କେବଣ କେବଣ ପ୍ରକାରେ ଗଲା । ସୋଲ ମଦାଙ୍ଗ କର୍ଣ୍ଣରେ ବାନ୍ଧିଲା । ଉଜାଣୀ କରି ପବନ ରୁନ୍ଧିଲା । ଜାଳନ୍ଧରୀ ମୁଦ୍ରା ଦୃଢ଼ କରି ବାନ୍ଧିଲା । ଖେଚର ଯନ୍ତ୍ର ଆକାଶେ ଛନ୍ଦି, ଆପଣା କଲ୍ପଚନ୍ଦ୍ରାମଣି ବିଦ୍ୟାର ବଳେ, କର୍ଣ୍ଣାଟି ଯୋଗୀର କୁତୂହଳେ, ଦ୍ରବ୍ୟ ପଦାର୍ଥ-ମାନଙ୍କରୁ କରି ଜାତ, ଦେଖିଲା ଲୋକେ ତାହାର ଯାଦେ ଦେଉଅଛନ୍ତି ମାଥ । ତ ସେ

Digitized by srujanika@gmail.com

କେବଳ କେବଳ ପଦାର୍ଥମାନ ଜାତ କରୁଅଛନ୍ତି । ଧାତୁ, ରତ୍ନ, ଫଳ, ବଳ, ଔଷଧ, ବସନ, ଅଳଙ୍କାର, ଦର୍ପଣ, ପଞ୍ଚବସ୍ତ୍ର, ଭକ୍ଷ ଭୋଜନ ପିଷ୍ଟକ ସହିତ ପଦାର୍ଥମାନ ବାଞ୍ଛିତ ପୁଅମାନଙ୍କୁ ଦେଉଅଛି । ଯାହା ଯେ ବୋଲୁଅଛି (୧) ତାହା ସେହିକ୍ଷଣି ଉପୁଜାଉ ଅଛି । ନଗରଯାକ ମୋହୁଅଛି । ସାକ୍ଷୀ (୨) ଦେ କହୁଅଛି । କୋମଳ କରି ଗାଉଅଛି । ଅନେକ ଲୁବୁବାଦ୍ୟ ଏ ଭୈରବଙ୍କୁ ବନ୍ଦିଲା । ସୂର୍ଯ୍ୟଙ୍କୁ ସମକରି ଚାହିଁଲା । ବାହୁଡିକ ଯା ବୋଲି ବୋଇଲା । ନମିଷାର୍ଦ୍ଧେ ଚର୍ମ କେଣିକି ଗଲା । ଯୋଗୀ କୂଳକୁ ଡେଇଁ ପଡ଼ିଲା । ମହାମୁଦ୍ରା ଫେଡିଲା । ବାହାସ୍ଫୋଟ ମାରିଲା । ବେତାଳ ସୈନ୍ୟ ଅଛି ଆକାଶେ (୩) ଅଦୃଶ୍ୟ ହୋଇ । ଆକାଶେ ଲୁଚିବାରୁ କରି ତାଙ୍କୁ ନ ଜାଣନ୍ତି କେହି । ଶାକମ୍ଭେଶ୍ୱ ମଣ୍ଡପରେ ଯାଇ ପ୍ରବେଶ ହୋଇଲା । ତାହା ଦେଖି ସମସ୍ତଙ୍କୁ ଅତ୍ୟନ୍ତ ଚମତ୍କାର ଲାଗିଲା ! ଲୋକେ ସହସ୍ର ସହସ୍ର ହୋଇ ଦେଖି ଅଛନ୍ତି । ଅନେକ ପଦାର୍ଥମାନ ଗ୍ରୁମୁଟରେ ଥୋଇଲେ । ଯୋଗୀ ଅଙ୍କ ଦେଇ ତାହା ବାଟେ ଥୋଆଇଲା । ଭୂତ ବେତାଳମାନଙ୍କୁ ବାଣ୍ଟି ଦିଆଗଲା । ସେ ଯୋଗୀ ଅନେକ କଥା କହୁଅଛି । ଏହା ଦେଖି ଲୋକେ ରାତି ଦିବସ ଧାଉଁ ଅଛନ୍ତି । ନଗରନ୍ତରେ ଯୋଗୀଙ୍କ ଦେଖୁଥାନ୍ତି । ମନ୍ତ୍ରମୂଳିକା ଶିଖୁଥାନ୍ତି । ଅଙ୍ଗେ ବିଭୂତି ମାଖୁଥାନ୍ତି । ଏ ସିଦ୍ଧ ବୋଲି ତାକୁ ଲେଖୁଥାନ୍ତି । ଏମନ୍ତରେ ସେ ଯୋଗୀ ମାସେ ପର୍ଯ୍ୟନ୍ତେ ସେ ମଣ୍ଡପରେ ରହିଲା । ଅନେକ ଚମତ୍କାରମାନନ୍ତ ଦ୍ଧି କଲା । କଲେ ହେଁ ବାରୁ ସେ କଣ୍ଟକର ଗହଲେ କୁମାରଙ୍କୁ ବାରତା ନୋହିଲା । ତ ସେ ରାଜାର ମଧ୍ୟରେ ବାରତା ନୋହିଲା ଯହୁଁ, ସବ ମନୋହାରଣୀ ଦ୍ରାକ୍ଷିଣୀକି ଯୋଗୀ ବୋଇଲା ତହୁଁ । ଏହିକ୍ଷଣି ସିବୁ । କୁମର ମନେ ପଶି କୁମରକୁ ମୋହି ଆଣିମୁଁ । ଆଜ୍ଞା ପ୍ରମାଣେ ଦ୍ରାକ୍ଷିଣୀ ଚଳିଗଲା । ପରିବାରମାନଙ୍କର ହୃଦୟରେ ପଶି କୁମରକୁ କହିଲା । ଅପୂର୍ବ ଚମତ୍କାର ଯୋଗୀନ୍ଦ୍ର ପୁରୁଷ ଏକ ଆସିଅଛି । ଆମ୍ଭ ନଗରେ ରହିଅଛି । ଅନେକ ଅନେକ ବୁଲିଅଛି ନଗ୍ର ଦେଶ । କେଶ ତାହାର ଦିରବେଶ । ସୁନ୍ଦର-ପଣେ ଅତି ବିଶେଷ । ସମସ୍ତ ବିଦ୍ୟାରେ ନିପୁଣ ବିଶେଷ । ଏହା ଶୁଣି କୁମର ଶିରଧା କଲା । ପୂର୍ବ ଅଭ୍ୟାସର ବଳେ·······ବାସନାରେ । କରି ବିବେକ ରତ୍ନାକର ମନ୍ତ୍ରୀପୁତ୍ର ଗୁଣଶୀଳକୁ ରାଇ ଆଜ୍ଞା ଦେଲା । ହେ ମିତ୍ର ! ମୁଁ ସେ ଯୋଗୀଙ୍କ ଦେଖିବି । ସେ ମନ୍ତ୍ରୀପୁତ୍ର ଗୁଣଶୀଳର ବୁଦ୍ଧି ବୃହସ୍ପତିଙ୍କର ସମାନ । ମୁଖଚନ୍ଦ୍ରମାଙ୍କୁ ସମାନ । ବିବେକ ବରୁଣଙ୍କୁ ସମାନ । ସୁସ୍ୱର ସରସ୍ୱତୀଙ୍କ ସମାନ । ଗତି ପବନଙ୍କୁ ସମାନ । ଗୁଣେ ବିଘ୍ନେଶ୍ୱରଙ୍କୁ ସମାନ । ତେଜେ ଅଗ୍ନିଙ୍କ ସମାନ । ଗ୍ରନ୍ଥ ଅଭ୍ୟାସେ ବ୍ୟାସଙ୍କୁ ସମାନ । ଶିଳ୍ପୀ କଳାକୁ (୪) ବିଶ୍ୱକର୍ମା ସମାନ । ସମସ୍ତ ଗୁଣେ ହୋଇଅଛି ଜାହ୍ନବୀମାନ । ବାସୁଦେବଙ୍କ ଭକ୍ତ ହୋଇଅଛି ଯହୁଁ, ଦିବ୍ୟ ଗୁଣମାନ ପାଇଅଛି ତହୁଁ । ଏବଂଭୂତ ଗୁଣଶୀଳ ମନ୍ତ୍ରୀ ବୋଲୁଅଛି (୫) ହେ

(୧) 'ଖ' ରେ ବୋଲିବ (୨) ବନ୍ଧୁ ସଖି (୩) 'ଖ' ରେ ଆକାଶ ଗତେ (୪) ବନ୍ଧୁ ଶିଳ୍ପକର୍ମେ ବିଶ୍ୱକର୍ମାଙ୍କୁ (୫) ବନ୍ଧୁ ବୋଇଲା ।

Digitized by srujanika@gmail.com

ମହାବାହୋ (୧) ରୁ ସକଳ ଗୁଣମାନଙ୍କରେ ଇନ୍ଦ୍ରଙ୍କୁ ସମ । ଗୁଣ ସୃଷ୍ଟ ବସ୍ତ୍ରଗଲେ କାପାଳିକ ଦର୍ଶନ ଉଚିତ ନୁହଇ । କେତେଗଣସି କାଳେ (୨) ପୂର୍ବେ ଗୋରେଖାଦି ସିଦ୍ଧମାନେ ଦେହ ଧ୍ୟାନେ ସେ ମୋକ୍ଷ ହୋଇଲେ । ପାଷଣ୍ଡମାନଙ୍କୁ ଭଣ୍ଡିବା ନିମନ୍ତେ କାପାଳିକ ଶାସ୍ତ୍ର ଭିଆଇଲେ । ଏମାନେ ଯନ୍ତ୍ର ବହୁତ ସେବା କଲେ, ଦେହ ବର୍ଜି ମତ ନ ଗ୍ରହନ୍ତି । ନିରନ୍ତରେ ବୃଷସ୍ତ୍ରୀ ବୀର୍ଯ୍ୟ ସେ ଲେଉଛନ୍ତି । ଏ ପାପିଷ୍ଠମାନଙ୍କୁ ଆପଣାର ଉତ୍ତମ ପଦ ନ ଦେଖାଇ, ଦେହରକ୍ଷା ଯୋଗ ଭିଆଇଲେ । ଭୋଗ ଲୋଭ ଦେଖାଇ ଇନ୍ଦ୍ରିୟମାନଙ୍କ ବଶକୁ ଗଲେ । ସେ ତରେ କରି ଦେହକୁ ଧରିଲେ ।

ଏବଂଭୂତ ମାୟାବି ଦର୍ଶନମାନଙ୍କରେ (୩) ଅନେକ ପାପ କହୁଅଛୁ । ଧର୍ମଶାସ୍ତ୍ର ପ୍ରମାଣେ ଯୋଗୀଙ୍କ ମୋହ ବସ୍ତ୍ରରେ ଭେଟ ହୋଇବା ନ ଯୋଗାଇ । ଏହା ଶୁଣି କୁମର ବୋଇଲା । ଭଲ ସିନା ଜାଣି ଥଇଲେ କି ଦୋଷ ହୋଇଲା (୪) । କେଉଁ ସିଦ୍ଧ କେଉଁ ରୂପରେ ଥାନ୍ତି । ଈଶ୍ୱର ମାୟା ତ ଜାଣି ନୁହଇ । ହାଦେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ସିଦ୍ଧମାନେ ପୁଣ ତାହି ଘେନ କରିଥାନ୍ତି ବାସ । ନିରନ୍ତରେ ବ୍ରହ୍ମସ୍ୱରୂପେ, ନିର୍ମଳ ଖାନ୍ତି । କେତେଗଣସିମାନେ (୫) ସ୍ୱଇଚ୍ଛାଏ ଦେ ଗ୍ରହି ଭୂମିସ୍ଥାପିତ ପରମ ଜ୍ୟୋତି ନିର୍ବାଣ ବ୍ରହ୍ମମସ୍ତ ପୁଣିକୁ ଯାନ୍ତି । ହାଦେ କେତେଗଣସିମାନେ ନୀଳ ଜଳଧର ନବଢ଼ ଆନନ୍ଦବୋଧ ସ୍ୱରୂପ ଚତୁର୍ଭୁଜ ଶରୀର ପାନ୍ତି ।

ହେ ମିତ ହାଦେ ଏ ମାୟା ଅନ୍ୟ କର ନୁହଇ । ଏମନ୍ତ ବୋଲି ହାଦେ ବୃଷ୍ଟ ପୂରଣ କହଇ । ରୁ ହାଦେ କଛି ହି ନ ବସ୍ତ୍ରର । ସୈନ୍ୟ ସଜକର । ରଥ ଆରୋହିବା । ଯୋଗୀ ତହିଁକି ବ୍ରଲ ବେଗେ ଯିବା (୬) । ତାହାକୁ ରୁଆଇ ପଠିଆଇବାର (୭) ଉଚିତ ନୁହଇ । ଅଦୃଷ୍ଟପୂର୍ବ ତ ଦେଖିବାର ବଡ଼ ପୁଣ୍ୟ ଅଟଇ । ମନ୍ତ୍ରୀପୁତ୍ର ଏଥିକୁ ସମ୍ମତ କଲା । ପ୍ରମାଣେ ଅଇଲା । ଏମନ୍ତ ବସ୍ତ୍ରରନ୍ତେ (୮) ଗୋଧୂଳି ହୋଇଲା । ମନ୍ତ୍ରୀପୁତ୍ର ବୋଇଲା ରାତ୍ର ବହୁତ ନିଦ୍ରାଇ ହୋଇ (୯) ସକାଳ ଅଟଇ । ଧବଳ ଚନ୍ଦ୍ରକିରଣେ ପୃଥ୍ୱୀ ଶୁଦ୍ଧ ସ୍ଫଟିକ ପ୍ରାୟେ ଆଲୁସୁ ଅଛି । ତ ସେ କୁମର ମିତକୁ ଘେନି ରଥରେ ବଜେକଲା । ସେ ରଥ କେମନ୍ତ ଅଟଇ । ନାନା ପୁଷ୍ପ ନିର୍ମିତ ହୋଇଅଛି । ଶିଖାଉଠା ମଣିର ପ୍ରାୟେକ କେବଳ ଉପରେ ଜାଲି କରି ଦେଇ ଅଛି । ସେ ମଣି କେମନ୍ତ ଅଟଇ । ଚନ୍ଦ୍ର ଦେଖନ୍ତେ ଅଦ୍ର ହୋଇ । ଅମୃତ ଶୀକରମାନେ ବୃଷ୍ଟିକଲା ପ୍ରାୟେ ଝରୁଅଛି । ତାକ୍ଷଣଗବ୍ୟ ତପ୍ତ ହୋଇଲା । ବ୍ରହ୍ମାଣ୍ଡକୁ ଦେଖି ଆର୍ଦ୍ରତର (୧୦) ହୋଇଅଛି । ସେ ହସ୍ତରେ ଧରିଥାନ୍ତା ଦର୍ବୀ ପଦ୍ମରୁ ଶୁଦ୍ଧ ମକରନ୍ଦ

---

(୧) ବହି ମହି ବାହୁ (୨) ବହି କୌଣସି କାଳେ (୩) ବହିମାନଙ୍କ ତହିଁ (୪) ବହିରେ ଦୁଇଥର ଅଛି । (୫) ବହି ସିଦ୍ଧମାନେ (୬) 'ଖ' ରେ ଯୋଗୀ ତହିଁ ବିସ୍ତରିଲ ବେଗ ଯିବା (୭) ବହି ପଠାଇବାର (୮) 'ଖ' ରେ ବସ୍ତ୍ରର କରନ୍ତେ (୯) ବହି ରାତ୍ର ବହୁତ ହୋଇ ହୋଇ (୧୦) ବହି ସମ୍ଭାଳ ।

Digitized by srujanika@gmail.com

ଢଣିକା ସିଂହଳ ପ୍ରାୟକ ଶୋଭା ପାଉଅଛୁ । ସେ ରଥ ଗଗନମଣ୍ଡଳକୁ ଧାଉଁଅଛୁ । ଦୁତ ଶରଚ୍ଚନ୍ଦ୍ର ମଣ୍ଡଳର ଶୋଭା ପ୍ରାୟେ ପାଉଅଛୁ । ଏ ରଥ ଚଳରେ ଚତୁରଙ୍ଗବଳ ଗୋଟାଏ ରଥକୁ ବେଢ଼ି ଗ୍ଭଲୁଅଛୁ । ସେ ଚତୁରଙ୍ଗବଳ ରଥ ସମୁଦ୍ର ବସନ୍ତ ଲକ୍ଷ୍ମୀ ଯୁକ୍ତ ହୋଇଲା ପର୍ବତ ଶୃଙ୍ଗ ପ୍ରାୟେକ ଦଶୁଅଛୁ । ପାଦାନ୍ତବଳ ଗୋଟାଏ ସବୁହୁଁ (୨) ଆଗେ ଶାର୍ଦ୍ଦୂଳଯୂଥ ପ୍ରାୟେକ ହୋଇ ଶୋଭା ପାଉଅଛୁ । ସେ ବଳମାନେ ସମସ୍ତେ ହେଁ ସୁନ୍ଦର । ତରୁଣ ସାମର୍ଥ ଅଟନ୍ତି । ବଳଣ, ଚଳଣ, ମୋଟ, ଅଗଣ, ଆମଞ୍ଚନ, ମୋଟ ଅଳଆଯ (୩) ଚୂଡ଼ା, ବଜ୍ର ପାଟ ଫେଡ଼ା, ରଣେ ଯେ କୁକୁଡ଼ା, ସେ ପାଇକମାନେ ସରକଲେ ଭୂମିକି ଗ୍ରୁଡ଼ା ରହନ୍ତି । ପାଶ୍ୱମନ କଲେ ଦୁଆଡ଼ ମୁଣ୍ଡେ ବୁଡ଼ନ୍ତି (୪) ପୂର୍ବରୀ ଯେ ପାଇକମାନେ କେମନ୍ତ ଅଟନ୍ତି । ଆଣ୍ଠୁଖିନ୍ନ, ସିଂହ ବକ୍ଷମ ଚନ୍ଦ୍ରା ଚରମ ଆଣ୍ଠୁ ପୂଚ ନ ଗଳଇ । ଘସ ମର୍ଦ୍ଦନରେ ଦେହ ଖିଖରା ପ୍ରାପ୍ତେ ଦଶଇ । ବସ୍ତୁସ ବର୍ଷ ବସ୍ତ୍ରୀ । ହାଥରେ ଲୁହ ଶିକଳା ଛଟାଳ ଦୁଇ କର୍ଷ । ହପାହସିରେ ଧାଉଁଲେ ପାଞ୍ଚଯୁଣ ଧାଆଁନ୍ତି (୫) ଜଣକେ ଦଶ ଦଶ ମର୍ଞ୍ଚିର ଦୁଧ ଖାନ୍ତି । ଗୁଣ ଦେଇ ଟାଣିଲେ ଜ ଆଳ ଭାଜଇ । ବନ୍ଧଲେ ଯୋଗଚ ଟୋଟାକୁ ବାଜଇ । ମତ୍ତହସ୍ତୀ ସମୂହରେ ଘୋଡ଼ ଦେଇ ଟାଣନ୍ତି । ଧାଉଁଲେ ଗେ ଡ଼ାଇ ନ ପାରଇ ଲକ୍ଷେ ଟଙ୍କାର ଘୋଡ଼ା ସମରକୁ ଧାଆଁନ୍ତି ଅଗ୍ନିକ ପତଙ୍ଗର ପରି । ଏଥର ଉତ୍ତରେ ସେ ପଦାନ୍ତବଳ ପଛରେ ଜଳ ସହତ ମେଘର ପ୍ରାୟେ ହୋଇ ଗଜବୃନ୍ଦ ଗୋଟିଏ ଅଛୁ । ସେ ଗଜମାନେ ମହୋତ୍କଟ ବାରଣ । ଚକ୍ଷୁ ଦୁଇ ଅରୁଣ । ବାରମାସି ମତ୍ତ । ବଜ୍ର ହିଁ ସହନ୍ତା । ଅଟଣ୍ଡିତ କର୍ଣ୍ଣ । କୋଡ଼ିଏ ଗୋଟା ନଖରେ ସମ୍ପୂର୍ଣ୍ଣ ଦକ୍ଷିଣାବର୍ତ୍ତି ଦନ୍ତ । ଅମ୍ବାବଳେ ସରୁ । ବଇସ ସମଦଣ୍ଡେ କ ସେ ପ୍ରତ୍ୟକ୍ଷେ କୃତାନ୍ତ । ଲକ୍ତ ଶ୍ୱେତ । ବଳନ ତୁଙ୍ଗ । ସଂଗ୍ରାମେ ନିଃଶଙ୍କ । ବ୍ରଣଦନ୍ତ ସଞ୍ଚ । ଦାନ୍ତ ଯେନ ମାଇଲେ ପର୍ବତ ଫୁଟଇ । ପାଞ୍ଚ ଦେଖି ଅଟଳ ପାଷାଣ ଭୂଟକ । ଚଉସମ ଓସାର । କନ୍ଧ ପୃଥୂଳ ବ୍ରୁମ୍ଭ ବସ୍ତାର । ସେ ଗଜମାନେ କୋପ କଲେ ଅଗ୍ନିରେ ପଶନ୍ତି । ପର୍ବତ ସମୂହର ପ୍ରାୟେ ଶୋଭା ଦଶନ୍ତି (୬) ମଦଧାରମାନେ ସେ ପର୍ବତରୁ ଜଳଧାର ପରିଏ ବହୁଅଛନ୍ତି । ରଜତ ଶିକଳାମାନ ଶ୍ୱେତ ସର୍ପ ଗୁଡ଼ିଆଇଲା ପ୍ରାୟ (୭) ଶୋଭା ପାଉଅଛନ୍ତି । ଭ୍ରମରମାନନ୍ତ ମଣ୍ଡଳେ କ ପର୍ବତେ ଭ୍ରମସ୍ତମାନେ ଲକ୍ଷ୍ଣ ବାହାରକୁ ଦେଖାଉଅଛନ୍ତି । କ ଘାଗୁଡ଼ି କୁହରେ ଶସ୍ୱର ଲୁବ୍ଧଅଛନ୍ତି । ପତାକାମାନେ ସେ ପଲ୍ଲବଳ ପ୍ରାୟ ଶୋଭା ପାଉ ଅଛନ୍ତି । କୁମ୍ଭମାନଙ୍କରେ ଚନ୍ଦମାନ କାଟନ୍ତେ ଧରୁ ରଙ୍ଗ ପ୍ରାୟ ଦଶୁଅଛନ୍ତି । ହସ୍ତୀମାନଙ୍କର ଘଣ୍ଟିବାଦନ କରନ୍ତେ ପର୍ବତ ଗୁହାରେ ପବନ ପଶି ଧ୍ୱନିକଲା ପ୍ରାୟେ ଶୁଭୁଅଛୁ । ଏମନ୍ତ ଚଳନ୍ତା ପବନ ସମୁଦ୍ର ପ୍ରାୟେ ଶୋଭା ଦଶୁଅଛନ୍ତି ।

---

(୧) 'ଖ' ରେ ଆର୍ଦ୍ରଚଉ (୨) ବହୁ ପଦାତବଳ (୩) 'ଖ' ରେ ଅଳଙ୍କଆସ (୪) 'ଖ' ରେ ବୁଡ଼ନ୍ତି । (୫) ବହୁ ଯାଆନ୍ତି । (୬) ବହୁ ପାଆନ୍ତି । (୭) ବହୁ ପରି ।

Digitized by srujanika@gmail.com

ହସ୍ତୀମାନଙ୍କର ମାହୁନ୍ତମାନେ ଦିବ୍ୟ ବେଶ ହୋଇ କାନ୍ଧରେ ବସି କର୍ଣ୍ଣ ମୂଳରେ ଆରଣନ୍ତ ଲଗାଇ କୁମ୍ଭରେ ହାତମାଲ ଦେଇ ଲୀଳାଗତି କରି ଚଳାଉଅଛନ୍ତି । ବଡ଼ବେଗୀ ଅଶ୍ୱମାନେ ଧାଇଁଅଛନ୍ତି । ସବହେଁ (୧) କବାଡ଼ି ଅଶ୍ୱଜାତି ଅଟନ୍ତି । ବ୍ୟଗ୍ରେ ପବନ ଦେବତାଙ୍କୁ ଖଟନ୍ତି । ଚତୁର ପ୍ରସିଦ୍ଧ କଟାକ୍ଷବାଣର ପ୍ରାୟେ (୨) ଯାଉଅଛନ୍ତି । କେ ବଙ୍କ ବଙ୍କ ହୋଇ କୁଦି କୁଦି କରି ଯାଉଅଛନ୍ତି । ଭାଗ୍ୟପଥ ପ୍ରାୟେ ଶୋଭା ପାଉଅଛନ୍ତି । ଅଶ୍ୱଆରମାନେ ଖାଣ୍ଡାଗରିଭ ପାଞ୍ଚୁଅଛନ୍ତି । ସେ ନୃତ୍ୟକାର ପରାୟେ ନାଚୁଅଛନ୍ତି । ଭ୍ରମର ପୁଷ୍ପକୁ ଚୁମ୍ବିଲା ପ୍ରାୟେ (୩) କରି ପୃଥ୍ୱୀକି କୁଦୁଅଛନ୍ତି । ବହୁତ ଆକାଶମାର୍ଗେ ଅନାଉଅଛନ୍ତି । କେ ପବନ ସଙ୍ଗେ ମିଶୁଅଛନ୍ତି । କେ ବିଜୁଳି ପ୍ରାୟେ ଦିଶୁଅଛନ୍ତି । ଏମନ୍ତେ ଚତୁରଙ୍ଗ ବଳ ଯୁକ୍ତେ କୁମର ରଥ ଚଢ଼ି ବିକେକଳ ଧନୁଶର ଧରି । ବସନ୍ତ-ପଞ୍ଚମୀ ପିନ୍ଧି, ପାଖୁଡ଼ା ସେବତୀ ଗଳାରେ ବାନ୍ଧି, କସ୍ତୁରି ଚିତା ··ଗଳାରେ ଅଛି ତାହାର ଗଳମୋତି । କଣ୍ଠମାଳ ଗୋଟାଏ ବାନ୍ଧିଅଛି । ପଞ୍ଚରତ୍ନ ଓଢ଼ଣୀ ଉଡ଼ୁଅଛି । ମାଣିକ୍ୟର ଛାତ୍ର ଭରି ଗମନ କରି ଯାଆନ୍ତେ, ପୁଷ୍ପବୃଷ୍ଟି ହୋଥନ୍ତେ, ଧୂପାବଳୀ ଆମୋଦନ୍ତେ, ତୂରୀ ବାଦ୍ୟ ବାଜନ୍ତେ, କାମଦେବ ପୃଥ୍ୱୀକି ବିକେକଳ ପ୍ରାୟେକ ଦିଶୁଅଛି । ଏମନ୍ତ ପ୍ରକାରେ ଧାଡ଼ିକାରେ ଗଲେ । କଟକର ପ୍ରାନ୍ତେ ଦିନାଯୁକ୍ତ ମଣ୍ଡପର ସନ୍ନିଧେ ମିଳିଲେ । ସେ ମଣ୍ଡପର ସ୍ଥିର ପାର୍ଶ୍ୱରେ ଦିବ୍ୟଭୂମି ଗୋଟାଏକ ଅଛି । ସେ ସ୍ଥଳର ନାମ କାଞ୍ଚନ ସ୍ଥଳୀ ଅଟଇ (୪) ତାହା ଦର୍ପଣ ଶିଳାରେ କରି ନିର୍ମାଇଲ ହୋଇଅଛି । ଆଡ଼େ ଦୀର୍ଘ ଦୁଇ କୋଶ ବିସ୍ତାର ଅଟଇ । ଅମୃତ ତରଙ୍ଗିଣୀ ନଦୀ ପାର୍ଶ୍ୱରେ ବହୁଅଛି । ପୃଥ୍ୱୀ ଦେବୀର ଶିରରେ ପୁଷ୍ପମାଳାର ପ୍ରାୟେ ଶୋଭାପାନ୍ତା ହୋଇଅଛି । ସେ ପଦାରେ କୋମଳ ତୃଣମାନେ ଅଙ୍କୁରନ୍ତେ ମଣିମାନଙ୍କର ଶିଖା ପ୍ରାୟେ ଦିଶୁଅଛନ୍ତି । ବମନ ଅଧିକାର ସୈନ୍ୟ ଗହନ ଶୁଣି, ଯୋଗୀ କି ଜଣାଇଲା ସେ ଭୂତ ଶ୍ରେଷ୍ଠ ଚୂଡ଼ାମଣି । ସ୍ୱେ ନାଥ ! ସର୍ବମନୋହାରିଣୀ ଦ୍ରାକ୍ଷିଣୀ ଯେ ଯାଇଥିଲା, ସେ ଉପାସ୍ୟ କଲେ କରି କୁମରକୁ ଅଣିଲା ।

ଏବଂଭୂତ ବାର୍ତ୍ତା ପାଇଲା ସନ୍ତୁ, ଯୋଗୀ ମୋହନ ବିଦ୍ୟା ଧଇଲା ତହୁଁ । କାଳୀ ମୋହନୀ ଯେନ ଲଗାଇଲେ ମାୟା । ଚକ୍ଷୁକୁ ଝାପ୍ସି, ମେରୁ ଟେକ, ନାଭି ଆକୋଚ, ପଦ୍ମାସନେ ବସିଅଛି ଆରମ୍ଭେ । ସିଦ୍ଧ ପୁରୁଷ ପ୍ରାପ୍ତ ଦିଶୁଅଛି ଦମ୍ଭେ । କୁମର ଆସିବା ଜାଣି, ଉପସର୍ପା ଯକ୍ଷିଣୀଙ୍କ ସ୍ମରି, ଜାଲନ୍ଧର ବିଦ୍ୟା ଟମରି, ଆପଣା ସେହିକ୍ଷଣି ସୈନ୍ୟ ଗୋଟାଏ ଦେଖାଇଲା କୁମରକୁ ସମାନ କରି । ଯୋଗିନୀ ପଚୋଆଶ ସୈନ୍ୟ ହୋଇଛନ୍ତି ଭବ୍ୟ । ସେ ଗନ୍ଧର୍ବ ନଗର ମଧ୍ୟେ ଧୂମ୍ର ମେଘଖଣ୍ଡ ପ୍ରାୟେ ଯୋଗୀର ଦିଶୁଅଛି ଦ୍ରବ୍ୟ । ସେ କାଞ୍ଚନସ୍ଥଳୀ

---

(୧) ବହୁ ସବହେଁ (୨) 'ଖ' ରେ ପ୍ରାୟେ ହୋଇ (୩) ବହୁ ପରାଏ (୪) 'ଖ' ରେ ସେ ପରିବାର କାମ କାଞ୍ଚନ ସ୍ଥଳୀ ଅଟଇ ।

Digitized by srujanika@gmail.com

ନଗ୍ରୀ ପାଉଅଛୁ ଶୋଭା । ଗନ୍ଧର୍ବ ନଗର ପ୍ରାନ୍ତେ ଅଶ୍ବ ଗଜ ପଦାତ୍ରିବଳ ଗୋଟାଏ ଦେଖି ଆଶ୍ଚର୍ଯ୍ୟ ପାଇ—କେ ହୋଇଲେ ଏହ୍ନଛଣି ନ ଥିଲ. କାହୁଁ ଅଇଲ, ବୋଲଇ ଅନ୍ୟ ରାଜାର ଥାଟ କବା ଏ କଟକକୁ ବହିଲ । ବୀର ପୁରୁଷମାନେ ଆଗଭର ହୋଇଲେ । କରଯୁଗଳେ ଧନୁର୍ବାଣ ଧଇଲେ । ପଦାତ୍ରିମାନେ ମୁଞ୍ଚ ଭିଡ଼ିବାକୁ ସଞ୍ଚରିଲେ । ରାଜାପୁଅ ମନ୍ତ୍ରୀପୁଅ ଚମତ୍କାର ପାଇଲେ । ଏମନ୍ତେ ଯୋଗୀ କଡରେ ହୋଇ, ଦ୍ରବ୍ୟ ପଦାର୍ଥମାନନ୍ତ ଦେଇ, ପାଠ ପଢ଼ି ଶୋଇ. ଯୋଗୀ ଦୁଇ କୁମରଙ୍କୁ ହାତଧରି ଡୋଲି ବସାଇଲ । କାଳନ୍ଦୀ ତନ୍ତ୍ରେ ମିଶାଇଲ । ମନ୍ତ୍ରୀପୁଅ ଗୁଣଶୀଳର ବୁଦ୍ଧି ସ୍ତମ୍ଭିଲ । ବାଗ୍ବିରତ ମୁଦ୍ରା ଚମ୍ଭିଲ । ରାଜପୁତ୍ରର ସୌନ୍ଦର୍ଯ୍ୟପଣ ଦେଖି ଅଶ୍ଚର୍ଯ୍ୟ ହୋଇଲ । ଧନ୍ୟ ଧନ୍ୟ ଏ ପୃଥ୍ବୀ ବୋଲି ମନେ ମନେ ବୋଇଲ । ଯୋଗୀ ସଙ୍ଗତେ ଚତୁଃଷଷ୍ଠୀ ଯକ୍ଷିଣୀ ମାତୃକା ସହିତ ହୋଇଥିଲେ । ସକଳେ କୁମର ରୂପ ଦେଖି ମୋହିର ପଡ଼ିଲେ । ଅନଳ ଖେଚର ସୂକ୍ଷ୍ମ ସ୍ବରେ କହିଲ । ଏ କୁମର ତ୍ରିଜଗତକୁ ମୋହିଲ । ଏହାର ପାଇଁ ଟି ପାଙ୍କ୍ତା ସେ କନ୍ୟାକୁ ଦେହିଛୁ ଜନ୍ମ (୧) କଲେ । ଉପାୟ କରି ଏହାକୁ ବଶ କରିଥିବୁ । ଏହା ସନ୍ନିଧିକୁ ଅଇଲେ କନ୍ୟା ଯେବନ ଯିବୁ । ଏ କଟକରେ ତହି ଭୟ ନାହିଁ ।

ଭୂତ ସହୁଁ କହିଲ ଏ ବାଣୀ । ଯୋଗୀ ପ୍ରୀତ କରିବ ବୋଲି ଚକ୍ଷୁ ଭୁଜ ବସିଲ ଟାଣି । କୁମର ବୋଇଲ ଥିଲକାହିଁ । ଯୋଗୀ ବୋଇଲ ବାବା ପୃଷ୍ଠଗିରରେ ଥିଲୁ । ତ୍ରିବେଣୀରେ ସ୍ନାନ କରି ଅମୃତ ପାରଣା କଲୁ । କୁମର ବୋଇଲ ଗୋସାଇଁ ବୟସ କେତେ । ଯୋଗୀ ବୋଇଲ ନକ୍ଷତ୍ର ଗଣିଲେ ହୋଇବ ଯେତେ । ମନ୍ତ୍ରୀ ପୁଅ ବୋଇଲ ଗୋସାଇଁ, ପୂର୍ବ ଅଶ୍ରମ କାହିଁ । ଯୋଗୀ ବୋଇଲ ବାବା ଦେଖିଲ ସହିଁ । ଜଗତଯାକ ଯାହାଚନ୍ତୁଁ ଜନ୍ମ । ତାହାଙ୍କୁ ପୂର୍ବ ଆଶ୍ରମ ପଚ୍ଛରିବାର କେବଣ ଭ୍ରମ । କୁମର ବୋଇଲ ମିଛ ଏ ପରମ ଯୋଗେନ୍ଦ୍ର ପୁରୁଷ । ଧନ୍ୟ ଧନ୍ୟ ଅମ୍ଭର ଆଜର ଦିବସ । ଧନ୍ୟ ଧନ୍ୟ ଏହାଙ୍କୁ ଦେଖିଲେ ହେ ପୁଣ୍ୟ । ଯୋଗୀ ବୋଇଲ ତୁମ୍ଭ ଦୁଇମିତ୍ରଙ୍କୁ କିଛୁ ଦେଖାଇବା । ଏମନ୍ତ ବଚନ କୁମର ମନ୍ତ୍ରୀ ବେନି, ଯୋଗୀ ମଧ୍ୟରେ କରି ହୋଇଲେ ଜଣ ତିନି । ସମସ୍ତ ସୈନ୍ୟ ବୁହାଇ ଖଣ୍ଡିଏ ଦୂର ଗଲେ । ଅଦ୍ଭୁତ କରି ନଗର ଗୋଟିଏ ଦେଖିଲେ । ସେ ନଗର ଦ୍ଵାର ବୈଦୂର୍ଯ୍ୟ ମଣିରେ ନିର୍ମାଣ କଲା ଅଛୁ । ଦୁଇ କାଳୁଆ ହାତୀ ଉପରେ ଉଠିଲେ ହସ୍ତ ନ ପାଇ । ଦୁଇ ପାରୁଶରେ ସ୍ଫଟିକର ଦୁଇପୁତ୍ତଳା ଲାଗିଅଛୁ । ସେଠାରେ ସହସ୍ରେ ପରିବାରୀ ଠିଆ ହୋଇଅଛନ୍ତି । ସେ ପରିବାରୀମାନେ ଯୋଗୀକି ଦେଖି ନିହୁଡ଼ିକ କରି ବାଟ ଛାଡ଼ିଦେଲେ । ବେନି କୁମର ଦେଖି ଆଶ୍ଚର୍ଯ୍ୟ ପାଇଲେ । ବୋଇଲେ ଏ ମଣ୍ଡପଠାରେ ନଗର କାହିଁ । କେହ୍ନୁଣସି କାଳେ ତ ଦେଖିଲୁ ନାହିଁ । କାଲି

(୧) ବନ୍ଧ୍ୟ-ଜାତ ।

Digitized by srujanika@gmail.com

ମୃଗୟା ଯିବାବେଳେ ତ ନ ଥିଲା । ଏତ ଅପୂର୍ବ କାହୁଁ ଆଇଲା । ଏମନ୍ତ ବିଚାରୁଅଛନ୍ତି ଅନ୍ତର୍ଗତେ । କିଛି କହି ନ ପାରୁଅଛନ୍ତି ଯୋଗୀର ପ୍ରୀତ ନିମିତ୍ତେ । ଏମନ୍ତେ ଛନ୍ତି ସବୁ ଦ୍ୱାରଯାକ ରତ୍ନେ ଜଡ଼ିତ ହୋଇଅଛି । ଝଲମ୍ଲ ଦିଶି ପ୍ରକାଶେ ଦିଶୁଅଛି । ସେ ସ୍ତ୍ରୀବୃନ୍ଦ ଗୋଟାକୁ ଯେହ୍ନେ ବେଷ୍ଟିତ ହୋଇ କୁମରକୁ ଯେହ୍ନେ ଭିତରକୁ ପଶିଲେ । ସେହିମତେ ଅନେକ ସ୍ତ୍ରୀ ଅନେକ ଧନରତ୍ନ ଅନେକ ଘରମାନ ଦେଖାଇଲେ । ତଦନନ୍ତରେ ସରୋବର ଗୋଟିଏ ଦେଖାଇଲେ । ତହିଁର ମଧ୍ୟେ ଏକ ମଣ୍ଡପେକ ଅଛି । ତହିଁରେ ନେଇ କୁମରକୁ ବସାଇଲେ । ସେ ସ୍ତ୍ରୀମାନଙ୍କୁ ଆଜ୍ଞା ଦେଲା । ଦୁଇ ମିତ୍ରଙ୍କୁ ମାର୍ଜନା କର ବୋଇଲା । ଯୋଗୀ ଆଜ୍ଞା ପ୍ରମାଣେ ସହସ୍ରେ କନ୍ୟା ନବଯୌବନା ପଦ୍ମମୁଖୀ (୧) ଥିଲେ । ସୁନ୍ଦରୀ ସମସ୍ତେହେଁ ଯାଇଁ ଦିବ୍ୟ ବେଶ କରାଇଲେ । ମର୍ଦ୍ଦନ ସ୍ନାନ ସାରି ହିମ୍ମଣ୍ଡି ଗନ୍ଧ ଲାଗିଲେ । ଦିବ୍ୟ ମଣି ଆଭରଣ କରାଇଲେ । ଦେବାଙ୍ଗ ବସ୍ତ୍ର ପିନ୍ଧାଇଲେ । ଭିତରକୁ ନେଇଅନ୍ତେ ଦ୍ୱାର ପର୍ଯ୍ୟନ୍ତେ ଘେନିଗଲେ ।

କେଉଁ ଦ୍ୱାରେ ଦିବ୍ୟ ଯାନମାନ ଅଛନ୍ତି । କେଉଁ ଦ୍ୱାରେ ମତ୍ତହସ୍ତୀମାନ ଅଛନ୍ତି । କେଉଁଦ୍ୱାରେ ରଥମାନ ଅଛନ୍ତି । କାହିଁ ଦିବ୍ୟ ତୁରଙ୍ଗମାନଙ୍କୁ ପନ୍ତି ପନ୍ତି କରି ବାନ୍ଧିଅଛନ୍ତି । କେଉଁଠାରେ (୨) ଅମାତ୍ୟମାନେ ଅଛନ୍ତି । କାହିଁ ମୁକୁଟବନ୍ଧା ଯୋଦ୍ଧାମାନେ ଅଛନ୍ତି । କେଉଁ ଦ୍ୱାରେ ପରିବାରମାନେ ଯୋଗୀଙ୍କି ଦେଖି ବିବିଧମତେ ସେବା କରୁଛନ୍ତି । କାହିଁ ଗୀତ ଗାୟନ ହେଉଅଛି । ଏବମ୍ଭୂତ ଦ୍ୱାରମାନଙ୍କରେ ଯୋଗୀଙ୍କି ଦେଖି ଆସନ ଉପେକ୍ଷି ପାଏପଡ଼ି ଶୋଭ ବାଟ ଗ୍ରନ୍ତି ଦେଉଅଛନ୍ତି । ପୁଷ୍ପ ବୃଷ୍ଟି କରୁଅଛନ୍ତି । ଏମନ୍ତେ କାହିଁ ମାଳଯୁଦ୍ଧ, କାହିଁ ପାରୁଆଳଟ, କାହିଁ ମେଣ୍ଢାଯୁଦ୍ଧ, କାହିଁ ବାଦ୍ୟାବାଦ, କାହିଁ ଦିବ୍ୟ ଗୀତ ଗାନ ହୋଉଅଛନ୍ତି । ଏମନ୍ତ ସେ (୩) ଦେଖିଲା ଉତ୍ତରେ ଦ୍ୱାରମାନନ୍ତ ଜାଣି । ସେଠାରେ ପୁର ଗୋଟିଏକ ଅଛି । ଅଳକା ପୁରକୁ ସମାନ ଜାଣି । ସେ ପୁରର ଅଳଙ୍କାର ଯୁକ୍ତ ହୋଇ କନ୍ୟାମାନେ ଦୀପ ଘେନି ଅଛନ୍ତି । ଚନ୍ଦ୍ରଜ୍ୟୋତ୍ସ୍ନା ପଡ଼ିବାରେ ପିନ୍ଧିଲା ବସ୍ତ୍ରମାନେ ଉଜ୍ଜ୍ୱଳ ପ୍ରାୟେ ଦିଶୁଅଛନ୍ତି ।

ତକ୍ଷଣେ ସୂପକାରମାନେ ଠା କରାଇ ଚଉରାଶି ପ୍ରକାରେ ମଣୋହି କରାଇଲେ । ତଦନନ୍ତରେ ସ୍ତ୍ରୀମାନେ ଭ୍ରମର ଆଳଟ ଧରି ନୃତ୍ୟ କରିବାରେ ଲଗିଲେ । ପଲଙ୍କରେ ଯୋଗୀ ବିଜେ କରିଅଛି । ଦୁଇ ମିତ୍ର ତ ଅନ୍ୟ ପଲଙ୍କ ଗୋଟିକେ ବସିଅଛନ୍ତି । ପୁଣ ପୁଣ କରି ବିଚାରୁ ଅଛନ୍ତି ମନେ ମନେ । ରାଜ୍ୟ ନ ପୁଣ ଘେନଇ ମାୟା ପ୍ରକାରେ । ଏହାର ତଥ୍ୟ ଜାଣି ନୁହଇ । ପୁଣି ବିଚାରିଲେ ଏ ଯୋଗେନ୍ଦ୍ରମାନଙ୍କୁ ରାଜପଦ ସରି ନୁହଇ । ଏ ସମ୍ପଦକୁ ଚାହିଁଲେ ରାଜପଦ ଦରିଦ୍ର ସିନା । ଏମନ୍ତେ ଦୁଇ ମିତ୍ର କଥା ହୁଅନ୍ତେ ଯୋଗୀ

---

(୧) ବହୁ ଚନ୍ଦ୍ରମୁଖୀ (୧) ବହୁ ଦ୍ୱାରେ (୩) ବହୁ ଏ ସର୍ବ ।

Digitized by srujanika@gmail.com

ବୋଇଲା ବାବା ଆମ୍ଭ ଆଶ୍ରମ ଏହିଠାରେ । ଏଠାକୁ ତୁମ୍ଭେ ଆସୁଥିବ । ସିଦ୍ଧଗଣ ସଙ୍ଗରେ ବସୁଥିବ । ଉଲ୍ଲାସ ପାଇ ହସୁଥିବ । ପୂର୍ବ କର୍ମାଦି ଦୋଷ ନାଶୁଥିବ । ଏବେ ତୁମ୍ଭେ ନିକେତନକୁ ଯାଅ । ନଗରେ ପ୍ରବେଶ ହୋଅ । ଶୀତଳ ମନୋହର କରି ପଲଙ୍କେ ଶୁଅ । ତୁମ୍ଭର ଯେବେ ଇଚ୍ଛା ଥିବ । ଏହିଠାରେ ଆମ୍ଭଙ୍କ ଦର୍ଶନ ପାଇବ । ଏମନ୍ତ ବୋଲି ବସ୍ତ୍ର ଅଳଙ୍କାର ଦେଇ ରାଜାପୁଅ ମନ୍ତ୍ରୀପୁଅକୁ ଦେଲା ପଠାଇ । ସେ ପାଦେ ପ୍ରଣମ୍ୟ କରି ଧାଇଁକାରେ ଅଇଲେ । ଧନ୍ୟ ହୋଇଲୁ ଧନ୍ୟ ହୋଇଲୁ ବୋଲି ବୋଇଲେ । ଏଥି ଉତ୍ତାରେ ତୁରିତେ ଗଲେ । ସୈନ୍ୟବଳ ଘେନି ନଗରେ ମିଳିଲେ । ରାଜା ସମ୍ମୁଖରେ ପ୍ରଣମ୍ୟ କଲେ । ଯୋଗୀର ଚମତ୍କାର କଥାମାନ କହିଲେ । ରାଜା ବୋଇଲେ ପ୍ରାତ ସମୟରେ ଯାଅ । ସେ ମହାତ୍ମା ପୁରୁଷଙ୍କୁ ଆମ୍ଭ ସମ୍ମୁଖକୁ ଅଣାଅ । ନଗରେ ବୁଲାଇବା । ଦ୍ରବ୍ୟ ପଦାର୍ଥମାନ ଦେବା । ଯେତେମାନେ ପାଣ୍ଡି ଦେବା କହୁଥିବା । ମାୟା ନିର୍ମାୟା ଜାଣିମା । କପଟ ବୁଦ୍ଧିଥିଲେ ହାଣିମା । ଏମନ୍ତ ଆଜ୍ଞା ଦେଲା ଯହୁଁ । ରାଜପୁତ୍ର ପାହୁଁ ପାହୁଁ ଦ୍ରବ୍ୟ ତୁରଙ୍ଗ ଚଢ଼ି ପ୍ରଭାତ କାଳେ ବିଜେ କଲେ ତହୁଁ । ଉଷା ବେଳେ ଦେଖିଲେ ଯହୁଁ ସେ ନଗର ଘର କିଛି ନାହିଁ । ଯୋଗୀ ପାଉଁଶ ଗଦାରେ ବସାଇଅଛି । ସ୍ତ୍ରୀ ଭୋଗ କଲାର ସମ୍ଭାରର ବନ୍ଧୁଧାରା ଗୋଟାଏ ବହୁଅଛି । ହଠଯୋଗ ସାଧନ ସାରିଅଛି । ନାଦା ରସ ସନ୍ଧିଅଛି । ମର୍କଟ ବେଶ ଧରିଅଛି । ଚକ୍ଷୁ ମନ୍ଦ ମନ୍ଦ କରି ମିଟି ମିଟି କରି ରହୁଁଅଛି । ଏମନ୍ତେ ସେ କୁମର ସନ୍ନିଧେ ମିଳିଲା । ଭୂତ ଚୂଡ଼ାମଣିର ନିଦ୍ରା ଭାଙ୍ଗିଲା ଯହୁଁ । ସେ ଟେକ ହୋଇ ବସିଲା । ବିଭୂତି ଘସିଲା । ମୋହନ ମୁଦ୍ରା କଲା । ବଶୀକରଣରେ କୁମରଙ୍କୁ ମୋହିଲା । କୁମର କରପଦ୍ମ ଯୋଡ଼ି ପ୍ରଦକ୍ଷିଣ କରି କହିଲା, ଗୋସାଇଁ ଆଶ୍ରମ ନଗରେ ତ କେହି ନାହିଁ । ଯୋଗୀ ବୋଇଲା ଅଛି ଅଦୃଶ୍ୟ ହୋଇ । ତୋତେ ମୁଁ ଦେଖାଇଲେ ଦିଶିବ ନା । ସେ ଘଟେ ଦ୍ରବ୍ୟସ୍ଥିତି ଅଘଟଇ । ଏହା ଶୁଣି କୁମର ବୋଇଲା ଗୋସାଇଁ । ଏବେ ମୁହିଁ ଯାହା ମାଗିବି ବର । ପ୍ରସନ୍ନ ହୋଇ ମୋତେ ଅନୁଗ୍ରହ କର । ଯୋଗୀ ବୋଇଲା ବାବା ମାଗୁ କି ନା ? ଅମ୍ଭର ତୁମ୍ଭର ନୋହୁ ଭିନ୍ନା ଭିନ୍ନ (୧) । ସକଳ ଘଟେ ପୂରିଅଛୁ ମୁଁ ଜାଣି । ବାଞ୍ଛା ସିଦ୍ଧ କି କଲେ ତୋହର ଆମ୍ଭଙ୍କ ଭଗତି କଥା ପୁଣି । ଏହା ଶୁଣି କୁମର ବୋଇଲା । ନଗର ଭିତରେ ଧନାଗାର ଆସନ କରି ରହିବ । ଯୋଗୀ ବୋଇଲା ବାବା ନଗର ଆମ୍ଭଙ୍କ ଶ୍ମଶାନ ସିନା । ବନ ଗୃହ ଆମ୍ଭଙ୍କ ଭେଦ ନାହିଁ କି ନା । ଯହିଁଥିଲେ ଆମ୍ଭଙ୍କ ସମସ୍ତ ଠାରେ (୨) ଶୋଭା । ତୋହୋର ଭକ୍ତିବଳରୁ ଯିବା । ତୁମ୍ଭ ନଗ୍ରେ ଧନାକେତେ ରହିବା । ଏମନ୍ତ ବୋଲି ଯୋଗୀ ବୋଇଲା ! ତୁମ୍ଭେ ଆଗ ହୋଇ ଚାଲ । ଏମନ୍ତେ ଯୋଗୀ କୁମରଙ୍କୁ ଆଗେ ଚଲାଇଲା । ବେତାଳମାନଙ୍କୁ ହକାରି ବୋଇଲା । ତୋଳିଧରି ଥିବ ମୋତେ ଅଦୃଶ୍ୟ ହୋଇ । ଆପଣ ଚାରି ପାର୍ଶ୍ୱରେ ଥିବ ଚାରି ବୀରେ ଉଚ୍ଚ ହୋଇ । ଥିରେ ଥିରେ ଗଲେ ତୁମ୍ଭଙ୍କୁ କେହି ନ ଦେଖିବ । ଏମନ୍ତ ଆଜ୍ଞା ଦେଇ ପଦ୍ମାସନେ ବସିଲା । ବେତାଳେ ତୋଳି

(୧) କହୁ ଆମ୍ଭ ତୁମ୍ଭର ନୋହୁଛୁ ଭିନ୍ନା । (୨) କହୁ ଠାବ ।

ଧରି ଅଛନ୍ତି ଅଛନ୍ତି । ଆକାଶରେ ସିଦ୍ଧର ଗମନ ହୋଉଅଛି ବୋଲି ଲୋକେ ଜାଣୁଅଛନ୍ତି । ସେ ଯୋଗୀ ଆକାଶେ ଗମନ୍ତେ, ବେତାଳମାନେ ତାଙ୍କୁ ତୋଳି ଧରନ୍ତେ, ଶନ୍ୟରେ ଆକାଶରେ ଗଲା ପ୍ରାୟେକ ହୋଇ, ଜଳନ୍ଧର ମୁଦ୍ରା ଫେଇ, କଲ୍ପ ଔଷଧ ଖାଇ, ଶୀତଭସ୍ମ ଘଷି, ଅଲ୍ପ ଅଲ୍ପ ହସି । ଯୋଗୀଙ୍କ ମଣ୍ଡଳାକାର କରି ପଛେ ଆଠ ବେଢ଼ି ଅଛନ୍ତି । କୁମର କେତେ ଘୋଡ଼ାଟାଏ ଚଢ଼ି ଚଳାଉଅଛୁ । ଅନ୍ତରରେ ପୁଷ୍ପବୃଷ୍ଟି ହେଉଅଛୁ । ଯୋଗୀ ମଧୁରବାଣୀ କହୁଅଛୁ । ବଢ ବଢ ନଲା ନେଇ ଗୁହୁଁ ଅଛୁ । ପୋଥମାନେ ଆନନ୍ଦେ ଗହଳେ ଚଳ ପାଇଁ ଧାଇଁଅଛନ୍ତି । ପୂର୍ବେ ଅନେକ ଶିଷ୍ୟ ଖାଇଅଛନ୍ତି । ଧାପେ ସେଁ ସେଁ ହେଉଅଛନ୍ତି । ମଧୁରବାଣୀ କହୁଅଛନ୍ତି । ସ୍ତ୍ରୀମାନେ ଜଳାକପାଟି ଫେଡ଼ି ମୃଗଲୋଚନେ ଗୁହାଁନ୍ତେ ନୀଳପଦ୍ମର ପୁଷ୍ପ ସମୂହରେ ଯୋଗୀଙ୍କ ପୂଜାକଲା ପ୍ରାୟେକ ଶୋଭା ପାଉଅଛୁ । ସେ ଯୋଗୀ ଜଗତ ଯାକ ମୋହୁଅଛୁ । ଭୂତଚନ୍ଦ୍ରାମଣୀ ଅଦୃଶ୍ୟ ହୋଇ ପାଟଛତ ଗୋଟାଏ ଧରିଅଛୁ । ସେ ଛତ ଶୂନ୍ୟରେ ରହିଲା ପ୍ରାୟେ ଦିଶୁଅଛୁ । ନଚନ୍ତରେ ଲୋକ ପ୍ରାୟେ ପଡ଼ି ଶୋଇଅଛୁ । ରାଜମାର୍ଗ ମୋହୁଅଛୁ (୧) । ଏମନ୍ତେ ସେ କାମାନନ୍ଦ ଐନ୍ଦ୍ରଜାଲିକ ଯୋଗୀନ୍ଦ୍ର- ନଗର ଦ୍ୱାରେ ପାଇଲା । ପଞ୍ଚଦ୍ୱାର ଜିଣିଯାଇ ରାଜାର ଆସ୍ଥାନ ଗୃହିଁ ଆହ୍ଲାଦେ ପାଇଲା । ଭୂମିକ ଗୁରୁ ଅଇସିବା ଦେଖି କୃତ୍ୟ କୃତ୍ୟ ହୋଇ ମହାଗୌରବ କଲା । ସିଂହାସନୁ ଉଠି ଯୋଗୀଙ୍କ ଭେଟ୍ଟା କେତେ ପାଗ୍ରେଟି ଗଲା । ଦିବ୍ୟ ପଲଙ୍କ ଗୋଟାଏ ଆସନ ଦେଇ ମହା ପୂଜାକରି ବୁଦ୍ଧିରେ ବିମରି ବସରୁଁ ଅଛନ୍ତି । ଏ ସିଦ୍ଧପୁରୁଷ ଅଟେ । ନୋହିଲେ ଆକାଶରେ ଆସିବ କି । ଏମନ୍ତ ଯୋଗ ଲକ୍ଷଣ ତ କାହିଁ ଦେଖିଲା ନାହିଁ । ପୁଣି ବିଗ୍ଭରିଲା ସିଦ୍ଧମାନଙ୍କର ମନୁଷ୍ୟ ସଙ୍ଗତେ କି କାର୍ଯ୍ୟ । ଏହା ତ ଜାଣି ନୋହିଲା । ଆହୁରି ଏହାର ଉତ୍ତମ ଗୁଣମାନଙ୍କର ଦର୍ଶନେ ଜାଣିମା । ରାଜା ମଉନ ହୋଇ ମନେ ମନେ ବିଗ୍ଭରନ୍ତେ, ଯୋଗୀଙ୍କଣ୍ଠୁ ପିଶାଚୀ ଯକ୍ଷିଣୀକ ବୋଇଲା । ରାଜା ମନେ କି ବିଗ୍ଭରୁଅଛୁ । ଏହା ମୋତେ କହ । ଯକ୍ଷିଣୀ ମନେ ପଶି ରାଜାର ହୃଦସ୍ଥ ବିଗ୍ଭର କାମାନନ୍ଦ ଯୋଗୀର କର୍ଣ୍ଣରେ କହିଲା । ଅଦୃଶ୍ୟ ହୋଇ ରାଜାକୁ ଯୋଗୀ ବୋଲୁଅଛୁ । ହେ ରାଜେନ୍ଦ୍ର ! ଆମ୍ଭ ବିଗ୍ଭରରେ ଭ୍ରାନ୍ତକଲୁ । ତୁ ଯେ ବିଗ୍ଭରିଲୁ ସିଦ୍ଧମାନେ କିମ୍ପା ମନୁଷ୍ୟ ଦର୍ଶନ କରିବେ ବୋଲି । ପୂର୍ବେ ମହାଋଷିମାନେ ଲୋମଶ, ପରାଶର, ବଶିଷ୍ଠ, ବିଶ୍ୱାମିତ୍ର ଆଦିକରି ଏମାନେ ପରମସିଦ୍ଧ ସିନା । ଏ ପୁଣି ରାଜାମାନଙ୍କୁ ଭେଟ ନୁହନ୍ତି କି ? ଗୋରେଖ ମତ୍ସ୍ୟେନ୍ଦ୍ର ଆଦି ସିଦ୍ଧମାନେ ହେଁ ରାଜାମାନଙ୍କୁ ଭେଟ ଦେଇ ନିସ୍ତାର କରନ୍ତି । ଏମନ୍ତ ମନକଥା ଯୋଗୀ ଜାଣିଲା ସହୁଁ, ରାଜା ମହା ଭୟ ପାଇ ପୂଜାକଲା ତହୁଁ । ଯୋଗୀଙ୍କ ବନମାଳା ଗୋଟିଏ ହୃଦସ୍ଥରେ ଲମ୍ବାଇ, ଚରୁସମ ଘସାଇ, ହସ୍ତରେ ଦିବ୍ୟ ଦେଖିମାନ ଦେଉଅଛୁ । ଯୋଗୀ ସେହିକ୍ଷଣି ହଲୁକ ବିଭୂତ କପୋଳେ ଘଷିଲା । ଅଦୃଶ୍ୟ ହୋଇଲା । ମନରେ ସନ୍ଦେହ ପାଞ୍ଚିଲନ୍ତି ଅନ୍ତର୍ଦ୍ଧାନ ହୋଇଲା ବୋଲି

---

(୧) 'ଖ' ରେ ନାହିଁ ।

Digitized by srujanika@gmail.com

ବୋଇଲା କୁମର ସହିତେ ସମସ୍ତେ ହେଁ ଆକୁଳ ହୋଇଲେ । ହସ୍ତ ପ୍ରାପତ ନିଧି ଗଲା ବୋଲି ବୋଇଲେ । କାକୁସ୍ଥ ବଚନମାନ ଉଚ୍ଚାରିଲେ ଯନ୍ତ୍ର , ଅଦ୍ଭୁତ ପୋଛି ରତ୍ନପଲଙ୍କେ ବିଜେକଲା ତହୁଁ । ରାଜା ସହିତ ହୋଇ ସମସ୍ତେ ହେଁ ପାଦପୂଜା କଲେ । ସ୍ୱୟଂ ଈଶ୍ୱର ବୋଲି ବୋଇଲେ । ଅନେକ ଧନରତ୍ନମାନ ସ୍ତୁମ୍ଭରେ ଥୋଇଲେ । ମୁଖକୁ ଚାହିଁ ତୃଷ୍ଣୀଭୂତ ହୋଇଲେ । କୁମର ସହିତେ ହୋଇ ସମସ୍ତେ ହେଁ ସଭାରେ ଅଛନ୍ତି । ଏମନ୍ତ ସମୟରେ ଅଦ୍ଭୁତ ହୋଇ ମଧୁମାଳତୀ ବୋଲି ଗାୟକ ଗାୟକୀ ପ୍ରବେଶ ହୋଇଲେ । ସେ ମଧ ନାମେ ଗାୟକ ମାଳତୀ ସହିତ ହୋଇ ପ୍ରବେଶ ହୋଥନ୍ତେ, କି ଚନ୍ଦ୍ରଦେବତା ରୋହିଣୀ ସହିତ ହୋଇ ଅଇଲେ । କି କାମଦେବ ରତି ସହିତ ହୋଇ ଶୋଭିଲେ ।

ସେ ଗାୟକଙ୍କ ଅନେକ ବର୍ଣ୍ଣ । ଦୀର୍ଘ ବାହୁ ବିଶାଳାକ୍ଷ । ଦୀର୍ଘ ମାଳା ଗୋଟିଏ ଭିଡ଼ିଅଛି । ଅନେକ ଅଳଙ୍କାର ଭିଡ଼ିଅଛି । ସେ ମଧ କେମନ୍ତ ଅଟଇ । ଅଳଙ୍କାର ଭିଡ଼ିଅଛି । ହରିତ ବସ୍ତ୍ର ଗୋଟାଏ ପିନ୍ଧିଅଛି । ନାନା ପୁଷ୍ପେ ଚୂଳି ଗୋଟିଏ ଛନ୍ଦିଅଛି । କର୍ପୂର ତାମ୍ବୁଳ ଖାଉଅଛି । ଏକ ଗୋଡ଼କେ ତ୍ରିଭଙ୍ଗି ପ୍ରାୟ ଉଭା ହୋଇଅଛି । ବୀଣାରେ ହାଥ ଦେଇଅଛି । ସେ ମାଳତୀ କେମନ୍ତ ଅଟଇ । ସରୁ ସହଳ କୁଞ୍ଚକରି ପିନ୍ଧିଅଛି । ବାମ ଭାଗକୁ ଓହଳ ଇଲା କରି କବରୀକିର ବାନ୍ଧିଅଛି । ଉତ୍ତୁଙ୍ଗ କୁଚ ଭରାରେ ଚନ୍ଧି ଜଡ଼ିଅଛି । ରୋମପୁଳକ ଉଠିମ ହୁଅନ୍ତେ, ବେପଥୁ ସ୍ୱେଦ ଲାଗିଅଛି । ଅଳ୍ପ ଅଳ୍ପ ହସିଲା ପ୍ରାୟେ ହେଉଅଛି । ଜଗତଯାକ ମୋହୁଅଛି । କର୍ପୂର ତାମ୍ବୁଳ ଖାଉଅଛି । ଅପାଙ୍ଗ କୋଣେ ଚାହୁଁଅଛି । କଜ୍ଜ୍ୱଳପାଣି ଚଢ଼ିଲାର ଲକ୍ଷ୍ମୀପ୍ରାୟେ ଶୋଭା ପାଉଅଛି । ମୁଖ ପଦ୍ମର ଜଳେ ଧୋଉଅଛି । ପୌର୍ଣ୍ଣମୀ ଚନ୍ଦ୍ରମା କି ଭୂମିଗତ ହୋଇ ରହିଅଛି । ଈଷଦ୍ଧାସେ କହୁଅଛି । ଅମୃତଧାରା ବହୁଅଛି । ଏବମ୍ଭୂତ ସେ ଅଦ୍ଭୁତ ଗନ୍ଧର୍ବ ଅପ୍ସରା ବେଶଧରନ୍ତାକୁ ଦେଖି ରାଜା ମନେ ମନେ ବିଚାରିଲା । ଆହେ। ଏହାଙ୍କୁ କି ବୋଲି ଲକ୍ଷିବା । ବିଦ୍ୟାଧର ବୋଲିବା ତ ଭୂମି ଛୁଉଁଅଛନ୍ତି । ଚକ୍ଷୁ ଚଳୁଅଛି । ପୁଷ୍ପମାଳ ମାନେ ମଳିନହେଲୁ ଗଲେଣି । ଲେପ ଚନ୍ଦନମାନେ ଶୁଖିଅଛନ୍ତି । ଏଣୁ କରି ସ୍ୱର୍ଗ ପୁରୁଷମାନେ ନୋହନ୍ତି । ନାଗଲୋକ ବୋଲିବା । ଏହାର ଊର୍ଦ୍ଧ୍ୱଫଣି, ମଣିଦୀପ୍ତ ହେଉନାହିଁ । ଏ ଯେଣୁକରି ଜାଣିଲୁଁ ମର୍ତ୍ତ୍ୟ ଲୋକ ଅଟଇ । ଏମନ୍ତ ବିଚାରି ରାଜା ଆଜ୍ଞା ଦେଲା । ଆହେ। ତୁ କାହାର, କୀର୍ତ୍ତି ପତାକା ପ୍ରକାଶ କରୁଅଛୁ । କି ଅବା ବିଦ୍ୟାଜାଣୁ । କାହାର ପରିବାର ଅଟୁ । ଅପୂର୍ବବିଦ୍ୟା ଥିଲେ ପ୍ରକାଶ କର ।

ତ ସେ ଏମନ୍ତ ଆଜ୍ଞାପାଇ, ଗାୟକେଣ ବୋଲୁଅଛି ହେ ରାଜେନ୍ଦ୍ର ! ହାଦେ ସମସ୍ତ ତ୍ରିଭୁବନମଣ୍ଡଳ ନୟନ ହରଣ ପାଶସ୍ୱରୂପା । ଚରାଚର ନେତ୍ର ଚକୋର ଚନ୍ଦ୍ରିକା । କୁରୂନୃପ ଚତୁର୍ଦ୍ଦଶ ଭୁବନ ବିଜୟ ରଥଧ୍ୱଜ ପତାକା ସକଳ ସୀମନ୍ତିନୀ ଘନ ବିଦ୍ୟୁଲ୍ଲେଖା । ସୁରାନ୍ଧକାର ପଟଳ ନିର୍ଜିତ ପ୍ରଦୀପିକା ରସ ଜଳଧିନଗ୍ନ ମନ ବେଦିକା । ବଳିତ ଲଳିତ ସ୍ଥୂଳ ଘନ ପୀବର କୁମ୍ଭ ଅନଙ୍ଗାର୍ଣ୍ଣବ ତରଣେ ନୌକା । ନବ ପଞ୍ଚପୁରେ ଦୁର୍ଲ୍ଲଭ

Digitized by srujanika@gmail.com

ନାୟିକା । ଜଗତ ମଧ୍ୟେ ନିଧି ଲକ୍ଷ୍ମୀର ଲକ୍ଷମୁକ୍ତ ସା ମୁକ୍ତା । ସର୍ବ ସୁଖ । ସର୍ବ ପଦ । ସର୍ବ ରସ । ସର୍ବ ନିଧି ଅପାଙ୍ଗଲୀଳାମୃତ ଦାତା । ଭକ୍ତ ଯୋଗେନ୍ଦ୍ର ନୃପତିଃସୁତା । ପ୍ରୀତି ଦାତା । ପ୍ରିୟମ୍ବଦା । ସାମୃତ କନ୍ୟାକାସ୍ୟା ଲାବଣ୍ୟ ବର୍ଣ୍ଣନା ଗାଥାରସେକ ଆଦୌ କଥୟାମି । ଏମନ୍ତ ବୋଲି ସେ ମଧୁନାମେ ଗାୟଣ ବିନାଯୁକ୍ତ ସରସ୍ୱତୀଙ୍କ ବନ୍ଦ, ହୁଙ୍କାର ନାଦ ଛନ୍ଦ, ନାକ କାକଳିର କଲ୍ୟାଣର ସ୍ୱନ ଅମୃତ୍ରାବ ଦୋଷାନ୍ତ ନାଶି, ସୁରଣ ପ୍ରକାଶି, ବ୍ରହ୍ମମୂର୍ତ୍ତି, ବଚ, ସୁଣ୍ଠି, ଶର୍କରା, ପିପ୍ପଳୀ, ମଧୁ, ମହାଭେରଣ୍ଡା, ନୀଳକଣ୍ଠ ମୂଳାଦ ଔଷଧମାନ ଖାଇ, ମାଳତୀ ସହିତ ହୋଇ, ଖଞ୍ଜନମାନ ମୂଳ ବମ୍ପୁରେ ଜିହ୍ୱା ଦେଇ, ଅମୃତମୟୀ ନାଦ ପ୍ରଣମିକ ଧାୟି, ମାଳାଧର ମାଳବ ରାଗକୁ ଅଳସ ଛନ୍ଦ, ମୂର୍ଚ୍ଛନା ମାଳଶ୍ରୀ ଆଚ୍ଛାଦନ ମନ୍ତ୍ରରେ, ଅପସ୍ୱର ତାର ଘୋର ଝମକ ହୁଁକାର କରି ଆଳାପ ଭଙ୍ଗି କରି ଗୀତଗାୟନ କରୁଅଛୁ । ସେ ଗୀତର ଅର୍ଥରେ ଏ କଥାର ଗୁଣ ବର୍ଣ୍ଣନା କରୁଅଛୁ ।

ସେ କେବଣ କେବଣ ପ୍ରକାରେ । ସେ ତରୁଣୀମଣୀ ରସ୍ତେ କୁଳଣୀ ମଧ୍ୟ ଦକ୍ଷୀର୍ଣ୍ଣୀ । ସେ ଶଶିବଦନୀ । ସେ ପିକବଚନୀ । ସେ ମୃଗନୟନୀ । ସେ ଲୀଳାମତ୍ତ କରିବର ଗମନୀ । ଯେ ଅମୀୟରସ ଅପୂର୍ବ ବଚନୀ । ସେ ତ୍ରିଭୁବନ ଜନମନ ହାରଣୀ । ସେ ମନ୍ମଥ ଉତ୍ସବ କଳାବର୍ଦ୍ଧିନୀ । ସେ ବକୁଳରବିନ୍ଦବାସଲେପନୀ । ସେ ପୀତ କୌଶେୟ ସୂକ୍ଷ୍ମବାସିନୀ । ସେ କନକ ସୌଦାମିନୀ କାମିନୀ । ସେ କନ୍ଦର୍ପ ସଂପ୍ରାପ୍ତ ଇକ୍ଷଜାସିନୀ । ସେ ମୁନିଜନ ମନ ନାଶିନୀ । ସେ ଲୀଳାବନ ତରଙ୍ଗ ଦ୍ରୁଷିନୀ । ସେ ଦ୍ୱିଗପ୍ତ କମଳିନୀ । ସେ ଅମୃତ ସଞ୍ଜୀବନୀ (୧) କନ୍ୟାର ସୁନ୍ଦର ପଣ କହିବାକୁ ସହସ୍ରେ ବକ୍ତ୍ରେ ଶେଷନାଗ ଅବା କହନ୍ତେ । ସେ ଯେବେ ସର୍ପବନ୍ଧୁ ନିଦ୍ରା ବଶରେ ଚେତନ ଥାନ୍ତା, ଚନ୍ଦ୍ରଦେବତା ଅବା କହିପାରନ୍ତା । ସେ ଯେବେ କ୍ଷୀଣ ବୃଦ୍ଧି ନ ଥାନ୍ତା, କାମଦେବ ଅବା କହି ପାରନ୍ତା । ସେ ଯେବେ ଦେଖିଲେ ଜଡ଼ ପ୍ରାୟେକ ହୋଇ ଲାବଣ୍ୟ ପଙ୍କେ ନ ଲାଗନ୍ତା, ପବନ ଦେବତା ଅବା କହିପାରନ୍ତା, ସେ ଯେବେ ସ୍ତନ ବସନ ଭିତରେ ଭୋଳାୟିତ ନ ହୋଇଥାନ୍ତା, ସଦାସ୍ପର୍ଶୀ ଅବା କହି ପାରନ୍ତେ । ସେ ଯେବେ ନାରଦ୍ପୁଣର୍ଜ୍ଜ ଗ୍ରାମରେ ବୀଣା ବାହୁ ନ ଥାନ୍ତେ, ବୃହସ୍ପତି ଅବା କହି ପାରନ୍ତା । ଯେବେ ଜାତକ ବେଳେ ତାହାର ଶ୍ରୁକ ଅଷ୍ଟବର୍ଗ ଶୁଦ୍ଧ ହୋଇଥାନ୍ତା, ସନତ୍କୁମାର ଅବା କହିପାରନ୍ତା । ସେ ଯେବେ ବାଳକ ନୁହନ୍ତା, ବାସୁକି ଅବା କହିପାରନ୍ତା । ତାହାର ଯେବେ ପୃଥ୍ୱୀଶ୍ୱର ନ ଥାନ୍ତା, ହିମାଳୟ ଅବା କହିପାରନ୍ତା, ସେ ଯେବେ ନିରନ୍ତର ଶୀତଳତା ନ ଲାଗନ୍ତା, କ୍ଷୀର ସମୁଦ୍ର ଅବା କହିପାରନ୍ତା, ସେ ଯେବେ ମତ୍ତ ହୋଇ ନ ଥାନ୍ତା......

---

(୧) 'ଖ' ରେ ସଂଜୀବନୀ କରଣୀ ।

Digitized by srujanika@gmail.com

ଏମନ୍ତେ ସେ କନ୍ୟାକୁ କେହୁ ବର୍ଣ୍ଣି ନ ପାରିଲେ ଯହୁଁ, ବ୍ରହ୍ମାର ଡହିଁକି ସକଳ ଦେବତାଏ ଗମନ କଲେକ ତହୁଁ । ଅବଦ୍ୟା ମୃଥୁ ସଖ୍ରୀଜନ କରଣୀ କନ୍ୟାର ଗୁଣ ବର୍ଣ୍ଣି ପଗ୍ଭରିଲେ । ବ୍ରହ୍ମା ବୋଇଲେ ଯେ କନ୍ୟାକୁ ଅବା କ୍ଷୀରସମୁଦ୍ର ସମାନ ହୁଅନ୍ତା । ତାହା ତହୁଁ କନ୍ମ ପଦାର୍ଥମାନଙ୍କରେ ଯେତେବ ଦୋଷ ନ ଥନ୍ତା । ସେ କନ୍ୟାର ବଦନଚନ୍ଦ୍ରକୁ ପଟାନ୍ତର କରିବ କେ । କ୍ଷୀଣ କଳଙ୍କ ଜଡ଼ ସେ । ଦାପସେ ଦୂଷିତ ଧୂସର ଦିଶଇ । ପ୍ରେମ ଭକ୍ଷକାସ ପ୍ରସନ୍ନ ନ ଦିଶଇ । ପଦ୍ମକୁ ପଟାନ୍ତର ହୁଅନ୍ତ । ସଙ୍କୋଚ ବ୍ୟାକୋଚ ଶିଶିରେ କ୍ଷୀଣ ପୁଷ୍କଳ ଯେତେ ନୁହନ୍ତା । ମଦନ ଦର୍ପଣ ଅବା ବୋଲିବା । ସେ ନିରସ ଧାତୁ କଠିନ । ମାର୍ଜନେ ସେ ଦିଶଇ । ଅମୃତ ସରୋବର ବୋଲିବା । କଟାକ୍ଷେ ପ୍ରେକ୍ଷଣ ଚଳ ନ ଥିବାଉଁ କରି ନୋହିଲ । ମନ୍ମଥ ସଦନ ଅବା ବୋଲିବା । ଅପାଙ୍ଗ ବାଣର ଭୟେ କରି କାମଦେବ ନାଭି ବସୁରେ ଥାଇ । ରତି କଳାନିଧି ବୋଲିବା । ସନ୍ନିଧେ ହୋଅନ୍ତେ ଭ୍ରାନ୍ତ୍ୟ ପ୍ରାୟେକ ହୋଇ । ଲାବଣ୍ୟ ପାଣି ବୋଲିବା । ତୃନ ଆକର୍ଷି କରନ୍ତେ ହେଁ ନ ଲାଗଇ । କେତେକ ବଦନ କାମଦେବର ବନ୍ଧାପନାବତୀ । ଖଣ୍ଡେନ୍ଦୁଖଣ୍ଡ ପରିଏକ ହୋଇଅଛୁ କପୋଳାକୃତି । ପଦ୍ମଦଳ ଦୁଇ ଅଛୁ ମଧ୍ୟରେ । ଭ୍ରମର ଦୁଇ ଅଛୁ ଶନ୍ୟରେ । କୋଦଣ୍ଡ ସାଇଡଳ ପ୍ରାୟେକ ଭ୍ରୂଲତା ଦିଶଇ । ତିଳପୁଷ୍ପ ଗୋଟିଏ ମଧ୍ୟରେ ଥୋଇଛୁ ପ୍ରାୟେକ ନାସିକା ପ୍ରକାଶଇ । ବନ୍ଧୁକ କାଳ ଅଧର ବହ୍ନିର ଭ୍ରାନ୍ତ । ଅମୃତ ରସମାନେ ଦୀପର ଘୃତ ପ୍ରାୟେକ ଝଳୁଛନ୍ତି ଅଛନ୍ତି । ଏମନ୍ତ ଚୋଳ ପଟାନ୍ତର ନୋଇ ହୁଅନ୍ତା । ଅଦୋବାମ ଯେବେ ଟମ ବନ୍ଧାପନା ହୋଉଥାନ୍ତ । କ୍ଷୀରସମୁଦ୍ରୁଁ ଶଙ୍ଖ ଜନ୍ମିଲା । ସେ ନବ କଠିନ ଆବର୍ତ୍ତିବ ଯେଣେ ଖାଇଁ କରି କଣ୍ଠକୁ ସମାନ ନୋହିଲା । ପାରିଜାତକ ପୁଷ୍ପ ଫୁଟିଲେ ସେ ନାମ୍ବଇ । ସେ କ୍ରମାଦ୍ଧ ନାନା କୁଣ୍ଡଳ ଅଫଟେ ବଇ । କହ୍ଲାରଭ୍ରମଣୀ ଦନ୍ତକୁ ପଟାନ୍ତର କରି ହୁଅନ୍ତା । ତହିଁର ମଧ୍ୟରେ ଯେବେ ଭେଦ ନ ଥାନ୍ତା । କହ୍ଲାରୁଁ ସୁଦର ହୋଇଲ ଯହୁଁ । କର୍ଣ୍ଣ ପାଶ ପାଉଅଛୁ ହରି ହରଷ ଭୟୁଁ । ଐରାବତ ଗଜ ଗ୍ଭଲ ସମାନ ହୁଅନ୍ତା । ଟଙ୍କର ଭୟ ବାଣ ଭୟ ଯେବେ ପାଇ ନ ଥାନ୍ତା । ଗଙ୍ଗାର ସକାଶୁଁ ନର୍ମଦ ହୋଇଲ । ବେଣୁଜରେ ଗମନକୁ ସମର୍ଥ ନୋହିଲ । ସ୍ତନକୁ ଗଜକୁମ୍ଭ ପଟାନ୍ତର କରିବ କେ । କର୍କଶ ଲୋମଶ ଦଂଶର କଠିନ ସେ । ସମୁଦ୍ରରୁ ଅମୃତ ଖାଇଲେ ସେ ମୋକ୍ଷ ହୋତ । ତାଲା ଅଧରାମୃତ ଦେଖିଲେ ପରମ ସୁଖ ପାଇ । ଗୁଣକୁ ଅମର ହୋଇଲ କ୍ଷୀରନିଧି । କେଶୁକରି ସୁଧାକାର ମଣଳ ବୃଦ୍ଧି । ଉପମା ଯେବେ ନୋହିଲ ତ୍ରୈଲୋକ୍ୟ । ତହୁଁ ଜଗତ ଚଳା ଗ୍ରନ୍ଥ କଲ ସମାଧିମଣ୍ଡ । ସମାଧିରେ ଦିବ୍ୟ ଶକ୍ତି ହୋଇଲ ଯହୁଁ । ଏବଂଭୂତ ଉପମା ଦର୍ଶିଲ ତହୁଁ ।

ଭ୍ରାନ୍ତ କାଦମ୍ବିନୀତରଙ୍ଗ । ନୀଳମେଘ ପ୍ରସ୍ତବର୍ଷିତ ଅମୃତ ସମୁଦ୍ର ତରଙ୍ଗ । ଅପସର କୃତ କସ୍ତୁରୀ ପତ୍ରାବଳୀ ଭଙ୍ଗେ । ଜମ୍ବୁନଦ ଜଳତରଙ୍ଗ ଶୃଙ୍ଗେ । ତୀରେ ନୃତ୍ୟନ୍ତ ମୟୂରଗଣଂ କେଶଗ୍ରସ୍ତା ପ୍ରତିବିମ୍ବେ । ଇନ୍ଦ୍ରନୀଳମଣି କୂଟ ବୃନ୍ଦେ । ନୀଳଉତ୍ପଳ କଳିକା ପୁଞ୍ଜିତାନୁ ବନ୍ଧେ । ଯେବେ ଯମୁନା ସତରଙ୍ଗେ ସ୍ତବ । ତେବେ ଯେ କନ୍ୟାର କେଶକୁ

Digitized by srujanika@gmail.com

ଉପମା ହୋଇବ । ସେ କେଶ କନ୍ଦର୍ପର ତ୍ରୈଲୋକ୍ୟ ବିଜୟ ରଥଧ୍ୱଜ ଚାମର ପରାଏ ଅଟଇ । କି କାମଦେବର କୋଦଣ୍ଡ ମଣ୍ଡଳମଣ୍ଡନ ଥାନ୍ତା । ସେ କନ୍ୟାର ଉଲଟ ପାଟିରେ । କି ଈଶ୍ୱରଙ୍କ ହାଣଥିଲ କାମଦେବର ଲେଉଟି ପଡ଼ିଲା ବାଳୀରେ । କି ଅର୍ଦ୍ଧଚନ୍ଦ୍ରଖଣ୍ଡ ମାଳରେ । କି ଭ୍ରୂଲତା ଭୃଙ୍ଗମାଳାରେ । କି ବିଶ୍ୱକର୍ମା ମସ୍ତୁଦୈତ୍ୟ ବୃହସ୍ପତି ଆଦିକରି, ସତ୍ତ୍ୱରି ମୁଖରେ ପଡ଼ିଲା କାଳିରେ । ସେ ଲଲାଟପାଟିକି କି ବୋଲି ବୋଲିବା । ଅମୃତଶିଳା ବୋଲି ଯେବେ ବୋଲିବା, ତହିଁ ମନ୍ମଥ ବିକାର ନାହିଁ । ପରଶ ପଥର ବୋଲି ଯେବେ ବୋଲିବା, ସେ ଲାବଣ୍ୟ ଜଳଧିର ସ୍ୱେଦକଣିକା ଅବା ପାଇବ କାହିଁ । ତରୁଣ ଇନ୍ଦୁ ଅବା ବୋଲିବା, ସେ ସବଦେ ନ ମିଳଇ । କ୍ରୀଡ଼ାରସ ମୁକ୍ତ ଚେତ୍ର ଅବା ବୋଲିବା, ସେ ଦେଖିଲେ ନ ଚଳଇ । କନ୍ଦର୍ପର କୁଙ୍କୁମ ଲେଖପତ୍ରିକା ଅବା ବୋଲିବା, ଏଥି ଅକ୍ଷର ପଂକ୍ତି ନାହିଁ । ଏମନ୍ତ ପ୍ରାୟେ ମଣି । ଈଶ୍ୱର ଅର୍ଦ୍ଧଚନ୍ଦ୍ର ଖଣ୍ଡେ ବହୁଅଛନ୍ତି । ସେ ଲଲାଟ-ପଟକୁ ଖୋଜିବା ପାଇଁ ମଦନ ଶ୍ରୀବ ତବୋଲି କି ବିଧାତା ସୁବର୍ଣ୍ଣ ନୌକାଏ ଯୋଗଅଛି ଲେଉଟାଇ । ତହିଁ ଗୋଟିଏ ସିନ୍ଦୂର ତିଳକ ଦେଇ ଏଥିନାରେ କେମନ୍ତ ପ୍ରାୟେ ଦିଶୁଅଛି । କି ତରଙ୍ଗ ଗଡନ୍ତୁ ଦନ୍ତ୍ୟ କଲୁ ବୋଲି ମେ ହେମ ଲକ୍ଷ୍ମୀ ହସୁଅଛି । କାମ ବହ୍ମାଣ୍ଡରେ ଲାବଣ୍ୟ ଶ୍ରୀ ଉଦୟ ହେବାର ପ୍ରାୟେ ଦିଶୁଅଛି । କି ମନ୍ମଥ ଅନ୍ଧକାର ଛଡ଼ା — କି ଅମୃତ ସମୁଦ୍ର ଭିତରେ ରକ୍ତପଦ୍ମ ଗୋଟାଏ ଶୋହୁଅଛି । କି ମହାଦେବର ନୟନାଗ୍ନିରେ ଦଗଧ ହୋଇ କନ୍ଦର୍ପ ଅଙ୍ଗାରେ ପ୍ରାୟେକ ଉଠିଅଛି । ସେ ଗୋରଚନା ସିନ୍ଦୂର ତିଳକ ବିନ୍ଦୁ ଅର୍ଦ୍ଧରେ ଚର୍ଚ୍ଚି କୁନ୍ତଳମାଳୀ । କି ମନ୍ମଥ ଲତା ଜାଲି । କି ଅତ୍ୟନ୍ତ ରସାଳି । କି ପବନେ ପ୍ରଚଳି ହୁଅନ୍ତେ । ମନୋଭବ ନୃପତିର ପଡ଼ିଲ ଅଛି ନୀଳ ପତାକାବଳୀ । ତ୍ରିଭୁବନ ଯୁବା ଜନମାନଙ୍କର ନୟନ ସଫରୀ ବନ୍ଧି କରିବାକୁ ନେଉଛି କି ଜାଲି ପଟଳି । କୃଷ୍ଣମେଘରୁ ବାହାର ହୋଇଲ ଅଛି କି ଶରଦ ଚନ୍ଦ୍ରର କଳା । କି ହରଣ୍ୟ ବର୍ଣ୍ଣ ମେଘରେ ଜଗତଜନ ଉତ୍ପାତେ କରି ମାରୁଅଛି ମର୍କତ ବିଜୁଳି ।

ଏମନ୍ତେ ସେ କୁଟିଳ, ଚହଳ, ନୀଳ, ସ୍ନିଗ୍ଧ, ମସୃଣ, ସୂକ୍ଷ୍ମରେଖ, ମନୋହର, ଭ୍ରୂଲତାର ମଣିମଧ୍ୟ, କି କନ୍ଦର୍ପ ପୁଷ୍ପ ଭ୍ରମର ପ୍ରାୟେକ ଭ୍ରମନ୍ତି । କି କୃଷ୍ଣ ସର୍ପିଣୀର ପ୍ରାୟେକ ଶୋଭନସ୍ତ । କି ମର୍କତ ଲତାର ପ୍ରାୟେକ ଲୋଭନସ୍ତ । କି ଇନ୍ଦ୍ରନୀଳମଣି ମାଳା । କି ମୁଖପଦ୍ମ ରହିଲା । ବଦନଚନ୍ଦ୍ରେ ପ୍ରକାଶୁ ଅଛୁ ଅବା କଳଙ୍କର କଳା । ସେ ବଦନ ସୁଧାନିଧି ସୁବର୍ଣ୍ଣକାର ପଟଳମାନ କଲ୍ପ ଯହୁଁ, ଉଦର ଫୁଟି ଅନ୍ଧକାର ଦିଶୁଅଛି ତହୁଁ । କି ସହୁ ଭ୍ରମରଙ୍କର କଳ ଛଡ଼ାଇବାର ପାଇଁ ମଧ୍ୟରେ ନୀଳରେଖା କାଟିଅଛି ବିଧାତା ଚନ୍ଦ୍ରପଦ୍ମ ଦର୍ଶାଇ । ତ ବାବୁ ସେ ଭ୍ରୂଲତା ରସଜଳଧିରେ ପଲ୍ଲବ ଅଛି କି ମନ୍ମଥ ମନ୍ତ୍ରଶାଳତା । କି ଚତୁଃଷଷ୍ଟୀ କଳାର ଜାଳ । କି କ୍ରୀଡ଼ାରସ ଫଳବାର ଅମୃତ ତରୁମାଳ । କି ସୁହୃଦ ସ୍ତବୁଁକରି କାମଦେବ ପୂର୍ଣ୍ଣଚନ୍ଦ୍ର ବିମ୍ବରେ ଲିହୁଅଛି ମୃଗମଦ ଅକ୍ଷର ମାଳ । ନୟନ ଦୁଇକ ବର୍ଣ୍ଣିବ କେ । ସ୍ମରଣ ମାତ୍ରକେ ଜଡ଼ ହୋଇବ ସେ । ଚଟୁଳ, ବିରଳ,

Digitized by srujanika@gmail.com

ସରଳ, ତରଳ, ରେ ସ୍ନିଗ୍ଧ, ବିଦଗ୍ଧ, ମନ୍ଥର, ମନୋହର, ଅଳସ, ଅବଶ ପ୍ରେମ ସମ୍ମିଳିତ ଗ୍ରୀବାଦ୍ଧ ସୁଖଦ ସୂକ୍ଷ୍ମ ବୀଜତ୍ରାସ୍ତୁ । ଅଞ୍ଜନ ରଞ୍ଜିତ । ନେତ୍ରପ୍ରାନ୍ତ ନନ୍ଦିତ । ମଧୁର ମନୋହର ହାସ । ମନୋଦାମ । ଦେବଳିକ ପଟଳ । ନୀଳପୃଳ ଉପହସିତ । କୁରଙ୍ଗ ତରଙ୍ଗ ହରଣ । ତୀକ୍ଷଣ ଚକିତ ରଚନାତ୍ମକ । ସସ୍ନେହ ଶରସନ ମୋଚନ । ପଙ୍କଜ ପରିହାସ ଲୋଚନ । ପଙ୍କଜକୁ କି ବୋଲି ବୋଲିବାରେ । ନୀଳଜଳ ବୋଲିବା ତ ଉଷ୍ଣତା ଦୋଷ ନୋହିଲ । ନୀଳୋତ୍ପଳ ବୋଲିବା ତ ମଳିନତାକୁ ସେ ଯାଇ । ଶିଶୁ-କୁରଙ୍ଗ ବୋଲିବା ତ ସେ ପ୍ରେମ ପ୍ରସନ୍ନ ନ ଥାଇ । ମନ୍ମଥ ଜଳନିଧି ବୋଲିବା ତ ସେ ଅଳ୍ପ ବେଳେ ଯାଇ । କାଳିନ୍ଦୀତରଙ୍ଗ ବୋଲିବା ତ ସେ ଗତାଗତ ନୁହଇ । ପୂର୍ଣ୍ଣଚନ୍ଦ୍ର ଦର୍ଶନ ସମୁଦ୍ର ଉଲ୍ଲୋଳ ବୋଲିବା ସେ ଗର୍ଜ୍ଜନ୍ନ ନ ଶୋହିଲ (୧) । କାମଶର ବୋଲିବା ସେ ତୂଣରୁ ଚ୍ୟୁତ ହୋଇ । ସଫରୀଯୁଗ୍ମ ବୋଲିବା ତ ସେ ପ୍ରବାସ ନୁହଇ । ଖଞ୍ଜରୀଟ ବୋଲିବା ସେ ନିରନ୍ତରେ ଚଞ୍ଚଳ ହୋଇ । ଅମୃତମେଘ ବୋଲିବା ସେ ବେଗେ ସ୍ରଜଇ । ସରସିଜ ଜଳ ବୋଲିବା ସେ ନୀଳ ଚଞ୍ଚଳ ନୁହଇ । କାମ କଜ୍ଜ୍ୱଳ ବୋଲିବା ସେ······ । ନୀଳ-ଚନ୍ଦ୍ରମଣି ବୋଲିବାରୁ ସେ କରି ନ ଶୋହଇ । ଲବଣେ ଶାମ୍ବୁକା ବୋଲିବା ସେ ଗମ୍ଭୀର ନୋହଇ । ଚକୋରଯୁଗ୍ମ ବୋଲିବା ସେ ବିଚ୍ଛେଦ ନ ମୋହଇ । ପଦ୍ମଦଳ····· ଲ ନୁହଇ । ଅନଙ୍ଗ ତ ····ବୃଦ୍ଧି ହୁଅଇ । ଗଙ୍ଗାତରଙ୍ଗ ବୋଲିବାରୁ ସେ ନିରସ ପୂରନ । ରତ୍ନ ଦର୍ପଣ ବୋଲିବା ସେ କଟାକ୍ଷେ ମଳିନ । ନୀଳୋତ୍ପଳ ବୋଲିବା ସେ·····ଛିନ୍ନ ନୋହିବ । ଅମୃତ······ସେ ନ ଦଶଇ । କ୍ରୀଡ଼ା ଜଳ ବୁଦ୍ ବୁଦ୍ ବୋଲିବା ତହିଁ ମନ୍ମଥ ବିକାର ଦଶଇ । ସ୍ୱର ସାରିକା ବୋଲିବା ସେ ଧ୍ୱନି କରୁଥାଇ । ରତିପ୍ରଦୀପ ବୋଲିବା ତହିଁ ତୈଳ······ଲିବ କେ ପାରିବ ଲକ୍ଷ୍ୟ । ସତ··· ସମୁଦ୍ରମାନଙ୍କର ସୃଷ୍ଟି କରିଅଛି (୨) । ଶଶିକର ନାକର । ହିମମନ୍ଦାକିନୀ, ତପନ, କୁନ୍ଦ, କୁମୁଦ, ପୁଣ୍ଡରୀକ (୩), ଗୋକ୍ଷୀର, ବାଣୀ, ଶମ୍ଭୁ, ମୁକ୍ତାରେ, ଚନ୍ଦନ କନ୍ଦର ସଙ୍ଘଟଣ ପଟଳାଦି କରି ସେତେ ଶୁକ୍ଳକୁ ଦେଖି ବିଧାତା ଜନ୍ମ କଲେ ଏତେ । ଏମନ୍ତେ ସମସ୍ତ ଚୂର୍ଣ୍ଣୀଭୂତ କରନ୍ତେ ସହୁଁ, ନୋହିଲା ଧମ । ନଷ୍ଟସ୍ତେ କାମଦେବକୁ ହୋଇଲ ଯମ । ସେ ନୟନକୁ ଏମନ୍ତ ପ୍ରାଏ ମଣି । ବିଧାତା ଅମୃତ ଖଣ୍ଡରେ କଜ୍ଜ୍ୱଳପଙ୍କେ ଜମ୍ବୁନଦୀ ଜଳେ କାଳିନ୍ଦୀ ତରଙ୍ଗ ଗୋଳେ କୃଷ୍ଣପକ୍ଷ ନିଶାରେ ଇନ୍ଦୀବର ଲତା ଏକ ରୂପିଲ । ନୀଳକଣ୍ଠ ଚଢ଼େଇର କଣ୍ଠରୁ ନୀଳ ସ୍ନିଗ୍ଧ କ୍ଷେପିଲ । ଇନ୍ଦ୍ରନୀଳମଣି ମର୍କତାଞ୍ଜନ କାଳି ନଳିନ ଜୀମୂତ ମୟୂର ଅଶିତ କୁସୁମ ଚନ୍ଦ୍ର ମଣ୍ଡଳୁ ପିଣ୍ଡଙ୍କ କଳଙ୍କାଦି କରି ସମସ୍ତ ଶ୍ୟାମ ପଦାର୍ଥମାନଙ୍କରେ ଦଗ୍ଧ ହୋଇଲ । କାମଦେବର ନୀଳ ଉଷ୍ଣାଙ୍ଗ ଭରି । ମୋହନ ଲକ୍ଷ୍ମୀ କି ଚୂର୍ଣ୍ଣୀଭୂତ କରି । ସମସ୍ତ ରସମାନ ସଂହାର । କୁରଙ୍ଗ ତରଙ୍ଗ ମନ୍ମଥସାତ୍ମକ ଭଙ୍ଗି । ଭ୍ରମରକେଳୀ ପୂର୍ଣ୍ଣଚନ୍ଦ୍ର ବନ୍ଦିତ ଉତ୍ପଳ ··ଳା ।—

---

(୧) ବନ୍ଧୁ ସେ ତ ବେଗେ ସ୍ରଜଇ (୨) ନେତ୍ର କି ଉଦ୍ଦୀପ୍ତ କରିଅଛି (୩) 'ଖ' ରେ ନାହିଁ ।

Digitized by srujanika@gmail.com

ରତିରସ ଲୀଳା । ପ୍ରେମାଦି ଗୁଣମାନଙ୍କର ଅଳା । ଘଟିଲ ମର୍କତ କଳା । ଅନଙ୍ଗ ଜଗଦଧ୍ୱଜ କଜ୍ଜ୍ୱଳ ଲୀଳା ସହିତ ପଧାର୍ଥମାନ ସମକଣ ସେ ଫଟିକ ନୀଳୋତ୍ପଳ ବେନିରେ ଜପିଲେ ଅମୃତ ସଙ୍ଗତ ଲେପି । କ୍ରୀଡ଼ାରସ ତରଙ୍ଗେ କ୍ଷେପି । କାମଦେବର ମୁଖପଦ୍ମର ମର୍କତ ଭ୍ରମର ଦୁଇ ଗୋଟି ବସାଇ । ମନ୍ମଥରସ ମିଶାଇ । ମହାମତ୍ତ ବାରୁଣୀ ନଇ । କନ୍ଦର୍ପର ନୀଳସ୍ମୃଷ୍ଟ ବାଣମାନଙ୍କ ଏହାର ଶୃଙ୍ଗାରୁଣରେ ଯୋଇ । ଚନ୍ଦ୍ର ଚକ୍ଷୁଁ ଅମୃତ ଅଞ୍ଜନ ଆଣି । ମଦନ ସମୁଦ୍ର ଗ୍ରନ୍ଥି ତହିଁରୁ ନିଅଁଲଇ । ମୃଗ ଯମୁନାର ତରଳ ତରଙ୍ଗ ମିଶାଇ, ଆକର୍ଷ ଲକ୍ଷ୍ମୀଙ୍କ ବସାଇ । ସେ ନୀଳୋତ୍ପଳ ଚକ୍ଷୁକଲା । ଏମନ୍ତ ଦେଖି କାମଦେବ ସେବକ ଗ୍ରବକୁ ଗଲା । ଏମନ୍ତେ ସେ କନ୍ୟାର ଉନ୍ନତ ନାସିକାକୁ କି ବା ବୋଲି ବୋଲିବା । ବଳିତ ଲଳିତ ଉଚ୍ଚ ସଞ୍ଚ ସମସରସ ସୁଲକ୍ଷଣ ପୃଷ୍ଠ ଦ୍ରବ୍ୟ ପରିଣାହ ସୁଗନ୍ଧ ଶ୍ୱାସ । ପ୍ରସର ପବନ କନକ କମନୀୟ କେତକୀ । ରସାଣିତ ପଞ୍ଚାଦାହ ସ୍ପର୍ଶ । ହରଶପ୍ର ହେମଦଣ୍ଡ କାନ୍ତି କାନ୍ତିମଣ୍ଡନ । ଯୁବା ଜନମନ ଭେଦନ ଛେଦନ କି ମଦନ ଖଡ୍ଗ ସୁଲକ୍ଷଣ । ରତ୍ନଛଳ କୁସୁମଙ୍କ ଅଧୋମୁଖ ବନ୍ଧନ । ମୟଦୈତ୍ୟ ନିର୍ମିତ ଅଟ୍ଟାମୃତ କଳଶ ମନ୍ଥନ କନକ ଦୋଆଦଣ୍ଡ ସମ । ଅପୂର୍ବ ଦେବ କୁସୁମ କି ବିଶ୍ୱକର୍ମା ନିର୍ମିତ ପାରିଜାତ କଳିକା ସମ । କି ମଧୁ ପବନ ମିହେଣ ··· ବିମ୍ବର । କନ୍ଦର୍ପ ରଙ୍ଗର ପ୍ରାସାଦ କି ଦିଶଇ ଅତି ସୁନ୍ଦର । ଶୃଙ୍ଗାରରସ ଜନ୍ମର ରନ୍ଧ୍ର କି ପ୍ରସରିତ ଅମୀୟ ପବନ । ଅପାଙ୍ଗ ବାଣର ଭୟେ କି କାମଦେବର ଶରଣ ସଦନ । ଶିରୀଷପୁଷ୍ପ ସୁକୁମାର ··· । ... ବାଟେ ... ପ୍ରାୟେ ଶୋଭା ପାଉଅଛି । କି ପୂର୍ଣ୍ଣଚନ୍ଦ୍ର ମଣ୍ଡଳରୁ ଶୁକଦେବତା ଅମୃତ ରସମାନ ସ୍ୱେଚ୍ଛାରୂପେ ପିଉଅଛି । କି ଗୁଣମାନଙ୍କ ସମ ··· କୁ ଦେଲା । ବିଶ୍ୱକର୍ମା କୁନ୍ଦେ କୁନ୍ଦ ହୋଇ ରହିଅଛି । କି ଶୃଙ୍ଗାରରସ ଲତାରେ ରତିକ୍ରୀଡ଼ା ଫଳ ଫଳିଅଛି । କି ଲାବଣ୍ୟ ଜଳ ପୂରନ୍ତେ ଟୋପି ଟୋପି ହୋଇ ··· ତା ସେ ସବୁ ଶ୍ରବଣପାଙ୍ଗି ବସନ୍ତପୂର୍ଣ୍ଣିମୀ ବନର ଦୋଳରେ । କି ତ୍ରିଭୁବନ ବିଜୟ ଫଡ଼ିକା ବଳିରେ । କି ମକରଧ୍ୱଜର ଆଳଟ । ତାହା ଦେଖି କାମଦେବ ରଞ୍ଜକ ହୋଇ ଅଭେଟ । କି ଯୁବା କମ୍ପଣ ଦାତା ।

ଏମନ୍ତେ ସେ କନ୍ୟାର ଅଧର ପଲ୍ଲବକୁ କି ବୋଲି ବୋଲିବା । ଅରୁଣପଲ୍ଲବ ଅତିଶୟ ରସ । ବିପୁଳ ପୁଲକିତ ଅମୃତ ସହିତ ବୃଦ୍ ବୃଦ୍ ଲାବଣ୍ୟ । ପଙ୍କେରୁହରେ ରେଖାବଳି କି ଲକ୍ଷ୍ମୀ ବିକଶିତ ସୁରତରୁ ମଧୁର କୋମଳ କମନୀୟ କାନ୍ତିକ ବନ୍ଧୁକ ଦ୍ୟୁତିକ ପ୍ରେମଜନିତ ସୁଧାରସ । ଏଥି ଅଧରକୁ କି ବୋଲି ବୋଲିବାରେ । କି ତାଳମ୍ବ କୁସୁମକୁ ଭେଳା କରି ଖେଦଜଳଧି ତରିବାରେ । କି ମନନସ୍ୱନକୁ ବନ୍ଧକରି ଅନୁରାଗ ରତ୍ନ ଥୋଇବାରେ । କି ଉଦୟ ମଦନ ମାର୍ତ୍ତଣ୍ଡ ମଣ୍ଡଳାର୍କ କଳା ପରାଏ ଶୋଭୁଥିବାରେ । କି ସୁରଙ୍ଗକାର ଧାରୁ ନବଡ଼କୁ ଧୋଇଥିବାରେ । କି ରତ୍ନ ନୃପବର ବକ୍ଷସ୍ଥଳେ ଅରୁଣ କୁସୁମମାଳା ପରାଏ ଦିଶୁଥିବାରେ । ମାଣିକ୍ୟ ନୌକାରେ କନ୍ଦର୍ପାର୍ଣ୍ଣବ ତରୁଁ ଅମୀୟ ଅପାଙ୍ଗେ ପଶୁଥିବାରେ । କି ସୁବର୍ଣ୍ଣ ମେଘରେ ରତ୍ନବିଦ୍ୟୁଚ୍ଛଟା ପ୍ରକାଶୁଥିବାରେ । କି

Digitized by srujanika@gmail.com

କ ବନ୍ଧୁକ ପୁଷ୍ପମାଳାରେ ମନଲଙ୍ଗଙ୍କୁ ପୁଜକବାରେ । ଅନୁରାଗ ଅମୃତ ଚନ୍ଦ୍ରମଣିରେ ଅରୁଣ ରତ୍ନ ବୋଲି ପାଞ୍ଚୁଥିବାରେ । କ ଯୁବା ଜନମନ ବନ୍ଧନରେ ରତ୍ନ ତରଙ୍ଗିଣୀ ବୋଲି ଝୁରୁଥିବାରେ । ପ୍ରେମାଞ୍ଜନ ଛିଟଛାଯ ସୁଧାତରଙ୍ଗିଣୀ ଦଶନ ବସନକୁ କ ବୋଲି ବୋଲିବାରେ । ପକ୍ୱବିମ୍ବ ଯେବେ ବୋଲିବା, ସେ ବର୍ଣ୍ଣେ ପାଣ୍ଡୁର ନ୍ୟାୟକୁ ନୋହିଲା । ବନ୍ଧୁକପୁଷ୍ପ ଯେବେ ବୋଲିବା, ସେ ସାତ ଘଣ୍ଟରେ ଫୁଟଇ । କିଂଶୁକ ଯେବେ ବୋଲିବା, ସେ ଅଂଶୁ ଲୁବେ ନ ଘଟଇ । ତାଳମ୍ବ ପୁଷ୍ପ ଯେବେ ବୋଲିବା, ସେ କାଳି କ ରଙ୍ଗ । ପ୍ରବାଳଖଣ୍ଡ ଯେବେ ବୋଲିବା, ସେ କଠିନ ଅଂଶ । ଶୁକଚଞ୍ଚୁ ଯେବେ ବୋଲିବା, ସେ ମାରସେ ଦୂଷିତ । ତରୁଣାରୁଣ ଯେବେ ବୋଲିବା, ସେ ଧୁଷ୍ଟ ଦୋଷେ ମିଶ୍ରିତ । ମାଣିକ୍ୟ-ମଣି ଯେବେ ବୋଲିବା, ସେ ମୃଦୁଲେ ଫୁଟଇ । ପଦ୍ମକେଶର ଯେବେ ବୋଲିବା, ସେ ପରାଗେ ନ ଘଟଇ । ନିର୍ଧୁମ ଅଗ୍ନି ଯେବେ ବୋଲିବା, ସେ ଜଳ ସଙ୍ଗତେ ଜାଳକ । କ୍ଷତପାରେ କରୁଣ୍ଣ ଚ୍ଛେଦ ଯେବେ ବୋଲିବା, ସେ ସୂହାନୁବନ୍ଧ ମାଳକ । ସନ୍ଧ୍ୟାଘନ ଯେବେ ବୋଲିବା, ସେ ଅତି ବ୍ୟଗ୍ରେ ଯାଇ । ରକ୍ତ ଉତ୍ପଳ ଯେବେ ବୋଲିବା ସେ ଜଳରେ ଥାଇ । ପ୍ରଥମ ବାଳଇନ୍ଦୁ କଳା ଯେବେ ବୋଲିବା, ସେ ଅତି ଶୀତଳ ଜଡ଼ । ପାରିଜାତପୁଷ୍ପ ଯେବେ ବୋଲିବା, ସେ ଅଧରମୋ ଜଡ଼ । କୋକନଦ ଯେ ବୋଲିବା, ତହିଁ ଲୀଳାରସ ନାହିଁ । ସିନ୍ଦୂରକାନ୍ତି ଯେ ବୋଲିବା, ସେ ଲବଣ୍ୟ ଜଳଧର ସ୍ୱେଦକଣିକା ଅବା ପାଇବ କାହିଁ……ସୁଧାରୁଣ ଘନେ ଘସି । ଇନ୍ଦ୍ରଗୋପ ବନ୍ଧୁରାଗାଙ୍ଗେ ପରଶଂସି । ବନ୍ଧୁକ ମାର ଭଦ୍ର କୋକନଦ ତାଳମ୍ବ ପାରିଜାତ କାନ୍ତ ପୁଷ୍ପ ·· ଫଳିର କୋମଳ ଆରକ୍ତ ସ୍ନିଗ୍ଧ ଲଇ, ପ୍ରବାଳ ଖଣ୍ଡରୁ ମସୃଣ ଚକ୍‌କଣ ଥୋଇ, ପକ୍ୱଶୁକ ପକ୍ଷୀତୁ ତୁଣ୍ଡାଗ୍ରଣ ଲଇ, ନିର୍ଧୂମ ଅଗ୍ନିରୁ ରକ୍ତିମା ଲଇ…ଔଷଧମାନଙ୍କର ସ୍ୱଭାବେ…ସମସ୍ତ ସ୍ୱାଦୁ ପଦାର୍ଥମାନଙ୍କର ଆଦର ସ୍ନିଗ୍ଧ ଲଇ କମଳାସ୍ଥିତ ଲକ୍ଷ୍ମୀ କ ବସାଇ, କଳ୍ପଲତାରୁ ପ୍ରସନ୍ନ ପଲ୍ଲବ ଗୁଣ ମିଶାଇ, ଚନ୍ଦ୍ର ଚନ୍ଦ୍ରମଣିରେ ମିଶାଇ, ଅଭିନବ ବସନ୍ତ…ବିଶ୍ୱକର୍ମା ଯୋଗ୍ୟତ ପଣ ଦେଖାଇ, ସେ ଅଧର ପଲ୍ଲବ କଲା । ଏହା ଦେଖି ସମସ୍ତ ରକ୍ତମାନଙ୍କର ଆଦର ସରିଲା । ଏମନ୍ତେ ସେ କନ୍ୟାର କେ କଲା ବଚନକୁ କ ବୋଲି ବୋଲିବା । ସୁରସ (୧) ସୁସ୍ୱର ସରଳ ମୃଦୁଳ ସ୍ନିଗ୍ଧ କୋମଳ କମନୀୟ ଗମ୍ଭୀର ଲଳିତ ମୃଦୁଲ୍ଲ ସୂକ୍ଷ୍ମ ଉଦାତ୍ତ ପ୍ରସନ୍ନ ନିର୍ଦ୍ଦୋଷ ମନ୍ମଥ ବେଣୁ ସମସ୍ୱନ । ମୁନି ମନ ଉଚ୍ଚାଟନ କରିକୁ କ ବୋଲି ବୋଲିବାରେ । କନ୍ଦର୍ପର ବୀର ଗର୍ବ ଦଳନ ମନ୍ତ୍ର ବୋଲି ଘୋଷୁଥିବାରେ । କ ଯୋଗେନ୍ଦ୍ର ମାନଙ୍କର ଯୋଗ ଯୁକ୍ତ ଚକ୍ରକୁ ଭେଦୁଥିବାରେ । କ ଆନନ୍ଦ ରଙ୍ଗସାଗରେ କ୍ରୀଡ଼ା-ନଦୀ ସଙ୍ଗମର ପ୍ରାପ୍ତେ ଶୁଭୁଥିବାରେ । କ ପୁଷ୍ପଧନୁରୁ ମୋହିନୀ ବୀଣା ଧ୍ୱନି ବାଜୁଥିବାରେ । କ ଲବଣ୍ୟଜଳଧି ମନ୍ଦମନ୍ଦ ହୋଇ ଗର୍ଜୁଥିବାରେ । କ ନୂତନ କରି ମଦନ ସୃଷ୍ଟି ସର୍ଜୁଥିବାରେ । କ ମଦନ ଅନ୍ଧକାର ପଟଳକୁ ଛେଦୁଥିବାରେ(୨)। କ ରତି…ପ୍ରଦୀପକୁ ସେ ତେଜୁଥିବାରେ ।

(୧) ବହୁ ସ୍ୱର । (୨) ବହୁରେ ନାହିଁ ।

Digitized by srujanika@gmail.com

କ ପେ ଡ଼ିଲ ମନ୍ମଥ ଚରୁକୁ ଅମୃତରେ ଭେଦୁଥିବାରେ । କ ସକଳ ଜଗତର ଜୀବଦାନ ବେଶ୍ୱକୁ ସୁମରୁଥିବାରେ । କ ଏ ତ୍ରିଭୁବନବାଦୀ ମନ୍ମଥର ଜୟଘଣ୍ଟ ବାଜୁଥିବାରେ ! କ ସୁରତ ରଥ କଳ ରେ ରସନା ଧ୍ୱନି ପ୍ରାସ୍ତେକ ଶୁଭୁଥିବାରେ । କ ମୁଖ ପଦ୍ମଲେଭେ କର ମଦନ ମତ୍ତଭ୍ରମର ଗଞ୍ଜୁଥିବା ରେ । କ ଉନ୍ମତ୍ତ କାମ-ଦୁନ୍ଦୁଭି ବାଜୁଥିବା ରେ ।

ଏମନ୍ତେ ସେ ବଚନ ସୁସ୍ୱରକୁ କ ବୋଲି ବୋଲିବା ରେ । କନ୍ଦର୍ପର କମ୍ବୁସ୍ୱନ ଯେବେ ବୋଲିବା ସେ ଅଧରସ୍ଥ ଧ୍ୱନି । ମନ୍ମଥ ଅଳାବେଣୀ ଏବେ ବୋଲିବା ସେ ନଖକ୍ଷତେ ଭିନ୍ନ । ସ୍ୱର ଷଟ ସାରକା ଯେବେ ବୋଲିବା ସେ ଅନୁଦାର ସ୍ୱର । ବାଲ ଷଟ୍‌ପଦ ଯେବେ ବୋଲିବା ସେ ଗଙ୍କ ଚତୁର । ବସନ୍ତ ଝିଙ୍କାଖ ଯେବେ ବୋଲିବା ସେ ଝିଙ୍କୃତ ନାଦ । ଅକଣ୍ଟ କୋକିଳ ଯେବେ ବୋଲିବା ସେ ମଧୁମାସେ ଭବ । ସୁସ୍ୱର ବଂଶୀ ଯେବେ ବୋଲିବା ସେ ଗମ୍ଭୀରର ଊଣା । କମ୍ବୁଧ୍ୱନି ଯେବେ ବୋଲିବା ସେ ଉଚ୍ଚ ଶବ୍ଦେ ଊଣା । ଏମନ୍ତ ପ୍ରାସ୍ତେକ ମଣି, ବିଧାତା ସରସ୍ୱତୀର ଚନ୍ଦ୍ର ସୂକ୍ଷ୍ମସ୍ୱର ଘେନ । ବୀଣା ତାଲର ପ୍ରାନ୍ତ ଧ୍ୱନି । ଭ୍ରମର ନାଦର ମଧ୍ୟମ ସ୍ୱର । ଝିଙ୍କାସ୍ୱର ମଧୁର । ବେଣୁ ସ୍ପର୍ଶ । ଶଙ୍ଖର ଗମ୍ଭୀର ରସ । ସାରସ୍ୱ । ଦୁନ୍ଦୁଭିର କୋମଳ ଉଦ୍‌ଘଟ । ଶରଦ......କଳାମେଘ । ମନ୍ମଥର ହର୍ଷନାଦ ଭେଖ । ଅମୃତର ତୁଲ୍ୟେ ସମରସ ଭଣ । ମୃତସଞ୍ଜିବନୀ ମନ୍ତ୍ର ବିଗୁଣ । ଅଣ୍ଡିସ କୋକିଳର ସ୍ୱର ଭଣ । ବ୍ୟାକରଣ ଅଭ୍ୟାସ ଉଚ୍ଚାରଣ ଲଇ । ଏମନ୍ତ ପଦାର୍ଥମାନ......ନ ଭିଆଇଲ । କାକଘାଘର, ଭେକ ବିସ୍ୱର, ଶୋକ କ୍ଷୀଣାଦ ଦୋଷାନ୍ତ ନାସ୍ତି । ସେ ବଚନ କରଅଛୁ କ ମୁନିଜନମାନଙ୍କର....ବର୍ତ୍ତୁଳ । ବିରଳ । ସରଳ । ସରସ । ଘଞ୍ଚ । ସଞ୍ଚ । କ୍ଷ୍ୟୋଚବନ୍ତ । ବମ୍ବକ । ଆର୍ଦ୍ର । ସ୍ନିଗ୍ଧ । କାନ୍ତ । ସମ । ସୁରସ । ସୁରକ୍ତ । ଶୁକ୍ଳ । ସୂକ୍ଷ୍ମ । ମନୋରମ ... ବୋଲିବା ରେ । ମଦନ ଅନ୍ଧକାର ... ଇନ୍ଦୁ ହରିଲି ରେ । ସକଳ ପ୍ରାପ୍ତ କର କ୍ଷୁଦ୍ର କ୍ଷୀରଃ ମୁଦ୍ର ହୋଇଲେ ରେ । ଲବଣ୍ୟ ମୃଦୁ ଜ୍ୟୋତ୍ସ୍ନା ଏକ କର ଭିଆଇଲି ରେ । କ ମନ୍ମଥହସ୍ତୀର ଗଜମୁକ୍ତା ପ୍ରାସ୍ତେ ଜଗତ ମୋହିଲି ରେ । କାମାଗ୍ନି ଶିଖା କ ଯୁବାଜନମାନଙ୍କୁ ଦହିଲି ରେ । ଈଷତ ହାସେ କର ରତ ଚନ୍ଦ୍ର ବୁଦ୍ଧ ରଥ ପାହିଲି ରେ । ଟଳଳଙ୍କ ଜ୍ୟୋତ ଦେଖି ମୃତ୍ୟୁଶର କାମଦେବ ଲେଉଟି ଈଶ୍ୱରଙ୍କୁ ମାଇଲି ରେ । ସକଳ ଜନ୍ତୁମାନଙ୍କର ଜୀବ ଗ୍ରହଣ କର ରହିଲି ରେ । ବାଶତର ପଙ୍କତିମାଳାରେ କର କ ମନ୍ମଥ ସୃଷ୍ଟ ଶୋଭିଲିରେ ।

ଏମନ୍ତେ ସେ ଦନ୍ତପନ୍ତ କ କ ବୋଲି ବର୍ଣ୍ଣିମାରେ । କନ୍ଦର୍ପର କରିରୁଣ ପ୍ରଚବମ୍ଭ ସ୍ଫଟିକ ଜପାମାଳ ଅବା ବୋଲିବା ସେ ଚଳୁନାହିଁ । ଡାଳିମ୍ବବୀଜ ଅବା ବୋଲିବା ସେ ଆର୍ଦ୍ର ସ୍ନିଗ୍ଧ ବର୍ତ୍ତୁଳ ଅବା ପାଇବ କାହିଁ । ବାଶତର ହାର ଅବା ବୋଲିବା ସେ ରଙ୍ଗେ ନୀରସ । ପଦ୍ମଧାଗ ମାଣିକ୍ୟ ଅବା ବୋଲିବା ସେ ପଥରେ ... । କ୍ଷୁଦ୍ର ଚନ୍ଦ୍ରମଣିରେ କୁସୁମ ଅବା ବୋଲିବା ତହିଁ ମଦନ ପ୍ରଚଣ୍ଡ କାହିଁ । ବାଳଇନ୍ଦୁରେ ସନ୍ଧ୍ୟାପନ ଘସିଲି ଅବା ବୋଲିବା—

—ସମାପ୍ତ—

Digitized by srujanika@gmail.com

# ପରିଶିଷ୍ଟ—୨

ଅବିଦ୍ୟା ମୃତ୍ୟୁସଞ୍ଜୀବନୀକରଣୀ—ଗ୍ରନ୍ଥର ବିଷୟବସ୍ତୁକୁ ଅନୁସରଣ କରି ନାମ୍ନିକାକୁ ଏ ପ୍ରକାର ବିଚିତ୍ର ନାମ ଦିଆଯାଇଛି । ଅବିଦ୍ୟା ଓ ମୃତ୍ୟୁ ମନୁଷ୍ୟ ଜୀବନକୁ ନଷ୍ଟକରେ । ଏହି ଦୁଇଟି ସୂତ୍ରକୁ ନାଶ କରୁଥିବାରୁ ଏ ଜନ୍ୟା ନାମ ଅବିଦ୍ୟା ମୃତ୍ୟୁସଞ୍ଜୀବନୀ କରଣୀ । ତୁଳସୀଦାସଙ୍କ ପ୍ରଯୁକ୍ତ 'ମୃତକ ସଞ୍ଜୀବନୀ' ଶବ୍ଦ ସହ ଏହି ର ସାଦୃଶ୍ୟ ଦେଖିବାକୁ ମିଳିଥାଏ ।

ଆସନ:—ନିଶ୍ଚଳ ସୁଖପୂର୍ବକ ବସିବାକୁ ଆସନ କୁହାଯାଏ । ଏହା ହେଉଛି ହଠଯୋଗର ପ୍ରଥମାଙ୍ଗ । ହଠଯୋଗ ପ୍ରଦୀପିକାରେ ସ୍ୱସ୍ତିକାସନ, ଗୋମୁଖାସନ, ବୀରାସନ, କୂର୍ମାସନ, କୁକ୍କୁଟାସନ, ଉତ୍ତାନକୂର୍ମକାସନ, ଧନୁରାସନ, ମତ୍ସ୍ୟେନ୍ଦ୍ରାସନ ପ୍ରଭୃତିର ପ୍ରସିଦ୍ଧି ରହିଛି ।

ଇନ୍ଦ୍ରଜାଲ:— ଜଗତର ମିଥ୍ୟାତ୍ୱକୁ ଶଙ୍କରାଚାର୍ଯ୍ୟ ଇନ୍ଦ୍ରଜାଲ ସହିତ ତୁଳନା କରିଛନ୍ତି । ସେ ତାଙ୍କର 'ଅଜ୍ଞାନବୋଧିନୀ' ଗ୍ରନ୍ଥର ଅଷ୍ଟମ ବାକ୍ୟରେ ଲେଖି-ଛନ୍ତି —

"ହେ ଭଗବାନ ! ଯଦ୍ ଭ୍ରମମାତ୍ର ସିଦ୍ଧଂ ତତ୍ କିଂ ସତ୍ୟମ୍ ?

ଅରେ ଯଥା ଇନ୍ଦ୍ରଜାଲଂ ପଶ୍ୟନ୍ତି ଜନାଃ, ବ୍ୟାଘ୍ର ଜଳତଡ଼ାଗ ଅସତ୍ୟତଥା ପ୍ରତିଭାତି କିମ୍ ? ଇନ୍ଦ୍ରଜାଲ ଭ୍ରମେ ନିବୃତ୍ତେ ସତି ସର୍ବଂ ମିଥ୍ୟେତି ଜାନାତି । ଇଦନ୍ତୁ ସର୍ବେଷାମନୁଭବସିଦ୍ଧମ୍ ।" ଏହି ବାକ୍ୟରେ ସେ ଜଗତକୁ ଭ୍ରମମାତ୍ର ଏବଂ ଇନ୍ଦ୍ରଜାଲ ସଦୃଶ ମିଥ୍ୟାଭାବେ ଜ୍ଞାପନ କରିଛନ୍ତି ।

ଖେଚରୀ:-- ଜିହ୍ୱା ଊର୍ଦ୍ଧ୍ୱମୁଖୀ ହୋଇ କପାଳକୁହରରେ ପ୍ରବିଷ୍ଟ ହୁଏ ଏବଂ ଦୃଷ୍ଟି ଭ୍ରୂମଧ୍ୟରେ ସ୍ଥିର ହୁଏ ।

ଗୁଟିକା:— ମହମ୍ମଦ ଜାୟସି କୃତ "ପଦ୍ମାବତ୍"ରେ ସିଦ୍ଧ ଗୁଟିକାର ଉଲ୍ଲେଖ ମିଳେ । ଡ଼କ୍ଟର ବାସୁଦେବ ଶରଣ ଅଗ୍ରୱାଲଙ୍କ ମତରେ ଏହା ହେଉଛି ପାରଦ ବଟିକା । ଏହାକୁ ମୁହଁରେ ରଖିଲେ ମଣିଷ ଉଡ଼ିବା ଶକ୍ତି ଲାଭ କରେ । ଗୋବିନ୍ଦତ୍ରିଗୁଣାୟତଙ୍କ ମତରେ ଏହା ହେଉଛି ଏକ ପ୍ରକାର ଦୈବୀ ବିଭୂତି । ଏହା ସାହାଯ୍ୟରେ ସାଧକକୁ ସବୁ ପ୍ରକାର ସିଦ୍ଧି ମିଳିଥାଏ ।

Digitized by srujanika@gmail.com

ଚନ୍ଦ୍ରରେ ଷୋଳକଳା:— (୧) ଅମୃତା (୨) ମାନଦା (୩) ପୂଷା (୪) ତୁଷ୍ଟି (୫) ପୁଷ୍ଟି (୬) ରତି (୭) ଧୃତି (୮) ଶଶୀନୀ (୯)ଚନ୍ଦ୍ରିକା (୧୦) କାନ୍ତି (୧୧) ଜ୍ୟୋତ୍ସ୍ନା (୧୨) ଶ୍ରୀ (୧୩) ପ୍ରୀତି (୧୪) ଅଙ୍ଗଦା (୧୫) ପୂର୍ଣ୍ଣା (୧୬) ପୂର୍ଣ୍ଣାମୃତା ।

ରୁଦ୍ରସୁଧାନିଧିରେ ଚନ୍ଦ୍ରର ଷୋଡ଼ଶ କଳା ହେଉଛି—

(୧) ଅଲୋଲା (୨) କଲ୍ଲୋଳିନୀ (୩) ଉଚ୍ଛଳନ୍ତୀ (୪) ଉନ୍ମାଦିନୀ (୫) ତରଙ୍ଗିଣୀ (୬) ଶୋଷୟନ୍ତୀ (୭) ଲମ୍ପଟା (୮) ଲହରୀ (୯) ଲୋଲା (୧୦) ଲଳିତା (୧୧) ପ୍ରବୃତ୍ତ (୧୨) ଦ୍ରବନ୍ତୀ (୧୩) ପ୍ରବାହା (୧୪) ସନ୍ଧ୍ୟା (୧୫) ପ୍ରସନ୍ନୀ (୧୬) ପ୍ରସାଦୁଶୀଳା ।

ଏଠାରେ ନାରାୟଣ ଦାସ ଚନ୍ଦ୍ରର ଷୋଳକଳାକୁ ନ ବୁଝାଇ ଶରୀର ଧାରଣା ଯୋଗ ଅନ୍ତର୍ଗତ ଷୋଡ଼ଶ ଜମ୍ବୁରେ ସ୍ଥିତ ଚନ୍ଦ୍ରର ଷୋଳକଳା କଥା କହିଛନ୍ତି ।

ଚିତ୍ରପଟ:—ଭାରତର ପ୍ରାଚୀନ କଥାସବୁରେ ପ୍ରେମିକ ଓ ପ୍ରେମିକାର ମିଳନ ଚିତ୍ରପଟଦ୍ୱାରା ସମ୍ଭବ ହୋଇଥାଏ । ରୁଦ୍ରସୁଧାନିଧିରେ ଏ ପରମ୍ପରା ମଧ୍ୟ ପାଳିତ ହୋଇଛି ।

ଛାଲ ଉପରେ ବସି ନଦୀ ପାର ହେବା:—କାପାଳିକ କାମାନନ୍ଦ ଯୋଗୀଙ୍କୁ କାପାଳିକ ଭାବି କୈବର୍ତ୍ତମାନେ ନୌକାରେ ବସାଇବା ପାଇଁ ମନାକଲେ । ତେଣୁ କାମାନନ୍ଦ ଖଣ୍ଡିଏ କୃଷ୍ଣାଜିନ ଛାଲ ଉପରେ ବସି ନଦୀ ପାର ହୋଇଥିଲେ । ସିଦ୍ଧପୁରୁଷମାନଙ୍କ ବିଷୟରେ ଏପରି ବିଶ୍ୱାସ ସମଗ୍ର ଭାରତବର୍ଷରେ ଶୁଣିବାକୁ ମିଳିଥାଏ । ମହମ୍ମଦ ଜାୟସି "ପଦ୍ମାବତୀ"ରେ 'ଉଡ଼ନ୍ତା ଛାଲ'ର ଉଲ୍ଲେଖ କରିଛନ୍ତି । ଅର୍ଥାତ୍ ଏହି ଛାଲ ଉପରେ ବସି ଯୋଗୀ ଶୂନ୍ୟରେ ଗମନ କରିପାରିଥାଏ ।

ଦଣ୍ଡ:— ଯୋଗଗ୍ରନ୍ଥରେ ଯୋଗୀମାନଙ୍କର ତିନି ପ୍ରକାର ଦଣ୍ଡର ଉଲ୍ଲେଖ ମିଳିଥାଏ—କାଳଦଣ୍ଡ, ବାୟୁଦଣ୍ଡ ଓ ମନୁଦଣ୍ଡ । ଯୋଗୀମାନେ ଧାରଣ କରୁଥିବା ଦଣ୍ଡ ହେଉଛି ଏହାର ପ୍ରତୀକ ।

ଦ୍ରାକ୍ଷିଣୀ— ପ୍ରାଚୀନ କାଳରେ ତାନ୍ତ୍ରିକମାନଙ୍କ ମଧ୍ୟରେ ଦ୍ରାକ୍ଷିଣୀ ବା ଯକ୍ଷିଣୀ ପୂଜାର ବହୁତ ପ୍ରସାର ଥିଲା । ଏମାନଙ୍କୁ ସନ୍ତୁଷ୍ଟ କରି ସାଧକମାନେ ଉଚିତ ଅନୁଚିତ ବହୁ କାର୍ଯ୍ୟ କରୁଥିଲେ । ମହମ୍ମଦ ଜାୟସି 'ପଦ୍ମାବତୀ'ରେ ଯୋଗିନୀପୂଜାର ଉଲ୍ଲେଖ କରିଛନ୍ତି ।

Digitized by srujanika@gmail.com

ଧାରଣା— ଶରୀର ଭିତରର କୌଣସି ସ୍ଥଳରେ ଚିତ୍ତକୁ ସ୍ଥିର କରିବାର ନାମ ହେଉଛି ଧାରଣା ।

ଧ୍ୟାନ – ଧ୍ୟେୟ ବସ୍ତୁ ଚିତ୍ତକୁ ସଂଲଗ୍ନ କରିବା ବା ଚିତ୍ତର ଏକାଗ୍ର ହୋଇଯିବାକୁ ଧ୍ୟାନ କୁହାଯାଏ ।

ନିୟମ – ତପସ୍ୟା, ସନ୍ତୋଷ, ଆସ୍ତିକ୍ୟ, ଦାନ, ଈଶ୍ୱରଉପାସନା, ଶାସ୍ତ୍ର କଥା ଶ୍ରବଣ, ଲଜ୍ଜା, ସାଧୁବୁଦ୍ଧି, ଜପ ଓ ହୋମ ଏହି ଦଶଟିକୁ ଯୋଗଶାସ୍ତ୍ର ବିଶାରଦଗଣ ନିୟମ କହନ୍ତି ।

ପରପୁରପ୍ରବେଶ — ମଧ୍ୟଯୁଗରେ ଯୋଗୀମାନେ ପରପୁରପ୍ରବେଶ ବିଦ୍ୟାରେ ଅତ୍ୟନ୍ତ ନିପୁଣ ହୋଇଥିଲେ । ଏ ବିଷୟରେ ବହୁ ଲୋକକଥା ପ୍ରଚଳିତ । ଶଙ୍କରାଚାର୍ଯ୍ୟ ମଣ୍ଡନମିଶ୍ରଙ୍କ ପତ୍ନୀ କାମଶାସ୍ତ୍ରୀୟ ପ୍ରଶ୍ନର ଉତ୍ତର ଦେବା ପାଇଁ ନିଜ ଶରୀର ତ୍ୟାଗ କରି ଏକ ମୃତ ରାଜା ଶରୀରରେ ପ୍ରବେଶ କରିଥିଲେ ।

ପ୍ରତ୍ୟାହାର ପ୍ରାଣାୟାମ ଅଭ୍ୟାସଦ୍ୱାରା ଇନ୍ଦ୍ରିୟକୁ ଶୁଦ୍ଧ କରିବା ପରେ ଇନ୍ଦ୍ରିୟସବୁର ବାହ୍ୟ ବୃତ୍ତିକୁ ସଂକୁଚିତ କରି ମନ ମଧ୍ୟରେ ବିଲୀନ କରିବାର ଅଭ୍ୟାସକୁ ପ୍ରତ୍ୟାହାର କୁହାଯାଏ ।

ପ୍ରାଣାୟାମ— ଶ୍ୱାସ ଓ ପ୍ରଶ୍ୱାସର ଗତିକୁ ରୁଦ୍ଧ କରିବା ପ୍ରକ୍ରିୟା ପ୍ରାଣାୟାମ । ପ୍ରାଣ ଚଞ୍ଚଳ ହେବା ଫଳରେ ଚିତ୍ତ ଚଞ୍ଚଳ ହୁଏ । ତେଣୁ ପ୍ରାଣକୁ ସ୍ଥିର କରିବା ହିଁ ପ୍ରତ୍ୟେକ ସାଧକର କର୍ତ୍ତବ୍ୟ । ପ୍ରାଣବାୟୁକୁ ରୁଦ୍ଧ କରାଯାଉଥିବାରୁ ଏହାକୁ ପ୍ରାଣାୟାମ କୁହାଯାଏ ।

ଭାରତଖଣ୍ଡେ— ବିଷ୍ଣୁପୁରାଣ (୨।୨) ରେ ନବଖଣ୍ଡର ବର୍ଣ୍ଣନା ଅଛି । ସେସବୁର ନାମ ନିମ୍ନରୂପେ ଗଣନା କରାଯାଇଥାଏ ।

ଭାରତବର୍ଷ, କିନ୍ନରବର୍ଷ, ହରିବର୍ଷ, କୁରୁବର୍ଷ, ହିରଣ୍ୟମୟ ବର୍ଷ, ରମ୍ୟକବର୍ଷ, ଭଦ୍ରାଶ୍ୱ ବର୍ଷ, କେତୁମାଳକ ବର୍ଷ, ଇଳବର୍ଷ ।

ମଧୁମାଳତୀ—ବୃନ୍ଦସୁଧାନିଧିରେ ମଧୁ ହେଉଛି ଗାୟକ, ମାଳତୀ ହେଉଛି ଗାୟିକା । ହିନ୍ଦୀ ସାହିତ୍ୟରେ ମଧୁମାଳତୀ ନାମରେ ବହୁ ପ୍ରେମକଥା ମିଳିଥାଏ । ସେଥି ମଧ୍ୟରୁ ମଂଝନକୃତ ମଧୁମାଳତୀ ବିଶେଷ ପ୍ରସିଦ୍ଧ । ମଂଝନ ଏହି କଥା ବିଷୟରେ ଲେଖିଛନ୍ତି—

Digitized by srujanika@gmail.com

"ଅଦ୍ଭକଥା ଦ୍ୱାପରମୋଂ ଉଇକଳକୁଞ

ମୋଂ ଭାଷା ଯୋ ଲଇ ।"

ଏହି କଥାଟିକୁ ସଂକ୍ଷେପରେ ବର୍ଣ୍ଣନା କରାଯାଇପାରେ । କନେସର ନଗରର ରାଜା ସୂରଜଭାନଙ୍କ ପୁତ୍ର ମନୋହରଙ୍କୁ ସୁପ୍ତାବସ୍ଥାରେ ଅପ୍‌ସରାମାନେ ରାତ୍ରରେ ନେଇଯାଇ ମହାରସ ନଗରର ରାଜକୁମାରୀ ମଧୁମାଲତୀର ଶୟନଶାଳାରେ ରଖିଆସିଲେ । ସେଠି ଦୁଇ ଜଣଙ୍କ ମଧ୍ୟରେ ପ୍ରେମ ହେଲା । କଥାବାର୍ତ୍ତା କରୁ କରୁ ସେମାନେ ଶୋଇ-ଗଲେ । ଅପ୍‌ସରାମାନେ ପୁଣି ରାଜକୁମାରଙ୍କୁ ନେଇଗଲେ । ନିଦଭାଙ୍ଗିବା ପରେ ଦୁଇଜଣଯାକ ଅତି ବ୍ୟାକୁଳ ହୋଇ କ୍ରନ୍ଦନ କଲେ । ବିୟୋଗବ୍ୟଥିତ ରାଜକୁମାର ରାଜକୁମାରୀଙ୍କୁ ପାଇବା ପାଇଁ ରାଜ୍ୟ ପରିତ୍ୟାଗ କରିଦେଲା ଏବଂ ଖୋଜି ଖୋଜି ଏକ ଜଙ୍ଗଲରେ ପହଞ୍ଚିଲା । ସେଠାରେ ଗୋଟିଏ ରାକ୍ଷସର କବଳରୁ 'ପ୍ରେମା' ନାମକ ସୁନ୍ଦରୀକୁ ମୁକ୍ତ କଲା । ପ୍ରେମା ମଧୁମାଲତୀ ସହ ରାଜକୁମାରଙ୍କ ମିଳିତ କଲା । କିନ୍ତୁ ମଧୁମାଲତୀର ମାତା ଏହି ପ୍ରସ୍ତାବକୁ ପସନ୍ଦ କରୁ ନ ଥିଲା । ମଧୁମାଲତୀ ମା'ଙ୍କ କଥାକୁ ନ ମାନିବାରୁ ମାତା ତାଙ୍କୁ ପକ୍ଷୀହେବାର ଅଭିଶାପ ଦେଲେ । ପରେ ସେ ମଧ୍ୟ ଦୁଃଖୀ ହେଲେ । ମନୋହର ଯୋଗୀ ହୋଇଗଲା । ବହୁ ଦିନ ପରେ ପ୍ରେମା ଓ ତା'ର ପ୍ରେମିକ ତାରାଚନ୍ଦଙ୍କ ଚେଷ୍ଟାରେ ଉଭୟଙ୍କ ମିଳନ ହୋଇଥିଲା ।

ଏଥିରେ କନ୍ୟାର ନାଁ । ମଧୁମାଲତୀ । ଅଥଚ ନୁରମହମ୍ମଦଙ୍କ ଇନ୍ଦ୍ରାବତୀ କାବ୍ୟର ମଧ୍ୟକର ଖଣ୍ଡରେ ଏହା ମଧୁକର ଓ ମାଳତୀ । ତାଙ୍କ ଅନୁଯାୟୀ ମୋହନ ପୁରରେ ମଧୁକର ବୋଲି ଗୋଟିଏ ରାଜା ଥିଲେ । ଦିନେ ସେ ଗୋଟିଏ ମୃଗର ଅନୁଧାବନ କରୁ କରୁ କ୍ଲାନ୍ତ ହୋଇପଡିଲେ । ମୃଗ ମଧ୍ୟ ବହୁ ଦୂରକୁ ଚାଲିଗଲା । ରାଜା ଥକିଯାଇ ଗୋଟିଏ ଗଛତଳେ ବସିପଡ଼ିଲେ । ସେହି ଗଛଉପରେ ଦୁଇଟି ପକ୍ଷୀ କଥାବାର୍ତ୍ତା ହେଉଥିଲେ । ସେଥିମଧ୍ୟରୁ ଗୋଟିଏ ପକ୍ଷୀ ମାଳତୀର ରୂପ ବର୍ଣ୍ଣନା କଲା । ତାକୁ ଶୁଣି ରାଜା ପ୍ରେମବିହ୍ୱଳ ହୋଇଗଲେ । ରାଜା ପ୍ରାର୍ଥନା କରିବା ଫଳରେ ସେହି ଶୁଆ ମଧୁକରଙ୍କୁ ମାଳତୀ ପାଖରେ ପହଞ୍ଚାଇଦେଲା । ଉଭୟ ଉଭୟଙ୍କୁ ପ୍ରେମ କଲେ ଓ ମିଳନ ସମ୍ଭବ ହୋଇଥିଲା ।

ରୁଦ୍ରସୁଧାନିଧିରେ ପରମ୍ପରାରେ ପ୍ରସିଦ୍ଧ ଏହି କଥା ପ୍ରତି କୌଣସି ସଙ୍କେତ ମିଳୁ ନ ଥିଲେ ମଧ୍ୟ ଏହା ଯେ ମଧୁମାଲତୀ କଥାର ପ୍ରଭାବ, ଏହା ଅନୁମାନ କରାଯାଇ-ପାରେ ।

ମାଟି ବରଢ଼—ରୁଦ୍ରସୁଧାନିଧିରେ ଲେଖାଅଛି,"ମାଟିବରଢ଼ ସର୍ପ କି ଧରଇ ଫେରୁ ।" (ପୃ-୧୧୫) 'ରସକଲ୍ଲୋଳ'ରେ କବି ଦୀନକୃଷ୍ଣ କୃଷ୍ଣକଥାନିନ୍ଦକମାନଙ୍କୁ 'ମାଟିମାର୍ଜାର' ସହିତ ତୁଳନା କରିଛନ୍ତି ।

Digitized by srujanika@gmail.com

ମୋହିନୀକନ୍ୟା — ସଉପନ୍ତ ଋଷିମାନଙ୍କୁ ତାଙ୍କ ସାଧନାପଥରୁ ବିଚଳିତ କରିବା ପାଇଁ ମୋହିନୀକନ୍ୟାର ସୃଷ୍ଟି ହୋଇଥାଏ । ପୁରାଣରେ ଏହା ଏକ ପ୍ରତିଷ୍ଠିତ ପରମ୍ପରା । ରମ୍ଭା, ଉର୍ବଶୀ, ମେନକା ଆଦି ଅପ୍ସରାଙ୍କୁ ଏହି କାର୍ଯ୍ୟ ପାଇଁ ବାରମ୍ବାର ପ୍ରୟୋଗ କରାଯାଇଛି । ଜରତା ମଧ୍ୟ ସେହି ରୂପର ଯାଦୁରେ ଋଷ୍ୟଶୃଙ୍ଗ ମୁନିଙ୍କୁ ଭୁଲାଇପାରିଛି । ସେହି ମୋହିନୀ ରୂପରେ ମୁଗ୍ଧ ହୋଇ ଶିବ ମଧ୍ୟ ପଥଚ୍ୟୁତ ହୋଇଛନ୍ତି । ଶାନ୍ତା କନ୍ୟାକୁ କାନ୍ଧରେ ଧରି ଋଷ୍ୟଶୃଙ୍ଗ ପହଞ୍ଚିଛନ୍ତି ଲୋମପାଦର ରାଜ୍ୟରେ । ପୁରାଣର ଏହି ପରମ୍ପରାକୁ ବହୁ ଭାବ୍ୟରେ ଗ୍ରହଣ କରାଯାଇଛି । ରୁଦ୍ରସୁଧାନିଧିର ମୋହିନୀକନ୍ୟା ପରି ଉପେନ୍ଦ୍ରଙ୍କ ଲାବଣ୍ୟବତୀ ପୂର୍ବଜନ୍ମରେ ପାର୍ବତୀଙ୍କ ମାନସଜାତ କନ୍ୟା । ଏସବୁ କଥାର ଗୂଢ଼ାର୍ଥ ହେଉଛି ପୁରୁଷ ହେଉଛି ଅଗ୍ନି ଓ ନାରୀ ହେଉଛି ଜଳ । ପୁରୁଷ ଭୟଙ୍କର ତପସ୍ୟା କଲାବେଳେ ଅଗ୍ନି ଉଦ୍ଦୀପ୍ତ ହୋଇ ବିଶ୍ୱକୁ ଧ୍ୱଂସ କରିବାକୁ ଉପକ୍ରମ କରେ । ସେତେବେଳେ ଆବଶ୍ୟକ ହୁଏ ଜଳରୂପୀ ନାରୀ । ଶିବ ପାର୍ବତୀ ବିବାହ ଓ ଶିବଶକ୍ତିର ମିଳନରେ ଏହି ରହସ୍ୟ ଲୁକ୍କାୟିତ ।

ଯମ—ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, କ୍ଷମା ଧୃତି, ଦୟା, ଋଜୁତା, ମିତାହାର ଓ ଶୌଚ — ଏହି ଦଶଟି ଗୁଣକୁ ଯମ କୁହାଯାଏ ।

ଯୋଗିନୀ— ଚଉଷଠୀ ଯୋଗିନୀ ପୂଜା ସମସ୍ତ ଭାରତବର୍ଷର ପ୍ରସିଦ୍ଧ କଥା । ଏମାନଙ୍କୁ ଋଣ ପିଶାଚିନୀ କୁହାଯାଇଛି । ଏମାନେ ହେଉଛନ୍ତି ଭୂତମାନଙ୍କର ମାତା । ମହମ୍ମଦ ଜାୟସି କୃତ 'ପଦ୍ମାବତ୍'ରେ କୁହାଯାଇଛି—

'ଚଉଷଠୀ ଯୋଗିନୀ ଖପ୍ପରପୁର
ଦଗ ଜମ୍ବୁକ ଘର ବାଜହିଁ ତୂର ।"

ସମାଧି — ମନ ଓ ଆତ୍ମାର ଏକୀଭାବପ୍ରାପ୍ତିର ନାମ ସମାଧି । ଯେତେ-ବେଳେ ପ୍ରାଣ କ୍ଷୟପ୍ରାପ୍ତ ହୁଏ ଏବଂ ବାସନାରାଶି ଲୟପ୍ରାପ୍ତ ହୁଏ, ସେତେବେଳେ ଯେଉଁ ଏକୀଭାବ ଜନ୍ମେ, ତାହାକୁ ସମାଧି କୁହାଯାଏ ।

ସାକ୍ଷୀ,ଶବ୍ଦ — ଏହା ଦୁଇ ପ୍ରକାର କବିତା । ଗୁରୁବଚନକୁ ପ୍ରକାଶ କରୁଥିବା କବିତାକୁ ସାକ୍ଷୀ କୁହାଯାଏ । ଶବ୍ଦ ହେଉଛି, ଶାସ୍ତ୍ରବଚନ । ଗୋରକ୍ଷନାଥ ସାକ୍ଷୀ ଓ ଶବ୍ଦ ରଚନା କରିବାରେ ପ୍ରସିଦ୍ଧ ଥିଲେ । ସେହି ସମୟରୁ ସମସ୍ତ ଭାରତ-ବର୍ଷରେ ଏହି ଦୁଇ ପ୍ରକାର କବିତା ପ୍ରସିଦ୍ଧି ଲାଭ କରିଥିଲା । ଅଚ୍ୟୁତଙ୍କ ଗୁରୁଭକ୍ତିଗୀତା, ବଳରାମଙ୍କ ବ୍ରହ୍ମାଣ୍ଡ ଭୂଗୋଳ, ଅମରକୋଷ ପ୍ରଭୃତି ଗ୍ରନ୍ଥରେ ଏହାର ଉଲ୍ଲେଖ ଦେଖିବାକୁ ମିଳିଥାଏ ।

Digitized by srujanika@gmail.com

ସର୍ପଜ୍ଞାନରେ ରଜ୍ଜୁ – ଏହା ମଧ୍ୟ ଶଙ୍କରାଚାର୍ଯ୍ୟଙ୍କର ଏକ ପ୍ରସିଦ୍ଧ ଉକ୍ତିର ରୂପାନ୍ତର । ସେ "ଅପରୋକ୍ଷାନୁଭୂତି"ର ଚଉରାଳିଶ ଶ୍ଳୋକରେ କହିଛନ୍ତି । "ରଜ୍ଜୁଜ୍ଞାନାତ୍ କ୍ଷଣେ ନୈବ ଯଦ୍ ବଦ୍ ରଜ୍ଜୁର୍ହି ସର୍ପିଣୀ ।" ଅର୍ଥାତ୍ ରଜ୍ଜୁ ଦେଖି ସର୍ପ ଭ୍ରମ ହେବାଦ୍ୱାରା ଯେଉଁ ଅନୁଭୂତି ହୁଏ ତାହା ଭ୍ରାନ୍ତିମୟ କ୍ଷଣିକ ।

ସ୍ୱପ୍ନ (୧) – ପ୍ରାଚୀନ କଥାସବୁରେ ପ୍ରେମିକ ଓ ପ୍ରେମିକାର ପ୍ରଥମ ମିଳନ ସ୍ୱପ୍ନରେ ହିଁ ସମ୍ଭବ ହୋଇଥାଏ । ଏଥିପାଇଁ ଉଷା-ଅନିରୁଦ୍ଧ କାହାଣୀ ଅତି ପ୍ରସିଦ୍ଧ । ମହମ୍ମଦ ଜାୟସିଙ୍କ ନାୟିକା ପଦ୍ମାବତୀ ମଧ୍ୟ ସ୍ୱପ୍ନରେ ନିଜ ପ୍ରେମିକାକୁ ଦେଖି-ପାରିଥିଲା । ଉପେନ୍ଦ୍ରଙ୍କ ଲାବଣ୍ୟବତୀରେ ମଧ୍ୟ ପ୍ରେମିକ-ପ୍ରେମିକାଙ୍କ ମିଳନ ସ୍ୱପ୍ନରେ ସମ୍ଭବ ହୋଇଛି । 'ବୃନ୍ଦସୁଧାନିଧି'ର ଲେଖକ ଏହି ପରମ୍ପରାକୁ ନିଜ ଗ୍ରନ୍ଥରେ ନିର୍ବାହ କରିଥିବା ଜଣାଯାଏ ।

ସ୍ୱପ୍ନ (୨) – ଶଙ୍କରାଚାର୍ଯ୍ୟ ଜଗତକୁ ସ୍ୱପ୍ନ ସଦୃଶ ଜ୍ଞାନ କରୁଥିଲେ । ଶଙ୍କରକୃତ ଆତ୍ମପଞ୍ଚକର ତୃତୀୟ ଶ୍ଳୋକରେ କୁହାଯାଇଛି –

"ଆତ୍ମୈତାଦଂ ବିଶ୍ୱମାତ୍ମନ୍ୟା ସତଂ
ଚୈତ୍ୟଜ୍ଞାନାନନ୍ଦ ରୂପେଣ ବିମୋହାତ୍
ନିଦ୍ରା ମହାତ୍ ସ୍ୱପ୍ନବତ୍ ତନ୍ନ ସତ୍ୟଂ
ଶୁଦ୍ଧଃ ପୂର୍ଣ୍ଣୋ ନିତ୍ୟ ଏକଃ ଶିବୋଽହମ୍ ।"
(ଶଙ୍କରକୃତ ଆତ୍ମପ୍ରବନ୍ଧ ତୃତୀୟ ଶ୍ଳୋକ)

ଅର୍ଥାତ୍ ବିଶ୍ୱ ସତ୍ୟ ନୁହେଁ, ଅସତ୍ ଏବଂ ସ୍ୱପ୍ନ ତୁଲ୍ୟ ଅଳୀକ । ବିଶ୍ୱର ଅସ୍ତିତ୍ୱ ସ୍ୱପ୍ନ ସଦୃଶ କେବଳ ପ୍ରତୀତ ହୋଇଥାଏ ।

●

# ପରିଶିଷ୍ଟ – ୬

| ପୃଷ୍ଠା | ଅଶୁଦ୍ଧ | ଶୁଦ୍ଧ |
|---|---|---|
| ୧ | କ୍ଷଧା | କ୍ଷୁଧା |
| ୬ | ଭୁଯକଲ୍ | ଭୁସଲକ୍ |
| ୮ | ଆସ୍ତେ | ଆମ୍ଭେ |
| ୧୬ | ମୂର୍ଚ୍ଛ | ମୂର୍ଚ୍ଛି |
| ୧୭ | ପଲ୍ଲାଙ୍କ | ପଲ୍ୟଙ୍କ |
| ୨୧ | ଦୁଃଣ | ଦୁଃଖ |

Digitized by srujanika@gmail.com

| ପୃଷ୍ଠା | ଅଶୁଦ୍ଧ | ଶୁଦ୍ଧ |
|---|---|---|
| ୨୨ | ଶମ୍ଭୋ | ଶମ୍ଭୋ |
| ୨୫ | ଧିରଧିସଚେଭନାକରଣ | ଧିରଧିସଚେତନକରଣ |
| ୨୫ | ଦୁଷ୍ପ | ଦୁଷ୍ଟ |
| ୩୮ | ନାଶ | ନାଭି |
| ୩୮ | ଛଟି | ଛୁଟି |
| ୪୧ | ପୃତ | ପୃଠ |
| ୪୨ | ଭସ୍ମ | ଭସ୍ମ |
| ୪୩ | ପ୍ରହ୍ଣ | ଗ୍ରହଣ |
| ୪୪ | ଉଁନ | ଉଲ୍ଲାନ |
| ୪୭ | ଦେଣକାନ୍ତ | ଦେହକାନ୍ତି |
| ୪୭ | ପୂରଅଛ | ପୁରଅଛୁ |
| ୪୮ | ଫୁଙ୍କ | ଫୁଙ୍କିଲ |
| ୫୧ | ବୋଇଲେ | ବାଇଲେ |
| ୫୩ | ବଣଇ | ଢଣଇ |
| ୫୪ | କୃଷ୍ଣଁ | କୃଷ୍ଣ |
| ୫୭ | ଅଜ୍ଞା | ଅଜ୍ଞାନ |
| ୫୮ | ଏଦ୍ଧ | ଏଥି |
| ୬୧ | ପାରଇ | ନ ପାରଇ |
| ୬୨ | ବସ୍ତ୍ର | ବକାର |
| ୬୩ | ସାଙ୍ଗୋ | ସାଙ୍ଗୋପାଙ୍ଗ |
| ୬୪ | ପଥଃା କ | ପଥଃାକ |
| ୬୭ | ଡଲେ | ତଏ |
| ୬୮ | ସଙ୍କେ | ସଙ୍ଗେ |
| ୬୯ | ଜାଳ | ମାଳ |
| ୭୦ | ସବଳ | ଶବଳ |
| ୭୬ | କୁମୁମ | କୁସୁମ |
| ୭୮ | ଅସ୍ତ୍ର | ଅସ୍ୱ |
| ୭୯ | ବଳେ ବଳେ କଳଅଛୁ | ବଳେ କଉଅଛୁ |
| ୮୧ | ଖଣ୍ଡି | ଖଣ୍ଡ |
| ୮୬ | କଲ୍ପମାନଙ୍କୁ | କଲ୍ପମାନଙ୍କ |

Digitized by srujanika@gmail.com

| ପୃଷ୍ଠା | ଅଶୁଦ୍ଧ | ଶୁଦ୍ଧ |
|---|---|---|
| ୮୮ | ଦ୍ରବ୍ୟ | ଦ୍ରବ୍ୟ |
| ୯୭ | ଲସେ | ଲସ୍ୱେ |
| ୯୮ | ପାତଳକାଶ | ପାତାଳାକାଶ |
| ୯୮ | ଅବୟୁକ | ଅବସ୍ଥକ |
| ୯୯ | ଷଠ | ଘଠ |
| ୧୦୦ | ଅନ | ଅନଳ |
| ୧୦୦ | ଅନଳ ଟେତର | ଅନଳ ଖତର |
| ୧୦୧ | ଭକ୍ତ | ଭକ୍ତ |
| ୧୦୨ | କଥା | କନ୍ୟା |
| ୧୦୪ | କାସ୍ | କାଷ୍ଠା |
| ୧୦୩ | କଥା | କନ୍ୟା |
| ୧୦୮ | କଖା | କନ୍ୟା |
| ୧୧୦ | ମନ୍ତ୍ର | ମନ୍ତ୍ର |
| ୧୧୧ | ପାଡ଼ା | ପୀଡ଼ା |
| ୧୧୧ | ଅନ୍ୟତ୍ର | ଅମାତ୍ୟ |
| ୧୧୩ | ମିଶାଇ | ମିଶଇ |
| ୧୧୩ | ବବସ୍ଥେ | ବ୍ୟବସ୍ଥେ |
| ୧୧୫ | ହସ୍ତରେ | ହସ୍ତରେ |
| ୧୧୬ | ଗଢ | ଗଢ଼ |
| ୧୧୭ | ଦେ | ଦେହ |
| ୧୧୮ | ଧର | ଧମର |
| ୧୧୯ | ଲ୍ନିହ | ଲ୍ନିହା |
| ୧୧୯ | ଦ୍ରନାସ୍ତକ | ବ୍ରନାସ୍ତକ |
| ୧୨୩ | ଚତ | ବର |

ବିଶେଷ ଦ୍ରଷ୍ଟବ୍ୟ—ପୃ. ୧୦୧ରେ 'ସିଦ୍ଧମାନଙ୍କୁ ଦ୍ରବ୍ୟଭୂତ ବୋଲି' ଭୁଲ ଅର୍ଥ ହୋଇଯାଇଛି । ଏହିପରି କେତେକ ସ୍ଥଳରେ ଅଧିକା ପୂର୍ଣ୍ଣଚ୍ଛେଦ ଅଛି । ସେଥିମଧ୍ୟରୁ କେତେକଙ୍କୁ ମୁଖବନ୍ଧରେ ଠିକ୍ କରି ଦିଆଯାଇଛି । କେତେକ ବନାନ ଅଶୁଦ୍ଧି ଅଛି । ଏସବୁ ପାଇଁ ସୁଧୀ ପାଠକମାନେ କ୍ଷମା କରିବେ । ବହୁ ପରିଶ୍ରମ କଲେ ବି ଶୁଦ୍ଧରେ ଅଶୁଦ୍ଧ ରହିଗଲା । ପରବର୍ତ୍ତୀ ସଂସ୍କରଣରେ ଏସବୁ ସଂଶୋଧିତ ହୋଇପାରିବ ବୋଲି ଆଶା । (ସ)

Digitized by srujanika@gmail.com